# ସଦାନନ୍ଦ କବିସୂର୍ଯ୍ୟ ବ୍ରହ୍ମା




ଓଡ଼ିଶା ସାହିତ୍ୟ ଏକାଡେ଼ମୀ
ଭୁବନେଶ୍ୱର - ୧୪

ସଦାନନ୍ଦ କବି ସୂର୍ଯ୍ୟ ବ୍ରହ୍ମା

ଲେଖକ - ଡଃ ବନମାଳୀ ରଥ

ପ୍ରକାଶକ - ଓଡ଼ିଶା ସାହିତ୍ୟ ଏକାଡେ଼ମୀ
ଭୁବନେଶ୍ୱର - ୧୪

ପ୍ରଥମ ପ୍ରକାଶ - ୧୯୮୨

ମୁଦ୍ରଣ - ଶ୍ରୀ ଜଗନ୍ନାଥ ପ୍ରେସ୍, ଇଉନିଟ୍-୩, ଭୁବନେଶ୍ୱର-୧

ମୂଲ୍ୟ - ଟ ୧୦/— ( ଦଶ ଟଙ୍କା ମାତ୍ର )

SADANANDA KAVI SURJYA BRAHMA

Writer — Dr. Banamali Rath

Published by — Orissa Sahitya Akademi
Bhubaneswar - 14

First Publication — 1982

Printed at — Shree Jagannath Press
Unit-III, Bhubaneswar-1

Price — Rs. 10/—
( Rupees Ten only )

# ଭୂମିକା

ସଦାନନ୍ଦ କବିସୂର୍ଯ୍ୟ ବ୍ରହ୍ମା ମଧ୍ୟଯୁଗୀୟ ଓଡ଼ିଆ ସାହିତ୍ୟର ଉପେନ୍ଦ୍ର-ଯୁଗରେ ଜଣେ ଗୌଣ କବି ହେଲେ ହେଁ, ଓଡ଼ିଶାରେ ବୈଷ୍ଣବ ଧର୍ମର ଅଭିବ୍ୟକ୍ତିରେ ତାଙ୍କର ରଚନାବଳୀ ମହତ୍ତ୍ୱପୂର୍ଣ୍ଣ । ଓଡ଼ିଶାର ଆଧ୍ୟାତ୍ମିକ ପରମ୍ପରା ପ୍ରଧାନତଃ ଅଦ୍ୱୈତବାଦୀ । ତେଣୁ ପରକୀୟା-ଆଧାରିତ ଦ୍ୱୈତବାଦ ଶୁଦ୍ଧା ଭକ୍ତି, ଓଡ଼ିଆ ସାହିତ୍ୟ ତଥା ଆଧ୍ୟାତ୍ମିକ ଜୀବନରେ କୌଣସି ଦିନ ବିଶେଷ ପ୍ରଶ୍ରୟ ଲାଭ କରି ପାରି ନଥିଲା ତେଣୁ ସଦାନନ୍ଦଙ୍କ ପୂର୍ବରୁ ଓଡ଼ିଆ ମଧ୍ୟଯୁଗୀୟ କାବ୍ୟ ସାହିତ୍ୟରେ ରାଧା ଥିଲେ ବିରଳ । କିନ୍ତୁ ସଦାନନ୍ଦ କବିସୂର୍ଯ୍ୟ, ଦ୍ୱୈତବାଦୀ । ରାଧାକୃଷ୍ଣ ପ୍ରେମଲୀଳା ତାଙ୍କ କାବ୍ୟ କୃତିର ଥିଲା ଏକ ମୁଖ୍ୟ ଆଭିମୁଖ୍ୟ । ତେଣୁ ତତ୍କାଳୀନ ବୈଷ୍ଣବ-ସମ୍ପ୍ରଦାୟରେ ସେ କେତେ ପରି ଅପାଂକ୍ତେୟ ହୋଇ ରହିଥିଲେ, କବିଙ୍କ "ପ୍ରେମ-ତରଙ୍ଗିଣୀ" କାବ୍ୟରେ ତାହା ସୂଚିତ ହୋଇଅଛି ।

ସଦାନନ୍ଦ କବିସୂର୍ଯ୍ୟ, ବୃନ୍ଦାବନର ଷଡ଼-ଗୋସ୍ୱାମୀମାନଙ୍କର ଆଧ୍ୟାତ୍ମିକ ମାର୍ଗର ଅନୁସାରୀ ଥିବାରୁ, ଓଡ଼ିଆ ମଧ୍ୟଯୁଗୀୟ କାବ୍ୟ-ସାହିତ୍ୟରେ ସେ ସର୍ବପ୍ରଥମେ ରାଧାକୃଷ୍ଣ ପ୍ରେମଲୀଳା କଥାବସ୍ତୁ ନେଇ କାବ୍ୟରଚନା କରିଥିଲେ । ସଦାନନ୍ଦ "ନିକୁଞ୍ଜ ନୀଳମଣି"ରେ ନିଜକୁ 'ମହାକବି' ରୂପେ ଘୋଷଣା କରିଥିଲେ ହେଁ, ଅଭିମନ୍ୟୁ ସାମନ୍ତସିଂହାର ତାଙ୍କୁ "ପ୍ରେମକଳା" କାବ୍ୟରେ ନିଜର କାବ୍ୟ-ଗୁରୁ ରୂପେ ସ୍ୱୀକୃତି ଦେଇ ନଥିଲେ — ସଦାନନ୍ଦ କବିସୂର୍ଯ୍ୟ ବୋଧହୁଏ ଅଜ୍ଞାତ ରହି ଯାଇଥାନ୍ତେ ।

ସଦାନନ୍ଦ କବିସୂର୍ଯ୍ୟଙ୍କ ଲେଖନୀ ଥିଲା, ଅଜସ୍ରସ୍ରାବୀ । ଡଃ ବନମାଳୀ ରଥଙ୍କ ରଚିତ "ସଦାନନ୍ଦ କବିସୂର୍ଯ୍ୟ ବ୍ରହ୍ମା" ପୁସ୍ତକଟି, ଓଡ଼ିଆ ପାଠକ ସମାଜରେ ଆଦୃତ ହେବ ବୋଲି ଆଶା ପୋଷଣ କରେ ।

ସୁରେନ୍ଦ୍ର ମହାନ୍ତି
ସମ୍ପାଦକ
ଓଡ଼ିଆ ସାହିତ୍ୟ ଅକାଦମୀ

# ✽ ଦୁଇପଦ ✽

ଓଡ଼ିଶା ସାହିତ୍ୟ ଏକାଡେମୀ ପକ୍ଷରୁ ସଦାନନ୍ଦ କବିସୂର୍ଯ୍ୟ ବ୍ରହ୍ମାଙ୍କ ସମ୍ବନ୍ଧରେ କ୍ଷୁଦ୍ରପୁସ୍ତକ ପ୍ରକାଶ ପାଇଲା । ଏକାଡେମୀର କାର୍ଯ୍ୟକ୍ରମ ମଧ୍ୟରେ ଉତ୍କଳ ସାରସ୍ୱତ ଭଣ୍ଡାରକୁ ଉଜ୍ଜ୍ୱଳ କରିଥିବା ପ୍ରାଚୀନ ଲେଖକମାନଙ୍କର ଜୀବନୀ ସମ୍ବଳିତ କ୍ଷୁଦ୍ର ପୁସ୍ତକ ପ୍ରକାଶ ଯୋଜନା ମଧ୍ୟରେ ଏହା ଅନ୍ତର୍ଭୁକ୍ତ । ଏହି କ୍ରମରେ ... ଗୋଟି ପୁସ୍ତକ ରଚନାର ପ୍ରଣୟନ ହାତକୁ ନିଆଯାଇଛି ।

ବୈଷ୍ଣବ ସାହିତ୍ୟରେ ସଦାନନ୍ଦ କବିସୂର୍ଯ୍ୟ ବ୍ରହ୍ମା ଏକ ବିଶେଷ ସ୍ଥାନ ଅଧିକାର କରନ୍ତି ; ତାଙ୍କର କାବ୍ୟକୃତି କାଳ୍ପନିକ କାବ୍ୟ, କୃଷ୍ଣ ବିଷୟକ କାବ୍ୟ, ସାମ୍ପ୍ରଦାୟିକ ସାହିତ୍ୟ, ଜୀବନୀ ସାହିତ୍ୟ, ଅନୁବାଦ ସାହିତ୍ୟ, ଶାସ୍ତ୍ରୀୟରଚନା ଓ କ୍ଷୁଦ୍ର ଗୀତିକାବଳୀ ପ୍ରଭୃତି ପର୍ଯ୍ୟାୟରେ ବିଭକ୍ତ କରାଯାଇ ପାରେ ।

ଏହି ପୁସ୍ତିକା ସର୍ବସାଧାରଣ, ସାହିତ୍ୟିକ ତଥା ଗବେଷକମାନଙ୍କ ମଧ୍ୟରେ ଆଦୃତ ହେବ ବୋଲି ଆଶା କରୁଛୁ ।

୧୨-୧୧-୮୨
ଭୁବନେଶ୍ୱର

ଗଇଚରଣ ଦାସ
ସମ୍ପାଦକ
ଓଡ଼ିଶା ସାହିତ୍ୟ ଏକାଡେମୀ

# ଆଭାସ

ଓଡ଼ିଆ ବୈଷ୍ଣବ ସାହିତ୍ୟରେ ସଦାନନ୍ଦ କବିସୂର୍ଯ୍ୟ ବ୍ରହ୍ମାଙ୍କ ନାମ ଅବିସ୍ମରଣୀୟ । ତାଙ୍କର ବିଂଶାଧିକ ରଚନା ମଧ୍ୟରୁ କେବଳ ଛଅଗୋଟି କାବ୍ୟ ବିଭିନ୍ନ ସମୟରେ ମୁଦ୍ରିତ ଓ ପ୍ରକାଶିତ ହୋଇଅଛି ; କିନ୍ତୁ ସେ ସବୁ ମଧ୍ୟ ଅତି ଦୁଷ୍ପ୍ରାପ୍ୟ । ବିଭିନ୍ନ ପୋଥି ସଂଗ୍ରହାଳୟରେ ତାଙ୍କର ଅଧିକାଂଶ ପାଣ୍ଡୁଲିପି ସୁରକ୍ଷିତ ଅବସ୍ଥାରେ ଥିଲେ ମଧ୍ୟ ଅଦ୍ୟାବଧି ସେଗୁଡ଼ିକ ସମ୍ପାଦିତ ତଥା ପ୍ରକାଶିତ ହୋଇ ନାହିଁ । କବିଙ୍କ ବିଷୟରେ ପ୍ରକାଶିତ ଆଲୋଚନାର ପରିସର ମଧ୍ୟ ଅତ୍ୟନ୍ତ ସୀମିତ । କେବଳ ପଣ୍ଡିତ ସୂର୍ଯ୍ୟନାରାୟଣ ଦାସ ତାଙ୍କର ଓଡ଼ିଆ ସାହିତ୍ୟର ଇତିହାସରେ ସଦାନନ୍ଦଙ୍କୁ ପାଠକ ମହଲରେ ପରିଚିତ କରାଇବା ପାଇଁ ସତ୍ ସାମାନ୍ୟ ପ୍ରଶଂସନୀୟ ପ୍ରଚେଷ୍ଟା କରିଛନ୍ତି । ଧର୍ମ ଭିତ୍ତିକ ମଧ୍ୟଯୁଗୀୟ ଓଡ଼ିଆ ସାହିତ୍ୟରେ ସଦାନନ୍ଦ ଯେ ଜଣେ ପ୍ରତିଭାଧର କବି ଥିଲେ, ଏ କଥାଟି ହୃଦୟଙ୍ଗମ କରିବା ପାଇଁ ସାଧାରଣ ପାଠକମାନଙ୍କ ସମ୍ମୁଖରେ କୌଣସି ଉପାଦାନ ନାହିଁ । ଏ ପରିପ୍ରେକ୍ଷୀରେ ଓଡ଼ିଶା ସାହିତ୍ୟ ଏକାଡେମି କର୍ତ୍ତୃପକ୍ଷଙ୍କର ଉଦ୍ୟମ ଅବଶ୍ୟ ଅଭିନନ୍ଦନୀୟ ।

ଏ କ୍ଷୁଦ୍ର କଳେବର ବିଶିଷ୍ଟ ପୁସ୍ତକରେ କବି ପରିଚୟ, କାବ୍ୟକୃତି, କବି ପ୍ରତିଭା ଓ କାବ୍ୟ ଚେତନା ବିଷୟରେ ସାମାନ୍ୟ ଆଲୋଚନା କରାଯାଇଛି । ପୁସ୍ତକର ସୀମିତ କଳେବର ପ୍ରତି ସତତ ସଚେତନ ଏ ଲେଖକଙ୍କୁ ବହୁ କ୍ଷେତ୍ରରେ ବିଶଦ ଆଲୋଚନାର ଲୋଭ ସମ୍ବରଣ କରିବାକୁ ପଡ଼ିଛି ।

ଓଡ଼ିଶା ସାହିତ୍ୟ ଏକାଡେମିର ସଭାପତି ଶ୍ରୀ ସୁରେନ୍ଦ୍ର ମହାନ୍ତି ଓ ସମ୍ପାଦକ ଶ୍ରୀ ରାଇ ଚରଣ ଦାସ ଏ ପୁସ୍ତକ ପ୍ରଣୟନ ପାଇଁ ଏହି ଲେଖକଙ୍କୁ ସୁଯୋଗ

ଦେଇ ଥିବାରୁ ସେ ସେମାନଙ୍କ ନିକଟରେ କୃତଜ୍ଞ । ବନ୍ଧୁପ୍ରବୀ ଶ୍ରୀମନୋଜ ମଞ୍ଜରୀ ପଣ୍ଡା ଏ ପୁସ୍ତକର ମୁଦ୍ରଣଯୋଗ୍ୟ ପାଣ୍ଡୁଲିପି ତିଆରି କରିବାରେ ଅଶେଷ ଆଗ୍ରହ ଓ ଅକ୍ଲାନ୍ତ ପରିଶ୍ରମ କରିଛନ୍ତି । ସେ ମଧ୍ୟ ମୋର ଧନ୍ୟବାଦାର୍ହ ।

କବିସୂର୍ଯ୍ୟବ୍ରହ୍ମାଙ୍କ ସୃଷ୍ଟି ଓ ସାଧନା ସମ୍ବନ୍ଧରେ ଏ ଲେଖାଟି ସାହିତ୍ୟାନୁରାଗୀ ପାଠକମାନଙ୍କ ମନରେ ସାମାନ୍ୟତମ ଅନୁସନ୍ଧିତ୍ସା ଓ ଜିଜ୍ଞାସା ସୃଷ୍ଟି କରି ପାରିଲେ ଶ୍ରମ ସାର୍ଥକ ହେବ ।

ଭୁବନେଶ୍ୱର

ତା ୧୫ । ୫ । ୮୨

ବନମାଳୀ ରଥ



# ସୂଚୀପତ୍ର





# ପ୍ରଥମ ପରିଚ୍ଛେଦ

## କବି ପରିଚୟ

ଓଡ଼ିଆ ସାହିତ୍ୟର ଇତିହାସରେ ସଦାନନ୍ଦ କବିସୂର୍ଯ୍ୟ ବ୍ରହ୍ମା ଜଣେ ସ୍ମରଣୀୟ କବି । ତାଙ୍କର ଅଧିକାଂଶ ସୃଷ୍ଟିସମ୍ଭାର ସାମ୍ପ୍ରଦାୟିକ ଧର୍ମ ଚେତନା ଧୂମ ମୁକ୍ତ ନହେଲେ ମଧ୍ୟ ସେଥିରୁ କେତେକ ଗୁରୁତ୍ୱ ପୂର୍ଣ୍ଣ ସାହିତ୍ୟିକ ଅବଦାନ ଭାବରେ ଅବଶ୍ୟ ସ୍ୱୀକାର୍ଯ୍ୟ । ସେ ଚତୁଃଶତାଧିକ ଗ୍ରନ୍ଥ ଛାଡ଼ି ଯାଇଛନ୍ତି । ସେଥିରୁ ଅର୍ଦ୍ଧାଧିକ ଚୈତନ୍ୟପନ୍ଥୀ ବୈଷ୍ଣବ ସମ୍ପ୍ରଦାୟର ଜଟିଳ ସାମ୍ପ୍ରଦାୟିକ ଆଗ୍ରହ ବିଷୟରେ ଆମୂଳ ଚୂଳ ଭାଷ୍ୟବାନ୍ତ । ତଥାପି ସମୃଦ୍ଧ ସାହିତ୍ୟିକ କୃତି ରୂପେ ସୁପରିଚିତ କେତୋଟି କାବ୍ୟର ସୃଷ୍ଟି କୁଶଳତାରୁ କବି କର୍ମର ମହତ୍ତ୍ୱ ଉପଲବ୍ଧି କରିହୁଏ । କବିଙ୍କ ଜୀବନୀ, ଶିକ୍ଷା ଓ ଚରିତ୍ରର ସାମାନ୍ୟ ସୂଚନା ଏହି ଗ୍ରନ୍ଥ ଗୁଡ଼ିକର ସ୍ଥାନେ ସ୍ଥାନେ ଦେଖିବାକୁ ମିଳେ । ସଦାନନ୍ଦଙ୍କ ଉତ୍ସର୍ଗୀକୃତ ଜୀବନର ସକଳ ତଥ୍ୟ ସଂଗ୍ରହ କରିବା ପାଇଁ ଉପାଦେୟ ବାହ୍ୟ ଉପାଦାନର ଏକାନ୍ତ ଅଭାବ ଥିବାରୁ କବି ରଚିତ କାବ୍ୟାବଳୀରୁ କବିଚରିତ ବିଷୟରେ ଯତ୍ ସାମାନ୍ୟ ସୂଚନା ଏଠାରେ ଦିଆ ଯାଉଛି ।

ସଦାନନ୍ଦ କବିସୂର୍ଯ୍ୟ ବ୍ରହ୍ମା ନୟାଗଡ଼ ସବ୍‌ଡ଼ିଭିଜନ ଅନ୍ତର୍ଗତ ଶରଣକୂଳସ୍ଥ ଲକ୍ଷ୍ମୀଧରା ଶାସନରେ ସାମବେଦୀ ବ୍ରାହ୍ମଣ ପରିବାରରେ ଜନ୍ମଗ୍ରହଣ କରିଥିଲେ । ଅଧ୍ୟୟନ ଓ ଅଧ୍ୟାପନା ଥିଲା ପରମ୍ପରା କ୍ରମେ ତାଙ୍କର କୌଳିକ ବୃତ୍ତି । ସେ ସ୍ୱରଚିତ ପ୍ରେମତରଙ୍ଗିଣୀରେ ଉତ୍ତରାଂଶ ସ୍ଥାନରେ ଏହିକଥା ସ୍ପଷ୍ଟଭାବେ ଉଲ୍ଲେଖ କରିଛନ୍ତି — "ନୂଆଁଗଡ଼ ଶରଣକୂଳ ନିକଟରେ ଲକ୍ଷ୍ମୀଧରପଡ଼ା ଶାସନ ସୁବ୍ରାହ୍ମଣ ସଙ୍ଗ ସାମବେଦ ଅଧ୍ୟାପକ କୁଳେ ମୋ ଜନ୍ମ ।

ତାହାଙ୍କ ପିତାଙ୍କ ନାମଥିଲା ପରମାନନ୍ଦ ହୋତା । ତାଙ୍କ ନାମ ସୂର୍ଯ୍ୟ ହୋତା କବି ସ୍ୱରଚିତ ପ୍ରେମ କଳ୍ପଲତା ର ପଞ୍ଚଦଶ ଛାନ୍ଦରେ "ଭଣେ ଏ ସୂର୍ଯ୍ୟ ହୋତା ବାଳକର" 'ସୂର୍ଯ୍ୟ ହୋତା ବାଳକ' ଅର୍ଥାତ୍ ପରମାନନ୍ଦ ହୋତାଙ୍କ ପୁତ୍ର ଭାବରେ ନିଜକୁ ଚିହ୍ନିତ କରିଛନ୍ତି । କବିଙ୍କ ଗର୍ଭ ଧାରିଣୀ ମାତା ଥିଲେ ଭବାନୀ ଦେବୀ । ତାହାଙ୍କ ପିତାମହ ଓ ମାତାମହଙ୍କ ନାମଥିଲା ଯଥାକ୍ରମେ ପୀତାମ୍ବର ହୋତା ଓ ମୁକୁନ୍ଦ ବ୍ରହ୍ମସ୍ଥ । କାଶ୍ୟପ ଗୋତ୍ରୀୟ ଏହି ଶୁକ୍ଳ ସୂତ୍ର ସାମବେଦୀ ବ୍ରାହ୍ମଣ ପରିବାରର କୁଳଦେବତା ଥିଲେ ଶରଣକୂଳର ବାବା ଲଡୁକେଶ୍ୱର । ଇଷ୍ଟଦେବତା ଲଡୁକେଶ୍ୱରଙ୍କୁ ଦୀର୍ଘ ଦିନ ପୂଜା ଆରାଧନା କରି ପରମାନନ୍ଦ ଓ ଭବାନୀ ଦେବୀ ଅଭିଳାଷିତ ଫଳଶ୍ରୁତି ସ୍ୱରୂପ ଯେଉଁ ପୁତ୍ର ସନ୍ତାନ ଲାଭକଲେ ତାହାର ନାମ ଦେଇଥିଲେ 'ସଦାଶିବ' । ପରେସେହି ବାଳକ 'ସଦାଶିବ' ସଦାନନ୍ଦ କବିସୂର୍ଯ୍ୟ ବ୍ରହ୍ମା ନାମରେ ସୁପରିଚିତ ହେଲେ । ନଳିନ ଲୋଚନା କାବ୍ୟର ପ୍ରଥମ ଛାନ୍ଦ ରେ କବି ଲେଖିଛନ୍ତି —

ତହିଁରେ ଶରଣକୂଳ ବୋଲି ଯେ ନଗର,
ଯହିଁ ବସେ ଲଡୁକେଶ ନାମେ ମହେଶ୍ୱର ।।

ନବଲକ୍ଷ ରୁଦ୍ର ଗଣ ଖଟନ୍ତି ଯା ପାଦ,
ଯାହାଙ୍କ ପ୍ରସାଦେ ପାଇ ସକଳ ସମ୍ପଦ ।।
ତାହାଙ୍କ ଆଜ୍ଞାରେ ମୋର ଜନମ ମହୀରେ
ସଦାଶିବ ନାମ ଲଭି ମାତା ପିତାଙ୍କରେ ।।

ସ୍ୱକୀୟ ପାଟଚନ୍ଦ୍ରାବଳୀ ଓ ଗୀତାନୁବାଦ ଗ୍ରନ୍ଥରେ ମଧ୍ୟ କବି ନିଜର ବଂଶ ପରମ୍ପରା ର ସାମାନ୍ୟ ସୂଚନା ଦେଇଛନ୍ତି —

କହୁଛି ଏମନ୍ତ ଜାଣିମ । ସୂର୍ଯ୍ୟ ହୋତା ମୋ ପିତା ନାମ ।।
ଭବାନୀ ମାତା ନାମ ହୋଇ । ଶ୍ରୀଜଗନ୍ନାଥ ପଦଧ୍ୟାୟୀ ।।
ଯେ ମୋର ମାତା ମହ ପୁଣ । ସକଳ ଗୁଣେ ଅପ୍ରମାଣ ।।
ନାମ ମୁକୁନ୍ଦ ବ୍ରହ୍ମସ୍ଥ । ନିରନ୍ତେ ଶିବ ସେବା କରି ।।
ମୋହର ଜାତ ହେବା ଅର୍ଥେ । ଏହାଟି ଜାଣନ୍ତି ସମସ୍ତେ ।।

— ପାଟ ଚନ୍ଦ୍ରାବଳୀ ୪ର୍ଥ ଅଧ୍ୟାୟ

X X X X

"କଶ୍ୟପ କୁଳରେ ମୋହର । ସ୍ଥୂଳ ଉଦୟ ସମ୍ଭର ॥
ଶ୍ରୀ ପୀତାମ୍ବର ପିତାମହ । ମୋର ଅଟନ୍ତି ପିତାମହ ॥
ପରମାନନ୍ଦ ବ୍ରହ୍ମାଙ୍କର । ମୁହିଁ ସେ ଅଟଇ କୁମର ॥

— ଶ୍ରୀମଦ୍ଭଗବଦ୍ ଗୀତାନୁବାଦ ,ପ୍ରାରମ୍ଭିକ ଆଖ୍ୟାନ

ସ୍ୱାମୀଙ୍କ ବିଭିନ୍ନ କାବ୍ୟକବିତାରେ ସେ ନିଜ ଜୀବନର ସ୍ଥିତି ଓ ପ୍ରଗତି, ବିଶେଷ ଭାବରେ ସୂଚିତ କରିବାପାଇଁ ଯୋଡ଼ିଏ ଶବ୍ଦ ବ୍ୟବହାର କରିଛନ୍ତି । ତାହା ହେଉଛି —'ପୂର୍ବାଶ୍ରମ' ଓ 'ବ୍ରହ୍ମଚର୍ଯ୍ୟାଶ୍ରମ । ପାରମ୍ପରିକ ରୀତିରେ'ଆଶ୍ରମ' ବ୍ୟବସ୍ଥା ଦ୍ୱାରା ଯେପରି ଜୀବନର ନିର୍ଦ୍ଦିଷ୍ଟ ସମୟକୁ ବୁଝା ଯାଏ, ସେପରି ଭାବରେ 'ଆଶ୍ରମ' ଶବ୍ଦ ଏଠାରେ ପ୍ରଯୁକ୍ତ ହୋଇନାହିଁ । ସଦାନନ୍ଦଙ୍କ ସମଗ୍ର ଜୀବନଟି ଦୁଇଭାଗରେ ବିଭକ୍ତ । ପ୍ରଥମେ ସେ ଜଣେ କୌଳିକ ସାମବେଦୀ ବ୍ରାହ୍ମଣ ଭାବରେ, ବୋଧହୁଏ ଗୃହସ୍ଥାଶ୍ରମରେ ରହି ବେଦାଧ୍ୟୟନ ଓ ଅଧ୍ୟାପନାରେ କାଳ ଯାପନ କରୁଥିଲେ । କିନ୍ତୁ ହଠାତ୍ ତାଙ୍କ ଜୀବନରେ ଗୋଟିଏ କିଛି ପରିବର୍ତ୍ତନ ଘଟିଯିବା ଫଳରେ ସେ ଚୈତନ୍ୟପନ୍ଥୀ ବୈଷ୍ଣବ ଦୀକ୍ଷା ଗ୍ରହଣ କଲେ ଓ ସଂସାର ତ୍ୟାଗକରି ବୈଷ୍ଣବ ହୋଇ ଅବଶିଷ୍ଟ ଜୀବନ ବ୍ରଜଲୀଳାତ୍ମକ ମଧୁରୋପାସନାରେ ମସ୍ତ ରହି କଟାଇଦେଲେ ।

ଅକାଳ ପତ୍ନୀବିୟୋଗ ହିଁ ସଂସାର ତ୍ୟାଗକରି ସନ୍ୟାସ ଗ୍ରହଣ କରିବା ପାଇଁ ମୁଖ୍ୟ କାରଣ ଭାବରେ ଗ୍ରହଣ କରାଯାଇପାରେ । କବିଙ୍କ କାବ୍ୟମାନଙ୍କରେ ଦାମ୍ପତ୍ୟ ଜୀବନର ବହୁ ନିବିଡ ଅନୁଭୂତିର ବର୍ଣ୍ଣାଢ୍ୟ ବୈଚିତ୍ର୍ୟ ଦେଖିବାକୁ ମିଳେ । ସେ ପ୍ରସଙ୍ଗକ୍ରମେ ଗୋଟିଏ ସ୍ଥଳରେ ଦୈବ ନିର୍ଦ୍ଦିଷ୍ଟ ଭାର୍ଯ୍ୟାର ବିଡ଼ମ୍ବନାରୁ ବ୍ରହ୍ମଚର୍ଯ୍ୟାଶ୍ରମରେ ରହି କାଳଯାପନ କରୁଛନ୍ତି ବୋଲି ସ୍ପଷ୍ଟ ଭାବରେ ସୂଚନା ଦେଇ ଲେଖିଛନ୍ତି — "ବ୍ରହ୍ମଚର୍ଯ୍ୟାଶ୍ରମ ମୋହର ଦଇବେ"

(ମୁ. ର. ଲ. ୫୬ ଛାନ୍ଦ)

ଏଣୁ ସେ ସନ୍ୟାସ ଗ୍ରହଣର ପୂର୍ବବର୍ତ୍ତୀ ସମୟକୁ ନିଜ ଜୀବନର 'ପୂର୍ବାଶ୍ରମ' ଭାବରେ ଗ୍ରହଣ କରି ଚିହ୍ନିତ କରିଛନ୍ତି। ସେ ଯେ,ମୂଳରୁ ବୈରାଗୀ ନଥିଲେ, ଏ କଥା ତାଙ୍କର ବିଭିନ୍ନ ଉକ୍ତି ସମ୍ବଳିତ 'ପୂର୍ବାଶ୍ରମ' ଓ 'ବ୍ରହ୍ମଚର୍ଯ୍ୟାଶ୍ରମ' ଉଲ୍ଲେଖରୁ ସୂଚିତ ହେଉଅଛି । ମାର୍ମିକ ଲେଖନୀରେ ନିଜ ଗାର୍ହସ୍ଥ୍ୟ ଜୀବନର କରୁଣ ଅନୁଭୂତ ବ୍ୟଥା ଆଦି କଥା ଲେଖିଛନ୍ତି —"

ପତ୍ନୀର ହୋଇଲା ଶେଷ,
ଅନୁଭବ ବିନା କେ ଜାଣେ ରସ ଯେ,
ଯେ ହୋଇନାହିଁ ସୁନ୍ଦର ଦାସ ପୁଜନେ ହେ ।

ଶୃଙ୍ଗାର ଲୀଳାର ବିବିଧ ବୈଚିତ୍ର୍ୟ ବର୍ଣ୍ଣନା ପରେ ଶେଷରେ କବି ସ୍ୱକୀୟ ଅତୀତ ଜୀବନର ସୁସ୍ମୃତି ସୂକ୍ଷ୍ମ ଅନୁଭୂତି ଗୁଡ଼ିକୁ ମନେ ପକାଇ ଲେଖିଥିବା କଥା ସ୍ପଷ୍ଟ ଭାବରେ ପ୍ରକାଶ କରିଛନ୍ତି —

"କବିସୂର୍ଯ୍ୟ ବ୍ରହ୍ମା କହୁ
ପାଶୋରି ଦେଇଣି ସେମାନ ମୁହିଁ ଯେ.
ଏବେ ଚେତୋଇ କହୁ, ସୁଜନେ ହେ ।

ଏହିପରି ଅନେକ ଜ୍ୱଳନ୍ତ ଦୃଷ୍ଟାନ୍ତ ଥିବା ସତ୍ତ୍ୱେ ସଦାନନ୍ଦ ମୂଳରୁ ବୈରାଗୀ ଥିଲେ ବୋଲି ପ୍ରଖ୍ୟାପନ କରିବା ଆଦୌ ସମୀଚୀନ ନୁହେଁ ।

କବି କେତେବର୍ଷ ବୟସରେ ଗୃହସ୍ଥାଶ୍ରମ ଛାଡ଼ି ବୈରାଗୀ ହେଲେ ତାହା ନିର୍ଦ୍ଦିଷ୍ଟ ଭାବରେ କୁହାଯାଇ ନପାରିଲେ ମଧ୍ୟ ତେୟାଳିଶ ବର୍ଷ ବେଳକୁ ଯେ, ସେ ନିଶ୍ଚିତ ଭାବେ ସଂସାର ତ୍ୟାଗ କରି ସାରିଲେଣି ସେ କଥା ନିଜେ ସଦାନନ୍ଦ ଯୁଗଳ ରସାମୃତ ଲହରୀ ରେ ଉଲ୍ଲେଖ କରିଛନ୍ତି ।।

ମୁନି କହିଲେ ଯାହା କହିବେ ଅର୍ଥ
ହରି ଗୁଣାର୍ଣ୍ଣବ ସେ ମହାତୀର୍ଥ ।।
ତହିଁ ଅବଗାହେ ମୋ କରି ହର୍ଷ
ବୟସ ହେଲାଣି ତେୟାଳିଶ ବର୍ଷ ।।

ସେହି କାବ୍ୟରେ ଅନ୍ୟତ୍ର ସେ ଉଲ୍ଲେଖ କରିଛନ୍ତି —

" ଶ୍ରୀ ବୀର କେଶରୀ ଦେବ ପଞ୍ଚାବନାଙ୍କ ରେ
ଗ୍ରନ୍ଥ ଆରମ୍ଭ ବାହୁଡ଼ା ଗୁଣ୍ଡିଚାରେ,"

ଶ୍ରୀ ବୀର କେଶରୀ ଦେବଙ୍କ ପଞ୍ଚାବନ ଅଙ୍କରେ ଅର୍ଥାତ୍ ରାଜତ୍ୱର ୪୫ବର୍ଷରେ କବି ଯୁଗଳ ରସାମୃତ ଲହରୀ ଲେଖିବା ଆରମ୍ଭ କରିଥିଲେ । ବୀର କେଶରୀ ଦେବ ଖ୍ରୀଷ୍ଟାବ୍ଦ ୧୭୩୬ ରେ ସିଂହାସନାରୋହଣ କରିଥିଲେ । ତାହାଙ୍କର ରାଜତ୍ୱର ପଞ୍ଚାବନ ଅଙ୍କ ଅର୍ଥାତ୍ ୪୫ବର୍ଷ ହେଉଛି ଖ୍ରୀଷ୍ଟାବ୍ଦ ୧୭୮୧ । ସେତେବେଳକୁ କବିଙ୍କୁ ୪୩ ବର୍ଷ ହୋଇଥିଲା । ,ଏଣୁ ସେ ଖ୍ରୀଷ୍ଟାବ୍ଦ ୧୭୩୮ ରେ ଜନ୍ମ ଗ୍ରହଣ କରିଥିଲେ । ଏହା କବିଙ୍କ ଅନ୍ୟାନ୍ୟ ଉଲ୍ଲେଖରୁ ମଧ୍ୟ ପ୍ରମାଣିତ ହେଉଅଛି । କିନ୍ତୁ କେବେ କବିଙ୍କ ଦେହାନ୍ତ ହୋଇ ଥିଲା ଓ ସେ କେତେବର୍ଷ ବଞ୍ଚିଥିଲେ, । ତାହାର କୌଣସି ସ୍ପଷ୍ଟ ସୂଚନା କୁହାପି ଉପଲବ୍ଧ ହେଉନାହିଁ ।

ଲେଖକଙ୍କର ବିଂଶାଧିକ କାବ୍ୟର ବହୁ ବିକ୍ଷିପ୍ତ ଉକ୍ତିରୁ ଜଣାଯାଏ ଯେ ସଦାନନ୍ଦ କବିସୂର୍ଯ୍ୟ ବ୍ରହ୍ମା ବୋଧହୁଏ ତିରିଶି ବର୍ଷ ବୟସ ହେବା ପର୍ଯ୍ୟନ୍ତ ଗୃହସ୍ଥାଶ୍ରମରେ ତାଙ୍କ ଜୀବନ ଅତିବାହିତ କରିଥିଲେ । ଏହି ସମୟ ମଧ୍ୟରେ ତାଙ୍କର ସ୍ୱାଭାବିକ କବିତ୍ୱ ସ୍ଫୂର୍ତ୍ତି ଘଟିଥିଲା । ସେ ଅନ୍ୟାନ୍ୟ ଅନେକ କ୍ଷୁଦ୍ରକ କବିତା ଲେଖିବା ସଙ୍ଗେ ସଙ୍ଗେ କାଳିନ୍ଦିକା କାବ୍ୟ ଲଳିତ ଲୋଚନା ସମାପ୍ତ କରିଥିଲେ । ଏହି କାବ୍ୟର ବିଭିନ୍ନ ବର୍ଣ୍ଣନାରୁ ତାହାଙ୍କର ବୈରାଗ୍ୟ ଜୀବନର କୌଣସି ସୂଚନା ମିଳେନାହିଁ । ସମଗ୍ର କାବ୍ୟଟି ସ୍ୱାଭାବିକ ଭଙ୍ଗୀରେ କାବ୍ୟ ଶୈଳୀରେ ବିକଶିତ ହୋଇଛି । ପ୍ରେମ ବ୍ୟାପାର ବର୍ଣ୍ଣନାରେ କବିଙ୍କ ପ୍ରତ୍ୟକ୍ଷ ଅନୁଭୂତିର ତୀବ୍ରତା ତଥା [illegible] କାବ୍ୟଟିର ଛନ୍ଦେ ଛନ୍ଦେ ଅନୁଭବ କରିହୁଏ । ସଦାନନ୍ଦଙ୍କ କବିତ୍ୱ ପୂର୍ଣ୍ଣ ଦକ୍ଷତାର ଶକ୍ତିମନ୍ତ ସ୍ୱାକ୍ଷର ଏହି କବି କର୍ମରେ [illegible] ବିଲସିତ । ଏହି ସମୟରେ ହିଁ ସେ ଖୋର୍ଦ୍ଧାର ରାଜା ବୀରକେଶରୀ ଦେବଙ୍କ ଠାରୁ କବିତ୍ୱ ପ୍ରତି ଆଦର [illegible] ସ୍ୱୀକାର ସ୍ୱରୂପ 'କବିସୂର୍ଯ୍ୟ ବ୍ରହ୍ମା' ପଦବୀ ଓ ଅନ୍ୟଠାରୁ 'ମହା କବି' ପଦବୀ ମଧ୍ୟ ପାଇ ଥିଲେ । କବିସୂର୍ଯ୍ୟବ୍ରହ୍ମା ପଦବୀ ଦ୍ୱାରା ସେ ପାଠକ ମହଲରେ ସୁପରିଚିତ ଥିଲେ ଓ ସେଥିରେ ତାଙ୍କର ଯଥେଷ୍ଟ ଖ୍ୟାତି ଓ ପ୍ରତିଷ୍ଠା ହୋଇଯାଇଥିଲା । କବି ସନ୍ନ୍ୟାସ ଗ୍ରହଣ କରିବା ପରେ ମଧ୍ୟ ଏହି ପଦବୀଟିକୁ ଆଦୌ ଛାଡ଼ି ପାରିନାହାନ୍ତି । ବୈଷ୍ଣବାଗମର ସିଦ୍ଧାନ୍ତ ଦୃଷ୍ଟିରୁ ନିଜର ଅଭିମାନ ଦ୍ୟୋତକ ଯେକୌଣସି ପଦ ପଦବୀର ବ୍ୟବହାର ନିଷିଦ୍ଧ ହୋଇଥିଲେ ମଧ୍ୟ କବି ଏହି ପଦବୀର ମୋହ ଛାଡ଼ି ପାରି ନାହାନ୍ତି ଏବଂ ଲଳିତ ଲୋଚନା ବ୍ୟତୀତ ଆଉ ପ୍ରାୟ ସବୁ ଗ୍ରନ୍ଥରେ ସେଥିପାଇଁ ବାରମ୍ବାର କୈଫିୟତ ଦେବା ସଂଗେ ସଂଗେ ବିନମ୍ରତାର ସହିତ କ୍ଷମାଭିକ୍ଷା କରିଛନ୍ତି । ଏହି ନାମରେ ସେ ସୁପ୍ରସିଦ୍ଧ ହୋଇ ଯାଇଥିବାରୁ ଏ ସମସ୍ତ ଗ୍ରନ୍ଥର ପ୍ରସ୍ତାବନାରେ ନିଜକୁ ପରିଚିତ କରାଇବା ପାଇଁ ହିଁ କବିସୂର୍ଯ୍ୟ ଉପାଧି ବ୍ୟବହାର କରିଥିବା କଥା ସେ ଏକାଧିକ ବାର ଉଲ୍ଲେଖ କରିଛନ୍ତି —

"ପୂର୍ବେ ଶ୍ରୀ ବୀର କେଶରୀ ଦେଲେ ପଦ ।
କବିସୂର୍ଯ୍ୟ ବ୍ରହ୍ମା ବୋଲି ଲୋକେକେବେଦ ॥
ସର୍ବେ ଜାଣିବା ପାଇଁ ଏ ନାମ ଭଣି ।
ସାଧୁ ଚରଣ ଦାସ ମୁଁ ଥିବି ଜାଣି ॥"

— ପ୍ରେମତରଙ୍ଗିଣୀ ୨୯ ଛାନ୍ଦ

ସନ୍ନ୍ୟାସ ଗ୍ରହଣ କରିବା ପରେ ପ୍ରେମତରଙ୍ଗିଣୀ କାବ୍ୟ ଲେଖିଥିବାରୁ ଏଠାରେ 'ପୂର୍ବେ' ଶବ୍ଦ ଦ୍ୱାରା କବି ନିଜର 'ପୂର୍ବାଶ୍ରମ' ବା ଗୃହସ୍ଥାଶ୍ରମ ସମୟର କଥା ଉଲ୍ଲେଖ

କରିଛନ୍ତି । ସଦାନନ୍ଦ ତାଙ୍କର ପୂର୍ବାଶ୍ରମରେ ଲଳିତଲୋଚନା କାବ୍ୟ ସମ୍ପୂର୍ଣ୍ଣ କରି ମୋହନଲତା କାବ୍ୟର ପରିସମାପ୍ତି ପୂର୍ବରୁ ଗୃହତ୍ୟାଗକରି ବୈରାଗୀ ହେବାରୁ ମୋହନଲତାପରି ଗୋଟିଏ ଶୃଙ୍ଗାରିକ କାଳ୍ପନିକ କାବ୍ୟକୁ ସମ୍ପୂର୍ଣ୍ଣ କରିବା ପାଇଁ ଆଉ ମନ ବଳାଇଲେ ନାହିଁ । ତାହା ସେପରି ସ୍ଥଳରେ ଅସମାପ୍ତ ଅବସ୍ଥାରେ ପଡ଼ି ରହିଲା । ତାପରେ ବୈଷ୍ଣବୀୟ ତତ୍ତ୍ୱ ଓ ଦର୍ଶନପୂର୍ଣ୍ଣ ବାଣୀ କିଛି ଗ୍ରନ୍ଥ ପ୍ରଣୟନ କରି ସାରିବା ପରେ ବନ୍ଧୁ ଶ୍ରମରେ ପୂର୍ବାଶ୍ରମ ଲିଖିତ କାଳ୍ପନିକ କାବ୍ୟ 'ମୋହନ ଲତା' କୁ ସମ୍ପୂର୍ଣ୍ଣତାର ରୂପ ଦେବାର ଲୋଭ ସମ୍ବରଣ କରି ନପାରି ଶେଷ ଜୀବନରେ କୌଣସିପ୍ରକାରେ ତାହା ସମ୍ପୂର୍ଣ୍ଣ କରିଛନ୍ତି । ଏ କଥାଟି କବି ନିଜେ ମୋହନଲତା କାବ୍ୟର ଶେଷରେ ଘୋଷଣା କରିଛନ୍ତି —

"ଏବେ ଏ କବିତ୍ୱ ବୋଲିବା ପାଇଁ ।
ମନ୍ତ୍ର ଯେସନେ ଔଷଧ ସେବଇ ॥
କେତେକ ଶ୍ରମରେ କରିଥିଲି ଗୀତ ।
ବୃଦ୍ଧରୁ ହୋଇଥିଲି ସମାପତ ।
ଏଣୁ କଲି ସିନା ପୂର୍ଣ୍ଣହେ
ବୋଲେ ସଦାନନ୍ଦ କବିସୂର୍ଯ୍ୟ ବ୍ରହ୍ମା
ମୋ ଶରଣ ଧନ ବର୍ଣ୍ଣହେ ॥"

— ମୋହନଲତା ୪୫ ଛାନ୍ଦର ଶେଷାଂଶ

ରାଧାକୃଷ୍ଣ ଲୀଳା ବିବର୍ଜିତ କୌଣସି କାଳ୍ପନିକ କାବ୍ୟ ଲେଖିବା ତାଙ୍କ ବୈଷ୍ଣବ ଜୀବନର ଧ୍ୟେୟ ହୋଇ ନଥିବାରୁ ଏହା ଅନିଚ୍ଛାକୃତ ପ୍ରକଟିତ ହୋଇଛି । ଏଣୁ ମୋହନଲତାରେ କବିଙ୍କ ଲିଖିତ ଦ୍ୱାବିଂଶ ଗଡ଼ର ଉଲ୍ଲେଖ ଥିବାରୁ , ଏହି କାଳ୍ପନିକ କାବ୍ୟଟି କବିଙ୍କ ଅଷ୍ଟୋବିଂଶତ ତମ କାବ୍ୟ ବୋଲି ଗ୍ରହଣ କରାଯାଇ ନ ପାରେ । ବାସ୍ତବରେ ଏହା ସଦାନନ୍ଦଙ୍କ ଦ୍ୱିତୀୟ ରଚନା ଓ 'ପୂର୍ବାଶ୍ରମ' ର ଅବଦାନ । ପୁନଶ୍ଚ ମୋହନ ଲତା କାବ୍ୟରେ "ଅନୁଭବୀ ବିନୁ କେ ଜାଣେ ଏହା" ବୋଲି କହି ଲେଖକ ନିଜର ଦାମ୍ପତ୍ୟ ଜୀବନର ବହୁ ସୂକ୍ଷ୍ମାନୁଭୂତ ବର୍ଣ୍ଣନା କରିଛନ୍ତି । କାବ୍ୟନାୟିକାର ସ୍ୱରୂପର ବର୍ଣ୍ଣନା ନବାଜ ବୈଷ୍ଣବଙ୍କ ଅନୁଭୂତିର ପ୍ରତ୍ୟକ୍ଷ ସାକ୍ଷୀ ବହନ କରୁଛି —

ମାଂସଳ ନାଭିରୋମ ମୃଦୁ ବିସ୍ତାର
ମହା ମନୋହର ମଦନ ପୁର
ନୃପ କୁମାର ତହିଁ ଧରି ଦେଲେ
ଭିକ୍ଷି ମଲି ପ୍ରାଣ ରଖ ବୋଇଲେ ସେ
ଚମକ ଚନ୍ଦ୍ରମା ମୁହଁ ଯେ

ଗାଢ଼େ ଲିଭି କାନ୍ତ ଅଧର ମଧୁକୁ ପାନକଲା ତା ନ ସହି ଯେ

— ମୋହନ ଲତା ୪୧ /୭

ବାସ୍ତବରେ ଏହିପରି କବିତାର ଭାବ ଧର୍ମ ସହିତ ତାଳଦେଇ ଆଉ କିଛି କବିତା ଅନୁମାନରେ ରଚନା କରି କାବ୍ୟ ସମାପନ କରିବା "(ଅନୁମାନ କରି କହିଲି ଏବେ ମୁଁ ବୈରାଗୀ)" ସଦାନନ୍ଦଙ୍କ ପରି ନୈଷ୍ଠିକ ବୈଷ୍ଣବଙ୍କ ଅଧ୍ୟମ କାଳରେ 'ମନ୍ତ୍ରର ଔଷଧ ଭକ୍ଷଣ' ପରି ହୋଇଛି । ମଧୁପୁର ରାଜା ଘନଶ୍ୟାମ ନରେନ୍ଦ୍ରଙ୍କ ପୌତ୍ର ରାଜା ରାମଚନ୍ଦ୍ର ନରେନ୍ଦ୍ରଙ୍କ ନାମରେ କାବ୍ୟଟିର ଭଣିତା କରିଛନ୍ତି । ଯୋଉଁ ରାଜା ରାମଚନ୍ଦ୍ର ଦେବଙ୍କ ଅଷ୍ଟବଂଶ ଅଙ୍କରେ କାବ୍ୟର ପରିସମାପ୍ତି ଘଟିଛି । ଅର୍ଥାତ୍ ଏ କାବ୍ୟର ଅଧିକାଂଶ ୧୭୮୦ ପୂର୍ବରୁ ଲେଖା ହୋଇଥିଲେ ମଧ୍ୟ 'ଏବେ' ଖ୍ରୀଷ୍ଟାବ୍ଦ ୧୮୪୬ ରେ ଏହା ସମ୍ପୂର୍ଣ୍ଣ ହେଲା —

"ମଧୁପୁର ଶ୍ରୀ ଭୂଧର ବରବର ।
ଶ୍ରୀ ରାମଚନ୍ଦ୍ର ନରେନ୍ଦ୍ର ବାହାଦୁରଙ୍କର ।।

ମୋହନ କଲ୍ପଲତା ବୋଲଣ ଯେ ଛାନ୍ଦ ନାମ ।
ବତ୍ରିଶି ଛାନ୍ଦ ଲେଖି କଲି ଯେ ସମ୍ପୂର୍ଣ୍ଣ ।।

ଶ୍ରୀ ରାମଚନ୍ଦ୍ର ଦେବଙ୍କ ଅଷ୍ଟବଂଶାଙ୍କରେ ।
ଗଡର ଉତ୍ତର ପାର୍ଶ୍ୱ ଖେଟକା ଗ୍ରାମରେ ।।"

ଯୁଗଳ ରସାମୃତ ଲହରୀ କବିଙ୍କ ତୃତୀୟ ଅବଦାନ ଓ ପ୍ରଥମ ବୈଷ୍ଣବୀୟ କାବ୍ୟ । ସେତେବେଳକୁ କବିଙ୍କ ତେସ୍ତାଳିଶି ବର୍ଷ ହୋଇଥିଲା । ଏଣୁ ସମ୍ଭବତ ସଦାନନ୍ଦ ଚାଳିଶି ବର୍ଷ ହେବା ପର୍ଯ୍ୟନ୍ତ 'ପୂର୍ବାଶ୍ରମ' ରେ ଥିଲେ ଓ ତତ୍ ପରବର୍ତ୍ତୀ ଜୀବନ ବିରାଗୀ ବୈଷ୍ଣବ ଭାବରେ କଟାଇଛନ୍ତି । ତାଙ୍କର ବିପୁଳ ବୈଷ୍ଣବୀୟ ରଚନା ମଧ୍ୟ ଏହି ସମୟରେ ଲିଖିତ ।

କବି ସଦାନନ୍ଦ କବି ସୂର୍ଯ୍ୟ ବ୍ରହ୍ମା ନାମରେ ସୁପରିଚିତ ହୋଇଥିଲେ ମଧ୍ୟ ତାହାଙ୍କର ଅନେକ ନାମ ପ୍ରଚଳିତ ଥିବାର ଦେଖାଯାଏ । ସେ ନିଜେ ଲେଖିଛନ୍ତି

"ସାଧୁ ଚରଣ ଦାସ ବୋଲି ଆପଣ ଶ୍ରୀ ମୁଖେ ଆଜ୍ଞା ହୋଇଛି
ପିତୃ ମାତୃ ବୈଷ୍ଣବ ରାଜନେ ବହୁ ନାମ ମୋର ଅଛି ।"

(ପ୍ରେମ ତରଙ୍ଗିଣୀ ୩୬ଶ ଛାନ୍ଦ)

ଲିଙ୍ଗୁ ବାବାଙ୍କ ପ୍ରସାଦରୁ କବି ଜନ୍ମ ଗ୍ରହଣ କରିଥିବାରୁ ପିତା ମାତା ସଦାଶିବ ନାମ ଦେଇଥିଲେ, ମାଆ ସ୍ନେହରେ ସଦାନନ୍ଦ ବୋଲି ଡାକୁଥିଲେ ।

ସର୍ବାନନ୍ଦ ମଧ୍ୟ ତାଙ୍କର ଆଉ ଗୋଟିଏ ନାମ ଥିଲ । ଗ୍ରାମବାସୀ ମାନେ ତାହାଙ୍କୁ ଆଦର ରେ 'ଉତ୍ସବ' ବୋଲି ଡାକୁଥିଲେ । ସେ ବୈଷ୍ଣବ ଦୀକ୍ଷା ଗ୍ରହଣ କରିବା ପରେ ଗୁରୁ ନାଁ ଦେଇଥିଲେ ସାଧୁଚରଣ ଦାସ । ବୈଷ୍ଣବ ମାନେ 'ବ୍ରଜମୋହନ' ଦାସ ବୋଲି ସମ୍ବୋଧନ କରୁଥିଲେ । ଖୋର୍ଦ୍ଧା ରାଜା ଗଜପତି ବୀରକେଶରୀ ଦେବ ତାହାଙ୍କୁ 'କବିସୂର୍ଯ୍ୟ ବ୍ରହ୍ମା' ପଦବୀରେ ଭୂଷିତ କରିଥିଲେ । ଏ ସବୁ ନାମ ମଧ୍ୟରୁ କବି ସ୍ନେହମୟୀ ଜନନୀଙ୍କ ଆଦରର ନାଁଟି 'ସଦାନନ୍ଦ' ସହିତ ଗୌରବାବହ ରାଜ ଦତ୍ତ ଉପାଧି ଯୋଡ଼ି ଛଦ୍ମନାମ ଭାବରେ ବ୍ୟବହାର କରି ନିଜକୁ ପରିଚିତ କରାଇଛନ୍ତି । ଗୁରୁ ଦତ୍ତ ନାମ ସାଧୁ ଚରଣ ଦାସ ମଧ୍ୟ ବହୁ ସ୍ଥଳରେ ବ୍ୟବହୃତ ହୋଇ ଥିବାର ଦେଖାଯାଏ ।

" ଭବ ଗ୍ରୀଷ୍ମ ତାପ ହୋଏ ନାଶ ।
କହେ ଏ ସାଧୁ ଚରଣ ଦାସ ॥
ଗୁରୁଦତ୍ତ ନାମ ମୋର ଏହି ।
ମୋତେ ଚହ୍ନାଇବା ପାଇଁ କହି ॥
ଗ୍ରାମଦତ୍ତ ନାମ ଯେ ଉତ୍ସବ ।
ମାତା ପିତା ବୋଲନ୍ତି ସଦାଶିବ ॥
ମାତା ସ୍ନେହେ ଡାକନ୍ତି ସଦାନନ୍ଦ ।
ଛାନ୍ଦ ଦାସ ଏଣୁ ସର୍ବାନନ୍ଦ ॥
ବଇଷ୍ଣବ କରୁଣା ଚିତ୍ତରେ ।
ବ୍ରଜମୋହନ ଦାସ ବୋଇଲେ ॥
ବୀର କେଶରୀ ଦେବଙ୍କ ଦତ୍ତ ।
କବିସୂର୍ଯ୍ୟ ବ୍ରହ୍ମା ପଦଖ୍ୟାତ ॥
ବ୍ରଜଲୀଳାମୃତ ସମୁଦ୍ର (୧୫ ଶ ଛାନ୍ଦ )।

ରାଜଦତ୍ତ ଉପାଧି "କବିସୂର୍ଯ୍ୟ ବ୍ରହ୍ମା" ବ୍ୟତୀତ କବିଙ୍କର ଆଉ ଗୋଟିଏ ଉପାଧି 'ମହା କବି' ମଧ୍ୟ ଥିଲା, ଯେଉଁ ନାମରେ ସେ ଦେଶରେ ଖ୍ୟାତିଲାଭ କରିଥିଲେ । ସେ ନିଜେ ଲେଖିଛନ୍ତି —

"'ମହାକବି' ନାମ ଖ୍ୟାତି ପ୍ରତିଷ୍ଠା ଯହିଁ
ଛେବେ ହେଲେ ତହିଁରୁ ମୋ ପ୍ରୟୋଜନ ନାହିଁ" ।
(ନି. ନି. ପ୍ରଥମ ଛାନ୍ଦ)

ଅବଶ୍ୟ ଏ ମହାକବି ଉପାଧି ସେ କାହାଠାରୁ ପାଇଥିଲେ ସେ କଥାର କୌଣସି ସୂଚନା ମିଳୁନାହିଁ ।

ସଦାନନ୍ଦ ନୟାଗଡ଼ ରାଜ୍ୟାନ୍ତର୍ଗତ ଶରଣ କୂଳର ଭିଖାରୀ ରାଜା ଶାସନରେ ଜନ୍ମ ଗ୍ରହଣ କରିଥିଲେ ମଧ୍ୟ ସେ ସେଠାରେ ନିଜ 'ଜୀବନର ପୂର୍ବାଶ୍ରମ' ଟି କଟାଇଥିଲେ । କବି ଭାବରେ ପ୍ରତିଷ୍ଠା ପାଇବା ପରେ ସେ ବୈଷ୍ଣବ ଦୀକ୍ଷା ଗ୍ରହଣ କରି ବୈରାଗୀ ହୋଇ ବ୍ରହ୍ମଚର୍ଯ୍ୟାଶ୍ରମରେ ଜୀବନ ଅତିବାହିତ କରୁଥିବା ବେଳେ ସେ ଘରଦ୍ୱାର ଛାଡ଼ି ଚାଲି ଯାଇଥିଲେ । ବୈଷ୍ଣବ ଧର୍ମର ପ୍ରଚାର ଓ ପ୍ରସାର ନିଜ ଜୀବନର ଲକ୍ଷ ହୋଇଥିବାରୁ ସେ ବିଭିନ୍ନ ସ୍ଥାନରେ ମଠ ସ୍ଥାପନ କରି ଶିଷ୍ୟ ମଣ୍ଡଳୀ ମଧ୍ୟରେ ଧର୍ମ ସାଧନାରେ ନିବିଷ୍ଟ ରହି ଜୀବନର ଅବଶିଷ୍ଟ ସମୟ ଅତିବାହିତ କରିଥିଲେ । ସେ ପ୍ରଥମେ ନୟାଗଡ଼ ରୁ ଯାଇ ବୋଧହୁଏ ଘୁମୁସର ଭଞ୍ଜ ରାଜାଙ୍କ ଦରବାର ଅଳଙ୍କୃତ କରିଥିଲେ । ସେଠାରେ କିଛିଦିନ ଗୌରବର ସହିତ ଅତିବାହିତ କରିବା ପରେ କବିଙ୍କ ପ୍ରିୟସଖା ଦଶପଲ୍ଲାର ଭଞ୍ଜରାଜାଙ୍କ ସାଦର ନିମନ୍ତ୍ରଣ କ୍ରମେ ଆସି ଦଶପଲ୍ଲା ରାଜଦରବାରରେ ସସମ୍ମାନେ କେତୋଟି ବର୍ଷ ଅବସ୍ଥାନ କଲେ । ତାପରେ କଟକ ନିକଟସ୍ଥ ଦାମୋଦରପୁର ଶାସନରେ ଧର୍ମ ପ୍ରଚାର ଉଦ୍ଦେଶ୍ୟରେ ଗୁଣବର୍ଷ ରହିଲେ । ତାପରେ ଅସୁରେଶ୍ୱର ନିକଟସ୍ଥ ଦକ୍ଷିଣପଡ଼ା ଗ୍ରାମରେ ସେ ଗୋଟିଏ ମଠ ପ୍ରତିଷ୍ଠା କଲେ । ମୂଳପୀଠ ସେଠାରେ ଥିବାବେଳେ କବିଙ୍କ କବିତ୍ୱ କୀର୍ତ୍ତି ଓ ଧର୍ମ ନିଷ୍ଠାର ମୁଗ୍ଧ ହୋଇ ମଧୁପୁର ଜମିଦାର ଘନଶ୍ୟାମ ନରେନ୍ଦ୍ର କବିଙ୍କୁ ଡକାଇ ନେଲେ ।

ନୂଆଗଡ଼ ରାଜ୍ୟେ ପୂର୍ବାଶ୍ରମଯେ ମୋହର
କିଛିଦିନ ମାତ୍ରକ ରହିଲି ଘୁମୁସର ।
ଦଶପଲ୍ଲା ଭଞ୍ଜରାଜା ସଖ୍ୟ ପ୍ରେମେ ମୋତେ
ବହୁ ସମ୍ଭାବନାରେ ରଖିଲେ ବର୍ଷକେତେ ।
କଟକ ନିକଟ ଦାମୋଦର ପୁର ଗ୍ରାମେ
ଗୁଣବର୍ଷ ରହିଲି ମାଧିକା ସେହି ସ୍ଥାନେ ।
ତତ୍ପରେ ମଧୁପୁର ରାଜ୍ୟ ଅଛୁ ଏବେ
ବ୍ରହ୍ମଚର୍ଯ୍ୟ ଆଶ୍ରମ ତ ମୋହର ଏଇବେ ।

— ଯୁଗଳ ରସାମୃତ ଲହରୀ ୫୬ ଛାନ୍ଦ ।

ମଧୁପୁରରେ ଥିବାବେଳେ ସଦାନନ୍ଦ ମଧୁପୁର ରାଜାଙ୍କ ପୃଷ୍ଠପୋଷକତାରେ ତାଙ୍କର ଜମିଦାରୀ ଅନ୍ତର୍ଗତ ଖଣ୍ଡେଲୋ ଗ୍ରାମରେ ଗୋଟିଏ ମଠ ସ୍ଥାପନ

କରୁଥିଲେ ଓ ସେଠାରେ ମହନ୍ତ ପଦରେ ଅଧିଷ୍ଠିତ ହୋଇଥିଲେ । ମଧୁପୁର ରାଜପରିବାର ପରମ୍ପରା କ୍ରମେ ସଦାନନ୍ଦଙ୍କ ପ୍ରତିଷ୍ଠିତ ପୀଠର ଶିଷ୍ୟତ୍ୱ ଗ୍ରହଣ କରୁଥିଲେ । ମଧୁପୁର ରାଜ୍ୟରେ କବି ବୈଷ୍ଣବ ଜୀବନର ଅଧିକାଂଶ ସମୟ କଟାଇଛନ୍ତି । ରାଜା ଘନଶ୍ୟାମ ନରେନ୍ଦ୍ରଙ୍କ ଠାରୁ ଆରମ୍ଭ କରି ତାଙ୍କର ପୌତ୍ର ରାମଚନ୍ଦ୍ର ନରେନ୍ଦ୍ରଙ୍କ ପୃଷ୍ଠପୋଷକତାରେ ରହି ସଦାନନ୍ଦ ବହୁ ଶାସ୍ତ୍ରିକ କାବ୍ୟ ରଚନା କରିଥିଲେ । କବିଙ୍କ ଦ୍ୱିତୀୟ ରଚନା ଯୁଗଳରସାମୃତ ଲହରୀ ଘନଶ୍ୟାମ ନରେନ୍ଦ୍ରଙ୍କ ସମୟରେ ରଚିତ ହୋଇଥିବା ଓ ତାଙ୍କର ଶ୍ରେଷ୍ଠତମ କାବ୍ୟ ମୋହନ ଲତାର ପରିସମାପ୍ତି ଘଟିଥିଲା ରାମଚନ୍ଦ୍ର ନରେନ୍ଦ୍ରଙ୍କ ସମୟରେ ।

ଜଣେ ସିଦ୍ଧ ସାଧକ ଭାବରେ ସଦାନନ୍ଦଙ୍କ ଖ୍ୟାତି ଚାରିଆଡ଼େ ବ୍ୟାପି ଯାଇଥିଲା । ଶୁଣାଯାଏ ଅନୁଗୁଳର ରାଜା ଇନ୍ଦ୍ରଜିତ ସାମନ୍ତସିଂହାର ସଦାନନ୍ଦଙ୍କୁ ବହୁ ସମ୍ଭାବନାରେ ବାଲିଆ ଡକାଇ ନେଇ ପୁତ୍ରେଷ୍ଟି ଯଜ୍ଞ ସମ୍ପାଦନ କରିବାରୁ ଅଭିମନ୍ୟୁଙ୍କ ଧରାବତରଣ ହୋଇଥିଲା ଓ ସେ ସଦାନନ୍ଦଙ୍କ ଠାରୁ ଦୀକ୍ଷା ଗ୍ରହଣକରି ଶିଷ୍ୟତ୍ୱ ସ୍ୱୀକାର କରିଥିଲେ । ପରବର୍ତ୍ତୀ ସମୟରେ ସେହି ଅଭିମନ୍ୟୁ ଗୁରୁଙ୍କ ପଦାଙ୍କ ଅନୁସରଣ କରି ରସିକ ଭକ୍ତ କବି ଅଭିମନ୍ୟୁ ସାମନ୍ତସିଂହାର ଭାବରେ ସୁପରିଚିତ ହୋଇଛନ୍ତି । ଶେଷ ଜୀବନରେ ସଦାନନ୍ଦ ମହିମୋଳ ନିକଟସ୍ଥ ପବିତ୍ର ପଡ଼ାରେ ଆଉ ଗୋଟିଏ ମଠ ସ୍ଥାପନକରି ସେଠାରେ ଶେଷ ଜୀବନ ଅତିବାହିତ କରିଥିଲେ । ବର୍ତ୍ତମାନ ଏହିଠାରେ କବିଙ୍କ ସମାଧି ପୀଠ ଅବସ୍ଥିତ ଓ ପ୍ରତି ବର୍ଷ ପୌଷମାସ ଅମାବାସ୍ୟାରେ ଏଠାରେ ତାଙ୍କର ଶ୍ରାଦ୍ଧ ବାର୍ଷିକୀ ପାଳିତ ହୁଏ ।

କବି ସଦାନନ୍ଦ କାଶ୍ୟପ ଗୋତ୍ରୀୟ ସାମବେଦୀ ବ୍ରାହ୍ମଣ ପରିବାରରେ ଜନ୍ମଗ୍ରହଣ କରିଥିବାରୁ ବାଲ୍ୟକାଳରେ ସେ ସୁଶିକ୍ଷା ଲାଭ କରିଥିଲେ । ପରମ୍ପରା କ୍ରମେ ତାହାଙ୍କ ପରିବାରର ପିତୃପିତାମହମାନେ ଅଧ୍ୟାପନା ବୃତ୍ତି କରି ଆସୁଥିଲେ । ବାଳକ ସଦାନନ୍ଦ ଅଧ୍ୟୟନ ଓ ଅଧ୍ୟାପନାର ପବିତ୍ର ପରିବେଶରେ ଲାଳିତ, ପାଳିତ ଓ ଶିକ୍ଷିତ ହୋଇଥିଲେ । ତାଙ୍କର ବିଭିନ୍ନ ଗ୍ରନ୍ଥରେ ପ୍ରସଙ୍ଗ କ୍ରମେ ଲେଖିବାଛି ବିଭିନ୍ନ ସୂଚନାରୁ ଜଣାଯାଏ ଯେ, କବି ମୂଳରୁ ଉତ୍ତମ କବିତ୍ୱ ପ୍ରତି ଆକୃଷ୍ଟ ହୋଇଥିଲେ ଓ ପୂର୍ବକବିମାନଙ୍କର ବହୁ କାବ୍ୟ କବିତା ଅଧ୍ୟୟନ କରିଥିଲେ । ସଂସ୍କୃତ ସାହିତ୍ୟର ପ୍ରସିଦ୍ଧ କାବ୍ୟ ମାନଙ୍କ ସହିତ ସଂସ୍କୃତନିଷ୍ଠ ଓଡ଼ିଆ କାବ୍ୟ ମାନଙ୍କର ପଠନ, ମନନ ଓ ଅନୁଶୀଳନ ଦ୍ୱାରା ଅପେକ୍ଷାକୃତ ତରୁଣ ବୟସରୁହିଁ ସେ ଚମତ୍କାର କବିତା ରଚନାରେ ଅପୂର୍ବ ଦକ୍ଷତା ହାସଲ କରି ପାରିଥିଲେ । କବିଙ୍କ ପ୍ରଥମ ଅବଦାନ ଭାବରେ ସଂସ୍କୃତିତ ଲଳିତ ଲୋଚନା କାବ୍ୟର ସୃଷ୍ଟି କ୍ରମରୁ ଏହା କେବଳ ଭଲ ଭାବରେ ଉପଲବ୍ଧି କରିହୁଏ । ଓଡ଼ିଆ, ସଂସ୍କୃତ,

ବଙ୍ଗଳା, ମରାଠୀ, ହିନ୍ଦୀ, ପାର୍ଶୀ ଭାଷାରେ ତାଙ୍କର ଅନେକ ପ୍ରବେଶ ଥିଲା । ବେଦ, ପୁରାଣ, ଅଳଙ୍କାର, କାବ୍ୟ ଉପନିଷଦ, ନାଟକ ଓ ବୈଷ୍ଣବ ତତ୍ତ୍ୱ ସମ୍ବଳିତ ବିଭିନ୍ନ ଶାସ୍ତ୍ର ଓ ଗ୍ରନ୍ଥ ଅଧ୍ୟୟନର ବହୁ ପ୍ରତ୍ୟକ୍ଷ ପ୍ରମାଣ ତାଙ୍କର ସ୍ୱରଚିତ ଗ୍ରନ୍ଥମାନଙ୍କର ଛନ୍ଦେ ଛନ୍ଦେ ମିଳିଥାଏ । ମନ୍ୟାନ୍ତ ଅନୁଧ୍ୟାନ କରିବା ପରେ ସେ ତାଙ୍କର ସମସ୍ତ ବିଦ୍ୟାବୁଦ୍ଧି କେବଳ ଚୈତନ୍ୟପନ୍ଥୀ ଧର୍ମାଚରଣର ବିଶ୍ଳେଷଣ ଓ ରୂପାୟନରେ ବିନିଯୋଗ କରିଛନ୍ତି । ଜଣେ ନୈଷ୍ଠିକ, କୁଳାଚାର ନିଷ୍ଠ, ବିଜ୍ଞ, ସାମବେଦୀ, ସ୍ମାର୍ତ୍ତ, ଶାସନୀ ବ୍ରାହ୍ମଣ ଯେ, କିପରି ସର୍ବତ୍ୟାଗୀ ହୋଇ ଚୈତନ୍ୟପନ୍ଥୀ ବୈଷ୍ଣବ ପାଲଟିଲେ, ତାହା ଜାଣିବା ପାଇଁ କୌଣସି ଐତିହାସିକ ନିର୍ଦ୍ଦିଷ୍ଟ ଉପାଦାନ ବର୍ତ୍ତମାନ ପର୍ଯ୍ୟନ୍ତ ମିଳିନାହିଁ । କବି ନିଜର ଶିକ୍ଷାଦୀକ୍ଷା ପ୍ରସଙ୍ଗରେ ଜଣେ ଶିକ୍ଷା ଗୁରୁ, ଜଣେ ଦୀକ୍ଷାଗୁରୁ ଓ ଆଉ ଜଣେ ବୈଷ୍ଣବ ସଖାଙ୍କ କଥା ଉଲ୍ଲେଖ କରିଛନ୍ତି । ଦୀକ୍ଷାଗୁରୁ ଓ ବୈଷ୍ଣବ ସଖାଙ୍କ ନାମ ଉଚ୍ଚାରଣ କରିଥିଲେ ମଧ୍ୟ ଶିକ୍ଷାଗୁରୁଙ୍କ ନାମର କୁତ୍ରାପି କୌଣସି ସୂଚନା ମିଳୁନାହିଁ । ଲେଖକଙ୍କ ଗୋଟିଏ ଉଲ୍ଲେଖରୁ ଶ୍ରୀ କିଶୋର ଦାସହିଁ ତାଙ୍କର ଉଭୟ ଶିକ୍ଷା ଓ ଦୀକ୍ଷାଗୁରୁ ଥିଲେ ଏପରି ଅବଧାରଣା କରିହୁଏ—

"କି ଭାଗ୍ୟେ କି ତପସ୍ୟା ପୂର୍ବେ ମୁଁ କଲି
ଗୁରୁ ଶ୍ରୀ କିଶୋର ଦାସଙ୍କୁ ପାଇଲି
ଏକାବେଳକେ ଦୀକ୍ଷା ଶିକ୍ଷା ଦେଇଣ
ଆଶ୍ରୟ ଦେଲେ ସେ ଅଭୟ ଚରଣ

— ନିଷ୍ଠା ନୀଳମଣି ୪।୨୬

ଅନ୍ୟତ୍ର ବି ସେ ଲେଖିଛନ୍ତି —

ନାମ ଶ୍ରୀ ଲଡୁକେଶ୍ୱର କୁଳ ଇଷ୍ଟ ମୋର
ଶିକ୍ଷାଗୁରୁ ଯେଣୁ କଲେ ଆଜ୍ଞା
ବୈଷ୍ଣବ ଦୀକ୍ଷା କରି ଭଜ ରାଧା ହରି
ସେ କଥା ନ କଲି ତ ଅବଜ୍ଞା

— ମୋହନ କଳ୍ପଲତା ୩୯ଶ ଗ୍ରନ୍ଥ

ଏଥିରୁ ସ୍ପଷ୍ଟଭାବରେ ଜଣାଯାଉଛି ଯେ, କବି ସଦାନନ୍ଦ ପ୍ରାରମ୍ଭିକ ସ୍ତରରେ ଶ୍ରୀ କିଶୋର ଦାସଙ୍କ ଠାରୁ ଶିକ୍ଷା ଗ୍ରହଣ କରୁଥିଲେ । ଶ୍ରୀ କିଶୋର ଦାସ ଜଣେ ଏକନିଷ୍ଠ ଚୈତନ୍ୟପନ୍ଥୀ ବୈଷ୍ଣବ ଥିବାରୁ ମେଧାବୀ ତରୁଣ ଛାତ୍ର ସଦାନନ୍ଦଙ୍କୁ ବୈଷ୍ଣବଦୀକ୍ଷା ଗ୍ରହଣ କରିବା ପାଇଁ ମୂଳରୁ ପ୍ରବର୍ତ୍ତାଇ ଥିଲେ । ଶେଷରେ ସେହି ଶିକ୍ଷାଗୁରୁ ଶ୍ରୀ କିଶୋର ଦାସ କବିଙ୍କୁ ବୈଷ୍ଣବ ଦୀକ୍ଷା ପ୍ରଦାନ କରି 'ରାଧା

ନର' ଭଜନ କରିବା ପାଇଁ ନିର୍ଦ୍ଦେଶ ଦେଇଥିଲେ । ସଦାନନ୍ଦ ଶିକ୍ଷାଗୁରୁଙ୍କଠାରୁ ଆନୁଷ୍ଠାନିକ ଭାବେ ବୈଷ୍ଣବ ଦୀକ୍ଷା ଗ୍ରହଣ କରି ସମସ୍ତ ଆନ୍ତରିକତାର ସହିତ ନିଜ କର୍ତ୍ତବ୍ୟ ପାଳନ କରୁଥିଲେ । ବୈଷ୍ଣବ ହେବା ପରେ ମଧ୍ୟ ଲିଙ୍ଗରାଜ, ଜଗନ୍ନାଥ ଓ ଅନ୍ୟାନ୍ୟ ଦେବଦେବୀଙ୍କ ପ୍ରତି ସଂସ୍କାର ବଶତଃ ସଦାନନ୍ଦଙ୍କ ଆନୁଗତ୍ୟ ରହିଥିବାରୁ ତାଙ୍କର ଆଉ ଜଣେ ବୈଷ୍ଣବ ବନ୍ଧୁ ଶ୍ରୀ ରାଧାଚରଣ ଦାସ ଏ ବିଷୟରେ ସଦାନନ୍ଦଙ୍କୁ ପ୍ରଭାବିତ କରି, ରାଧାକୃଷ୍ଣ ଲୀଳା ବିଷୟକ ଚୈତନ୍ୟ ପନ୍ଥୀ ତତ୍ତ୍ୱ ବ୍ୟାଖ୍ୟାନ କରି କବିଙ୍କୁ ଅନ୍ୟ ଦେବଦେବୀଙ୍କ ଉପାସନାରୁ ବିରତ କରାଇଥିଲେ । ଏକଥା କବି ସ୍ୱରଚିତ ନିତ୍ୟାନନ୍ଦମଣି କାବ୍ୟରେ ଉଲ୍ଲେଖ କରି ନିଜର ପ୍ରାଣବନ୍ଧୁଙ୍କ ଅବର୍ତ୍ତମାନତା ଜନିତ ଦୁଃଖରେ ସ୍ମୃତି ତର୍ପଣ କରିଛନ୍ତି —

ସେ ଯେ ରାଧାଚରଣ ଦାସ ନାମେ ପ୍ରାଣବନ୍ଧୁ
ମୋହର ସେ ଗଲେ ଛାଡ଼ି
ଯାଙ୍କ ସଙ୍ଗୁ ନିତ୍ୟମୋର ସେ ଦେବତାନ୍ତର
ଭକ୍ତି ଛଡ଼ାଇଲେ ତତ୍ତ୍ୱ କହି

(ନି.ନ. ୬ଷ୍ଠ ଛାନ୍ଦ)

ବୈଷ୍ଣବ ଦୀକ୍ଷା ଗ୍ରହଣ କରିବା ପରେ ମଧ୍ୟ କବି କେତେକ ବର୍ଷ 'ଗୃହସ୍ଥାଶ୍ରମ'ରେ ରହି କାଳଯାପନ କରୁଥିଲେ । ସେତେବେଳେ ସେ ଲଳିତ-ଲୋଚନା ରଚନା କରିଥିଲେ ଓ ମୋହନଲତା କାବ୍ୟର ଅଧିକାଂଶ ଛାନ୍ଦ ଲେଖି ସାରିଥିଲେ, କିନ୍ତୁ ସମୟକ୍ରମେ ଚୈତନ୍ୟପନ୍ଥୀ ବୈଷ୍ଣବ ଚେତନାରେ ତାଙ୍କର ନିଷ୍ଠା ବଳବତ୍ତର ହେବାରୁ ସେ ଗୃହତ୍ୟାଗୀ ହୋଇ ବୈରାଗୀ ହେଲେ । ବିଭିନ୍ନ ସ୍ଥାନରେ ମଠ ପ୍ରତିଷ୍ଠା କରି ବୈଷ୍ଣବ ଧର୍ମର ପ୍ରଚାର ଓ ପ୍ରସାରରେ ଆତ୍ମନିୟୋଗ କଲେ । ଗୁରୁ , କୃଷ୍ଣ ଓ ବୈଷ୍ଣବଙ୍କ ପ୍ରତି ଅଟଳ ଭକ୍ତି, ପ୍ରତ୍ୟେକ ବୈଷ୍ଣବର ପରମ କର୍ତ୍ତବ୍ୟ । ସଦାନନ୍ଦଙ୍କ ଗୁରୁ ଶ୍ରୀ କିଶୋର ଦାସ କାଉଁରେ ଅପେକ୍ଷାକୃତ ନୀଚକୁଳ ସମ୍ଭୂତ ହୋଇଥିଲେ ମଧ୍ୟ କବି ତାହାଙ୍କୁ 'ପ୍ରଭୁ' ସ୍ୱାମୀ' 'ଅନ୍ତର୍ଯାମୀ' ବୋଲି ସମ୍ବୋଧନ କରି ବିଶେଷ ସମ୍ମାନ ଦେଖାଇଛନ୍ତି । ବୈଷ୍ଣବ-ମାନଙ୍କର ବର୍ଣ୍ଣାଶ୍ରମ ଭେଦରେ କୌଣସି ବିଶ୍ୱାସ ନ ଥାଏ । ସେଥିପାଇଁ ସଦାନନ୍ଦ କହିଛନ୍ତି—

"ବର୍ଣ୍ଣାଶ୍ରମେ ଭେଦ ଚିହ୍ନି ମୋ ବିଶ୍ୱାସ ନାହିଁ
ଏମନ୍ତ ଯେ ଅଟେ ପ୍ରଭୁ ମୋର ।"

— (ନି.ନ. ୬ଷ୍ଠ ଛାନ୍ଦ)

ତାଙ୍କ ଅନୁଗତ ଶ୍ରୀ କିଶୋର ଦାସ, ନାମରେ ମୋହର ସ୍ୱାମୀ
ଶାଆନ୍ତ କୁଳେ ଜନ୍ମ ମୁଁ ଅତି ଅଧମ କୃପାକଲେ ଅନ୍ତର୍ଯାମୀ ।
—(ପ୍ରେମତରଙ୍ଗିଣୀ ୩୬ ଛାନ୍ଦ)

ନିଜଗୁରୁ କିଶୋର ଦାସଙ୍କ ପ୍ରତି କବି ବାରମ୍ବାର ତାଙ୍କର ଅଚଳା ଭକ୍ତି ପ୍ରକାଶ କରିଛନ୍ତି । କବିଙ୍କ ମତରେ ଶ୍ରୀ କିଶୋର ଦାସଙ୍କର ଯଥେଷ୍ଟ କୃଷ୍ଣ ନିଷ୍ଠା ଥିଲା । ସିଦ୍ଧିର କୁତନ୍ତ୍ର ଓ କିଶୋରୀର ଅଲୌକିକତା ଦେଖାଇ ପ୍ରତିଷ୍ଠା ଅର୍ଜନ କରିବା ଠାରୁ ସବୁବେଳେ ସେ ଦୂରେଇ ରହୁଥିଲେ । ସେ ଅତ୍ୟନ୍ତ ସରଳ ଓ ଶାନ୍ତମାନ ଭକ୍ତ ଥିଲେ । ସଦାନନ୍ଦ ନିଜର ଗୁରୁ ପରମ୍ପରା କଥା ଉଲ୍ଲେଖ କରି ନିଜ ଗୁରୁଙ୍କ ପ୍ରତି ଶ୍ରଦ୍ଧାଞ୍ଜଳି ଅର୍ପଣ କରିଛନ୍ତି ।

କୋଟି ମୁଖେ କହିଲେ ନ ସରିବ, ଗୁଣ ଅଗାଧ ଅପାର ।
ଶ୍ରୀକୃଷ୍ଣ ଚୈତନ୍ୟ ପାଦପଦ୍ମ, ପ୍ରୀତି ପ୍ରିୟ ଗଦାଧର ।
ସେ ପଣ୍ଡିତ ଗୋସ୍ୱାମୀର ଶିଷ୍ୟ, ଅନନ୍ତାଚାର୍ଯ୍ୟ ଯା ନାମ ବ୍ୟାସ ।
ଶ୍ରୀ ରଘୁ ଗୋପାଳ ଗୋସ୍ୱାମୀ, ସେ ଦାସ ଲକ୍ଷ୍ମୀପ୍ରିୟା ତାଙ୍କ ଶିଷ୍ୟ ।
ତାଙ୍କ କୃପାପାତ୍ର ଶ୍ରୀ ଗଙ୍ଗା ମାତାଜୀ, କ୍ଷେତ୍ରବରେ ପ୍ରତିଷ୍ଠିତ ।
ତାଙ୍କ ପାଦାଶ୍ରୟ ବନମାଳୀ ଦାସ, ଗୋସ୍ୱାମୀ ଲୋକେ ବଦିତ ।
ତାଙ୍କ ଅନୁଗତ ଶ୍ରୀ କିଶୋର ଦାସ, ନାମରେ ମୋହର ସ୍ୱାମୀ ।
ଶାଆନ୍ତ କୁଳେ ଜନ୍ମ ମୁଁ ଅତି ଅଧମ, କୃପା କଲେ ଅନ୍ତର୍ଯାମୀ ।
— ପ୍ରେମତରଙ୍ଗିଣୀ ୩୬ଶ ଛାନ୍ଦ

ଶ୍ରୀ କୃଷ୍ଣ ଚୈତନ୍ୟ
|
ପଣ୍ଡିତ ଗଦାଧର ଗୋସ୍ୱାମୀ
|
ଶ୍ରୀ ଅନନ୍ତାଚାର୍ଯ୍ୟ ଗୋସ୍ୱାମୀ
|
ଶ୍ରୀ ରଘୁ ଗୋପାଳ ଗୋସ୍ୱାମୀ
|
ଶ୍ରୀ ଲକ୍ଷ୍ମୀପ୍ରିୟା ଦାସ
|
ଶ୍ରୀ ଗଙ୍ଗା ମାତାଜୀ
|
ଶ୍ରୀ ବନମାଳୀ ଦାସ ଗୋସ୍ୱାମୀ
|
ଶ୍ରୀ କିଶୋର ଦାସ
|
ଶ୍ରୀ ସାଧୁଚରଣ ଦାସ (ସଦାନନ୍ଦ କବିସୂର୍ଯ୍ୟ ବ୍ରହ୍ମା)

ବୈଷ୍ଣବୀ ସ୍ୱର ଅନୁସାରେ ଯେ କୌଣସି ବୈଷ୍ଣବ ପକ୍ଷରେ ଅତ୍ୟନ୍ତ ନମ୍ରଭାବ ଅବଲମ୍ବନୀୟ । ସେଥିପାଇଁ ସଦାନନ୍ଦ ସବୁବେଳେ ନିଜକୁ ଓ ନିଜର କାରଣୀକୁ ଅତି ନମ୍ର ଭାବରେ ପ୍ରକାଶ କରିଛନ୍ତି । ଯୁଗଳ ରସାମୃତ ଲହରୀରେ ସେ ନିଜକୁ ଅଜାଗଳସ୍ତନ' ପରି ନିକୃଷ୍ଟ ଓ ତୁଚ୍ଛ ମନେ କରିଛନ୍ତି —

"ଏ ମୋର କୃତ୍ୟ ବୋଲି ନ ମଣ ଏ ସନାତନ ହେ
ଏ ସିନ୍ଧୁ ସ୍ୱଇଚ୍ଛାଏ ଉତପନ୍ନ ହେ, କର୍ତ୍ତା ଯେହ୍ନେ ଅଜାଗଳସ୍ତନ ହେ"

ସଂସ୍କୃତ ସାହିତ୍ୟରେ ତାଙ୍କର ଅଗାଧ ପାଣ୍ଡିତ୍ୟ ଥିଲେ ମଧ୍ୟ ସେ ସଂସ୍କୃତ ଜାଣନ୍ତି ନାହିଁ, ତେଣୁ ଓଡ଼ିଆରେ ଲେଖୁଛନ୍ତି ବୋଲି ବାରମ୍ବାର ଉଲ୍ଲେଖ କରିଛନ୍ତି; ସାମବେଦୀ ସାଅନ୍ତ ପରିବାରରେ ଜନ୍ମଗ୍ରହଣ କରିଥିଲେ ମଧ୍ୟ ଅତ୍ୟନ୍ତ ନମ୍ରତାର ସହିତ ନିଜକୁ ମୂର୍ଖ ଓ ପତିତ ବୋଲି ଘୋଷଣା କରିଛନ୍ତି —

ସମସ୍ତ ଗୋସାଇଁ ମିଳିଲେ, ଦୈନ୍ୟ ଭଣ୍ଡାର ଲୁଟିନେଲେ ।
ମୋହ ପାଖେ ତ କିଛୁ ନାହିଁ, କିଅବା କହିବି ମୁହିଁ ।
ଯେବେ ବୋଲିବ ମୁଁ ପଣ୍ଡିତ, ସେ କଥା ଅଟଇଟି ସତ ।
ଯେବେ ବୋଲିବ ମୁଁ ମୂରୁଖ, ସେ ଜଣାଯାଉଛି ପ୍ରତ୍ୟକ୍ଷ ।
ସଂସ୍କୃତ ଜ୍ଞାନ ମୋର ନାହିଁ, ପ୍ରାକୃତ ଗୀତ ବୋଲଇ ।

( ବ୍ର. ଲୀ: ସ: ୩୮ଶ ଛାନ୍ଦ )

କିନ୍ତୁ ଏ ସବୁ ସତ୍ତ୍ୱେ ସ୍ୱଭାବ ବଶତଃ ନିଜର ଗର୍ବସୂଚକ ଓ ସମ୍ମାନସୂଚକ ପଦବୀ ଗୁଡ଼ିକୁ ଅବଲୀଳା କ୍ରମେ ସେ ବାରମ୍ବାର ବ୍ୟବହାର କରିଛନ୍ତି । ବର୍ଣ୍ଣାଶ୍ରମେ ଭେଦ ତହିଁ ମୋ ବିଚାର ନାହିଁ କହୁଥିଲା ବେଳେ ସେ ଯେ 'ବ୍ରାହ୍ମଣ' ଏ କଥାଟି ଏକାଧିକ ବାର 'ଭଣେ କବିସୂର୍ଯ୍ୟ ବ୍ରହ୍ମା ଭୂସୁର' ଇତ୍ୟାଦି ଉଲ୍ଲେଖ ମାଧ୍ୟମରେ ପ୍ରଚାର କରିଛନ୍ତି । ପୁଣି ସଦାନନ୍ଦ ବୈଷ୍ଣବ ହେବା ପରେ କେବଳ 'ସାଧୁଚରଣ ଦାସ' ବୋଲି ନିଜକୁ ପରିଚିତ କରାଇବା କଥା, କିନ୍ତୁ ତାଙ୍କର ବହୁ ରଚନାରେ ସେ ନିଜକୁ 'ସଦାନନ୍ଦ କବିସୂର୍ଯ୍ୟ ବ୍ରହ୍ମା' ନାମରେ ହିଁ ପରିଚିତ କରାଇ ଅଛନ୍ତି । ଏଥିପାଇଁ ବୈଷ୍ଣବ ମହଲରେ ଆଲୋଡ଼ନ ସୃଷ୍ଟି ହୋଇଛି । ସେଥିପାଇଁ କବିଙ୍କୁ ବହୁ ଲାଞ୍ଛନା ସହ୍ୟ କରିବାକୁ ପଡ଼ିଛି ।

କବିସୂର୍ଯ୍ୟ ବ୍ରହ୍ମା ପଦ, ଏ ଆସି ମୋତେ ହେଲା ବିପଦ ହେ ।
ବିବେକ ଜନେ, ବୈଷ୍ଣବ କଲେ ବାଦ ହେ ।

( ଯୁ: ର: ଲ: ୬ଷ୍ଠ ଛାନ୍ଦ )

ଏ ସବୁ ସତ୍ତ୍ୱେ ସେ ଜାଣିଶୁଣି ଏ ପଦଟି ବ୍ୟବହାର କରିଛନ୍ତି । ତାର କାରଣ ହେଉଛି —

“ମୋ କବିସୂର୍ଯ୍ୟ ବ୍ରହ୍ମାପଦ, ଶୁଭି ଯାଉଛି ଲୋକେ ଶବ୍ଦ ।
ମୁଁ ଯେ, ବୋଲଇ କେହି ନବଦ, ନିନ୍ଦେ ପିଶୁନ ହେ ।

ଯୁ: ର: ଲ: ୪ର୍ଥ ଛାନ୍ଦ

× × × ×

ହବେ ଜାଣିବା ପାଇଁ ଏ ନାମ ଭଣି
ସାଧୁ ଚରଣ ଦାସ ମୁଁ ଥିବ ଜାଣି ।

( ପ୍ରେମତରଙ୍ଗିଣୀ, ୨୧ଶ ଛାନ୍ଦ )

ବୈଷ୍ଣବ ହେବା ପୂର୍ବରୁ ସଦାନନ୍ଦ କବି ଥିଲେ ଓ ସେ କବିତ୍ୱକୁ ସମ୍ମାନିତ କରି ରାଜା ବୀରକେଶରୀ ଦେବ ଏହି ‘କବିସୂର୍ଯ୍ୟ ବ୍ରହ୍ମା’ ଉପାଧି ଦେଇଥିଲେ । ଏହି ନାମରେ ତାଙ୍କର କବିତା ସର୍ବତ୍ର ପ୍ରଚାରିତ ହୋଇଥିଲା ଏବଂ ଏହି ନାମରେ ହିଁ ସେ ସମଗ୍ର ଓଡ଼ିଶାରେ ପରିଚିତ ଥିଲେ । ବୈଷ୍ଣବ ଦୀକ୍ଷା ଗ୍ରହଣ କରିବା ପରେ ଏ ନାମଟି ବଦଳାଇ ଦେଲେ, ତାଙ୍କର ଅଧିକାଂଶ କାବ୍ୟ ପ୍ରତି ଲୋକେ କାଳେ ବୀତସ୍ପୃହ ହୋଇ ପଡ଼ିବେ, ଏହି ଆଶଙ୍କାରେ କବି ‘କବିସୂର୍ଯ୍ୟ ବ୍ରହ୍ମା’ ପଦଟି ଛାଡ଼ି ପାରି ନାହାନ୍ତି, କବି ମାତ୍ରେ ସେ ବୈଷ୍ଣବ ହୁଅନ୍ତୁ ବା ଆଉ ଯାହା ହୁଅନ୍ତୁ ସ୍ୱଭାବତଃ ଯଶ କାତର । ତାଙ୍କ କବିତାର ଅନାଦର ଓ ଉପେକ୍ଷା ସହ୍ୟ କରିବା ଯେ କୌଣସି କବି ପକ୍ଷରେ ଅସମ୍ଭବ । ପାଠକ ମହଲରେ କବିସୂର୍ଯ୍ୟ ବ୍ରହ୍ମାଙ୍କ ଲେଖାର ଆଦର ଓ ସ୍ୱୀକୃତି ଏତେ ଥିଲା ଯେ, ସେ ମୋହନଲତା କାବ୍ୟରେ ନିଜ କୃତ ଗୁଡ଼ିକର ଗୋଟିଏ ସୂଚୀ ଦେଇ କହିଛନ୍ତି —

ମୋ କବିତ୍ୱ ଗ୍ରାହକ ହୋଇବେ ଯେଉଁମାନେ ।
ନାମ ଜାଣିଲେ ସମ୍ବାଦ ରଖିବେ ଯତନେ ॥
ଏହି ଯେତେ ସବୁ ଗ୍ରନ୍ଥ ଆଖ୍ୟା କହି ଏଥି ।
ଗ୍ରାହକ ମାନଙ୍କ ଠାରେ ଏତଦର୍ଥେ ଅର୍ଥୀ ॥

ଏ ସବୁ ଉଲ୍ଲେଖରେ କବିଙ୍କ ଭୁଲ ନ ବୁଝିବା ପାଇଁ ଗୋଟିଏ ସାଧାରଣ ନିବେଦନ ହିଁ ସୂଚିତ ହୋଇଛି ।

କବି ନିଜର ଦ୍ୱାବିଂଶ ଶୃଙ୍ଖଳାଚଳାଣି, କବିତ୍ୱ, କୃତିତ୍ୱ, ସ୍ୱଭାବ, ବ୍ୟବହାର ଓ ଅବସ୍ଥାଦି ବିଷୟରେ ସମ୍ପୂର୍ଣ୍ଣ ସଚେତନ ଥାଇ ଜୀବନର ଲକ୍ଷ୍ୟ ପଥରେ ଅଗ୍ରସର ହୋଇଛନ୍ତି । ସେଥିରେ ଯେତେ ବାଧାବିଘ୍ନ ପଡ଼ିଲେ ମଧ୍ୟ ସେ ଅନେକାଂଶରେ ନିଜର ସାଧନା ଓ ଧର୍ମ ଧାରଣାରେ ଅଟଳ ରହିଛନ୍ତି । ତାଙ୍କ ବିଷୟରେ ଭୁଲ ଧାରଣା ସୃଷ୍ଟି ହେବାର ଯେଉଁଠି ସମ୍ଭାବନା ଅଛି, ସେଇଠି ସେ ତାର କୈଫିୟତ ମଧ୍ୟ ଦେଇଛନ୍ତି । କବି ନିଜେ ନିଜକୁ ବିଭିନ୍ନ ସ୍ଥାନରେ 'କୋପୀ' 'ଗୁମାନୀ', 'ପେଟବିକଳା', 'ପୂର୍ବ ଜନ୍ମରେ ମୁଁ ପଠାଣ' ଇତ୍ୟାଦି ଭାବରେ ବର୍ଣ୍ଣନା କରିଛନ୍ତି —

ମୁଁ କବିପୂର୍ଣ୍ଣ ବ୍ରହ୍ମା ଏହି ଗୁମାନ,
କୃଷ୍ଣ ନ ଭଜି ବୃଥା ନେଉଛି ଦିନ

( ନି: କି: ୪ର୍ଥ ଛାନ୍ଦ )

ସଦାନନ୍ଦଙ୍କ କାବ୍ୟ କବିତା ଗୁଡ଼ିକ କୃଷ୍ଣଲୀଳାତ୍ମକ ହେଲେ ମଧ୍ୟ ସେଥିରେ କବିତ୍ୱ ପ୍ରଦର୍ଶନ କରିବାକୁ ଯାଇ ଅନେକ ସମୟରେ ଅନ୍ୟାନ୍ୟ ବହୁ କଥା ବର୍ଣ୍ଣନା କରିବାରେ ସମସ୍ତ ଅବାନ୍ତର ହୋଇଥିବାରୁ ସେ ନିଜେ ଦୁଃଖିତ ହୋଇ ନିଜର କବିତ୍ୱ ଗୁମାନ ପ୍ରତି କଟାକ୍ଷପାତ କରିଛନ୍ତି । ପୁଣି ବୈରାଗୀ ଜୀବନରେ ସମ୍ଭୋଗ ଶୃଙ୍ଗାରର ଯେଉଁ ଉଦ୍ଦାମ ବାସନା ପ୍ରବଣ ନଗ୍ନ କାମକଳାତ୍ମକ ସୂକ୍ଷ୍ମ ଚିତ୍ର ଗୁଡ଼ିକ ସେ ଆଙ୍କିଛନ୍ତି । ସେଥିରେ ମଧ୍ୟ ପ୍ରଚ୍ଛନ୍ନ ଭାବରେ ତାଙ୍କର କବିତ୍ୱ ଗୁମାନହିଁ ପ୍ରକଟିତ ହୋଇଛି । ସେ ''କୃଷ୍ଣାନୁରାଗୀ ବଇରାଗୀ ସଦାନନ୍ଦ ବୋଲି ସଚେତନ ଥିଲେ ମଧ୍ୟ ତାଙ୍କର 'କବିରକ୍ତ' ଏ ସବୁ ବର୍ଣ୍ଣନାରୁ ବିରତ ହେଉ ନାହିଁ । ବର୍ଣ୍ଣନାର ଲୋଭ ସମ୍ବରଣ କରି ନ ପାରି ସେ କହିଛନ୍ତି — 'ଏହି ସକାଶୁ ମୁଁ ଡ଼ରିହେ' ତଥାପି ବର୍ଣ୍ଣନା ପରିପାଟୀ ଯେଣ, କହିବା କାହିଁର କରିହେ' ଅନ୍ୟତ୍ର ଏହି ପ୍ରସଙ୍ଗରେ ସେ ପୁଣି ନିଜର କବିସ୍ୱଭାବର କବିମତ ପ୍ରତି ଇଙ୍ଗିତ କରି ଲେଖିଛନ୍ତି —

'ସ୍ୱଭାବ କେନ୍ଦବୀହେଁ ଛାଡ଼ିତ ନଦାଇ
ବୈରାଗୀ ହୋଇ ମୁଁ ଏହା ବର୍ଣ୍ଣଇ ଯେ'

( ମୋ, କ: ୬୪ଶ ଛାନ୍ଦ )

କବି ଥିଲେ ସମ୍ପୂର୍ଣ୍ଣ ସ୍ୱାଧୀନଚେତା, ତାଙ୍କର ବିଶ୍ୱାସ ଥିଲା ଅଟଳ । ନିଜ କର୍ମରେ ଦୃଢ଼ ରହି ସେ ନିନ୍ଦା ଅପମାନ ଓ ଲୋକ ବ୍ୟବହାର ପ୍ରତି ଭ୍ରୂକ୍ଷେପ କରି ନାହାନ୍ତି । ସଦାନନ୍ଦଙ୍କ ସମୟରେ ପ୍ରେମ ଭକ୍ତି ବିଶେଷ ଅଦ୍ଭୁତ

ହୋଇ ନଥିଲା । ଚୈତନ୍ୟ ପନ୍ଥୀ ମାନଙ୍କର ପରକୀୟା ପ୍ରେମ ବର୍ଣ୍ଣନା ପ୍ରତି ବିଶେଷ କରି ମୁକ୍ତି ଓ ଅଭିଜାତ ଗୋଷ୍ଠୀ ବଡ଼ ଅସହନଶୀଳ ଥିଲେ କିନ୍ତୁ ଜଗନ୍ନାଥ ସେଥିପ୍ରତି କୌଣସି ଖାତିର ନଥିଲା । ସେ ନିଜ ମତରେ ଦୃଢ଼ ରହି ପ୍ରେମ ଜଳରେ ନିମଜ୍ଜିତ ରହୁଥିଲେ ।

ଲୋକେ ବେଖର ଭୟ ଛାଡ଼ି
ଆନନ୍ଦେ ପ୍ରେମ ଜଳେ ବୁଡ଼ି (ଧା, ର, ୬ଷ୍ଠ ଅଧ୍ୟାୟ)

ସେ ଦୃଢ଼ କଣ୍ଠରେ ଘୋଷଣା କରିଛନ୍ତି —

"ବୈଷ୍ଣବ ମତ ଆମ୍ଭର ଏ ଅଭିମାନେ ଯାଉ ଥାଉ ଧନ
ମତାନ୍ତର ଲୋକ ସଙ୍ଗ ବିବାଦରୁ ଅଛି କେଉଁ ପ୍ରୟୋଜନ" ।

ଅନ୍ୟ ଧର୍ମାବଲମ୍ବୀମାନଙ୍କ ପ୍ରତି ତାଙ୍କର ଅସହନଶୀଳତା ଥିଲା । ସ୍ୱୀୟ ଧର୍ମାଗ୍ରତର ଶ୍ରେଷ୍ଠତା ବିଷୟରେ କହୁବାର ତାଙ୍କର ଦମ୍ଭୋକ୍ତି ପ୍ରକାଶିତ ହୋଇଅଛି । କୃଷ୍ଣଙ୍କ ଗୁଣକୀର୍ତ୍ତନ ବ୍ୟତୀତ ଅନ୍ୟ ସମସ୍ତ ଧର୍ମାଗ୍ରର ବ୍ୟର୍ଥତାରେ ପର୍ଯ୍ୟବସିତ ହୁଏ । ଏଣୁ ଅନ୍ୟ ଦେବତା ଉପାସନା ନକରି କୃଷ୍ଣୋପାସନାହିଁ ମାନବର ଶ୍ରେଷ୍ଠ କର୍ମ ବୋଲି ସେ ଦୃଢ଼ ବିଶ୍ୱାସର ସହିତ ବାରମ୍ବାର ଘୋଷଣା କରିଛନ୍ତି —

ଶ୍ରୀକୃଷ୍ଣର ଗୁଣ ଯେ କୀର୍ତ୍ତନ ନ କରେ
ଆଉ ଯେତେ କରୁ ବ୍ୟର୍ଥ ହୁଏ ସେ ଭ୍ରମରେ (ତ. ତ. ୪ର୍ଥ ତରଙ୍ଗ)

× × ×

ଅନ୍ୟ ଦେବତା ଗୁଣ ଗାଇ ।
ଯେ କୃଷ୍ଣ ବୈଷ୍ଣବ ନିନ୍ଦଇ ॥
ତା ଶିରେ ଚଣ୍ଡାଳ ଚରଣ ।
ତାଙ୍କୁ ନକର ସମ୍ଭାଷଣ ॥
ଯେ କୃଷ୍ଣ ଚରଣେ ଆଶ୍ରିତ ।
ସେ ପାଦେ କୋଟୀ ଦଣ୍ଡବତ ॥

ଏହି ଅସହନଶୀଳତା ଯୋଗୁଁ ଅନେକେ ତାଙ୍କୁ 'କୋପୀ' 'ଗର୍ବୀ' 'ଘୃମାନୀ' ବୋଲି କହୁଥିଲେ । ସେକଥା ଗୁଡ଼ିକୁ ବିନମ୍ରତାର ସହିତ ନିଜେ ଉଲ୍ଲେଖ କରି ସ୍ୱୀୟ ମତରେ ନିଜର ଦୃଢ଼ତା ଓ ଅଟଳ ବିଶ୍ୱାସ ସେ ବ୍ୟକ୍ତ କରିଛନ୍ତି । —

କୁ ଗୀର୍ବାଣ କୁଳ କଣ୍ଠ ଆଦିତ୍ୟ
କୋପୀ ଜନପୂର୍ଣ୍ଣ ବ୍ରହ୍ମା କଥିତ

ଏଥିପାଇଁ ତାହାଙ୍କୁ ବହୁ ନର୍ଯ୍ୟାତନା ଭୋଗ କରିବାକୁ ପଡ଼ୁଥିଲେ ମଧ୍ୟ ନିଜର ଧର୍ମ ମତ ଓ ବିଶ୍ୱାସକୁ ବଳି ନଦେଇ ବରଂ ଭିକ୍ଷାବୃତ୍ତି ଅବଲମ୍ବନ କରିବା ଶ୍ରେୟସ୍କର ବୋଲି ସେ ମନେ କରିଛନ୍ତି —

କନ୍ଥେ ଅବା କୋଳଧରି ଭିକ୍ଷାଟନ କରି
ମୁଖେ ଗାଉଥିବୁ ରାଧା ପ୍ରାଣେଶ୍ୱର
ସ୍ୱତନ୍ତ୍ରତା ଥିବ ତହିଁ ପରବଶ ନୋହି
କେ ଦେଉ ନ ଦେଉ କା ବସ୍ତୁର ( ନ. ନ. ୬/୨

ଏହି ସ୍ୱାଧୀନ ସ୍ୱାତନ୍ତ୍ର୍ୟ ଯୋଗୁଁ ଅନେକ ସମୟରେ ସେ ସ୍ୱଳ୍ପାହାର ଓ ନିରାହାର ଜୀବନ ଯାପନ କରିଛନ୍ତି । ସେ ଯୁଗଳ ରହସ୍ୟାମୃତ ଲିଖିବାରେ କହିଛନ୍ତି — କବିସୂର୍ଯ୍ୟ ମୁଁ ପେଟ ବିକଳ ହେ' । କବିସୂର୍ଯ୍ୟ ବ୍ରହ୍ମାଙ୍କ ପରି ଜଣେ ପ୍ରତିଷ୍ଠିତ କବିଙ୍କ ଯେ ଅନ୍ନାକୁ କନା ଓ ପେଟକୁ ଦାନା ମିଳିବା ଅତ୍ୟନ୍ତ କଷ୍ଟକର ବ୍ୟାପାର ଥିଲା, ତାହାକୁହିଁ, ନିଜ ମତ ସ୍ୱାତନ୍ତ୍ର୍ୟହିଁ ତାହାର କାରଣ । ଏଥିରୁ ସ୍ୱୀୟ ଧର୍ମାଦର୍ଶରେ ତାଙ୍କର ଅନନ୍ୟ ଦୃଢ଼ତାହିଁ ପ୍ରମାଣିତ ହେଉଛି । ଏ ସମସ୍ତ ପାରିପାର୍ଶ୍ୱିକ ପ୍ରତିକୂଳ ପରିସ୍ଥିତି ମଧ୍ୟରେ ଥିଲେ ମଧ୍ୟ ସେ ପ୍ରଶାନ୍ତ ତଥା ଗମ୍ଭୀର ଭାବରେ ନିତ୍ୟ ଗତାଗତ କରୁଥିବା ଜଗଦେକ ଚକ୍ଷୁ ସୂର୍ଯ୍ୟରୂପୀ ରବିଙ୍କୁ ସାକ୍ଷୀ ରଖି ସ୍ୱୀୟ କର୍ମର ମହନୀୟତା ବିଷୟରେ ଭକ୍ତମାନଙ୍କୁ ଶୁଣାଇଛନ୍ତି —

ସେ ଦୂରେ ରହିଲୁ, ଶୁଣ ରସିକ ଭକତ
ଜାଣେ ରବି ବର୍ତ୍ତମାନ ଯେ ଗତ ଆଗତ ।
(ପ୍ରେ . କ . ୧ମଗୁଚ୍ଛ)

ସଦାନନ୍ଦ ତାଙ୍କର ସମସ୍ତ ଗ୍ରନ୍ଥରେ (ଦାଶନିକ କାବ୍ୟ ଦୁଇଟିକୁ ଛାଡ଼ି) ଏ ରସିକ ଭକ୍ତ ମାନଙ୍କୁ ସମ୍ବୋଧନ କରି ଧର୍ମକୁ ସାକ୍ଷୀ ରଖି ଯେଉଁ ମର୍ମ ବାଣୀ ଶୁଣାଇଛନ୍ତି ତାହା ହେଉଛି ସ୍ୱୀୟ ଧର୍ମମତର ସ୍ୱରୂପ ଓ ଶ୍ରେଷ୍ଠତା, ଜୀବନ ଦର୍ଶନ ଓ ଧର୍ମସ୍ଥିର ନିଷ୍ଠା । ଏଥିପାଇଁ ସେ ବ୍ରଜବାସୀ ଭକ୍ତ କବି ରୂପ ଗୋସ୍ୱାମୀ ଚରଣ ତଳେ ଶରଣ ପଶିଛନ୍ତି । ରୂପ ଗୋସ୍ୱାମୀ ଓ ଜୀବଗୋସ୍ୱାମୀଙ୍କ

ଅପାଙ୍ଗ୍ୟ ସଂସ୍କୃତ ରଚନାକୁ ସାରକଥା ଓଡ଼ିଆ ଭାଷାରେ କବିତ୍ୱପୂର୍ଣ୍ଣ ଛନ୍ଦୋବଦ୍ଧ ପଦ୍ୟରେ ପ୍ରକାଶ କରିବା ତାଙ୍କ ଜୀବନର ଏକମାତ୍ର ଲକ୍ଷ୍ୟ । ସେ ନିଜେ ଲେଖିଛନ୍ତି —

ଶ୍ରୀରୂପ ଗୋସ୍ୱାମୀ ପାଦପଦ୍ମ ରେଣୁଗଣ ।
ଶିରେ ଧରି ଗାଇ ଯିବେ କୃଷ୍ଣ ଲୀଳାଗୁଣ ॥
ଅନନ୍ତ ବଦନ୍ତ ମୁଖେ ଗାଏ ନିରବଧି ।
ତଥାପି ସେ ଲୀଳା ଗୁଣ ନ ପାଏ ଅବଧି ॥
ମୁଁ ଛାର କି କହି ମୋହର ବୁଦ୍ଧି ଅଳ୍ପ ।
ହୋଇ ନୋହୁ ବୋଧକରି ଆପଣା ମାନସ

(ବ୍ରଜଲୀଳାମୃତ ସମୁଦ୍ର ୪୯ଶ ସ୍ଥାନ)

ଏହି କୃଷ୍ଣଲୀଳା ଗାନ କରିବାରେ ସେ କୃଷ୍ଣଙ୍କ ଐଶ୍ୱର୍ଯ୍ୟ ଲୀଳା ଛାଡ଼ି ମଧୁର ରସର ଆଶ୍ରୟନେଇ କେବଳ ମାଧୁର୍ଯ୍ୟ ଲୀଳାହିଁ କୀର୍ତ୍ତନ କରିଛନ୍ତି—

ଗଉରଚନ୍ଦ୍ର ଶ୍ରୀ ଚରଣ
ଅମ୍ବୁଜ ଚିତ୍ତରେ ଶରଣ
ମଧୁର ରସର ଆଶ୍ରୟ
ଐଶ୍ୱର୍ଯ୍ୟ ଦେଖି ପାଇ ଭୟ

(ପା. ର. ୩୪ଶ ଅଧ୍ୟାୟ)

କୃଷ୍ଣଙ୍କର ମାଧୁର୍ଯ୍ୟଲୀଳା ବର୍ଣ୍ଣନା କରିବା କବିଙ୍କର ଜୀବନର ଏକମାତ୍ର ଲକ୍ଷ୍ୟ ହୋଇଥିବାରୁ ସେ ରସେଶ୍ୱରୀ ରାଧା ଓ ରସିକରାଜ କୃଷ୍ଣଙ୍କର ବିଗ୍ରହ ସ୍ଥାପନ କରି ତାଙ୍କର ଉପାସନାରେ କାଳଯାପନ କରିଛନ୍ତି —

ବୃନ୍ଦେଶ୍ୱରୀ ହେ କରି  ଶରଣ ମୋହର ।
କର ସ୍ୱଭାବରୁ କନ୍ଧ  ସମସ୍ତ ପ୍ରକାର ॥
କର ମୁଁ ଶ୍ରୀବୃନ୍ଦା ଙ୍କ  ହୋଇଅଛୁ ଦାସ ।
ରାଧାକୃଷ୍ଣ ମିଳନ ମୋ  ଉତ୍କୃଷ୍ଟ ଲାଳସ ॥

(ମୋ . ଭ, ୬୮ / ୬୫)

ହିନ୍ଦୁଧର୍ମ ଓ ସଂପ୍ରଦାୟରେ ଭକ୍ତମାନଙ୍କ ଚରମ ଲକ୍ଷ୍ୟ ହେଉଛି ମୋକ୍ଷ ପ୍ରାପ୍ତି, କିନ୍ତୁ ଚୈତନ୍ୟପନ୍ଥୀ ବୈଷ୍ଣବାଙ୍କର ଅନୁସାରେ ସଦାନନ୍ଦଙ୍କର ଭୁକ୍ତି ଇଚ୍ଛା କିମ୍ବା ମୁକ୍ତି ଇଚ୍ଛା ନାହିଁ । ଅଛି କେବଳ ଲୀଳା ଆସ୍ୱାଦନର ଇଚ୍ଛା । ସେ ଚିନି ହେବାକୁ ଚାହାନ୍ତି ନାହିଁ ; ଚିନିର ସ୍ୱାଦ ସବୁବେଳେ ଆସ୍ୱାଦନ କରିବାକୁ ଚାହାନ୍ତି । ଏଣୁ ସେ ଶେଷରେ ରସିକ ଭକ୍ତମାନଙ୍କୁ ଶୁଣାଇ କହିଛନ୍ତି—

ଜନ୍ମ ମରଣ ଅଛି ଯେତେ କାଳ
ସୁଖ ଦୁଃଖ ଦୁଇ ଏହାର ମୂଳ
କୃଷ୍ଣ ପ୍ରାପ୍ତି ହେଲେ ଏ ସିନା ଯିବ
ପରମାନନ୍ଦେ ପୂର୍ଣ୍ଣ ହୋଇଥିବ
ସେହି ଚିର ଅଟେ
ସୁଖହାର ଯହିଁ ଚରଣେ ଘଟେ (ଜ ନ ୭/୩)

—o—

# ଦ୍ୱିତୀୟ ପରିଚ୍ଛେଦ

## କାବ୍ୟକୃତି

ସଦାନନ୍ଦ କବିସୂର୍ଯ୍ୟ ବ୍ରହ୍ମା ତରୁଣ ବୟସରୁହିଁ ଜଣେ ପ୍ରତିଭାବାନ କବି ଭାବରେ ବେଶ୍ ଖ୍ୟାତି ଲାଭ କରିଥିଲେ । ସେ 'ପୂର୍ବାଶ୍ରମ'ରେ ଥିଲାବେଳେ 'ଲଳିତଲୋଚନା' ଓ 'ମୋହନ କଳ୍ପଲତା' ନାମକ ଦୁଇଖଣ୍ଡ ରୀତିକୋଟୀର କାଳ୍ପନିକ କାବ୍ୟ ସହିତ ଅନେକ କବିତ୍ୱପୂର୍ଣ୍ଣ କ୍ଷୁଦ୍ର କବିତା ରଚନା କରିଥିଲେ । ସେହି କେତୋଟି କବିତାର ମାଧୁର୍ଯ୍ୟରେ ତଦାନୀନ୍ତନ ସାହିତ୍ୟ ରସିକ ଓ ସାଧାରଣ ପାଠକ ଏପରି ମୁଗ୍ଧ ହୋଇଥିଲେ ଯେ, ତାହାର ସ୍ୱୀକୃତି ସ୍ୱରୂପ, କେଓଁଝରର ମହାମହିମ ରାଜା ବର କେଶରୀ ଦେବଙ୍କ ଠାରୁ ସର୍ବଶ୍ରେଷ୍ଠ ସମ୍ମାନାସ୍ପଦ 'କବିସୂର୍ଯ୍ୟ' ଉପାଧି ତାହାଙ୍କ ପକ୍ଷରେ ଅନାୟାସ ଲବ୍ଧ ହୋଇଥିଲା । ପରେ ପରେ କୌଣସି ଦୈବ ଦୁର୍ଘଟଣା ଜନିତ କାରଣରୁ ସେ ସଂସାରତ୍ୟାଗ କରି ବ୍ରହ୍ମଚର୍ଯ୍ୟାଶ୍ରମରେ ରହି ଶ୍ରୀକୃଷ୍ଣଙ୍କ ବ୍ରଜଲୀଳା ଗାନ, ଶ୍ରବଣ, କୀର୍ତ୍ତନ ଓ ମନନରେ ଜୀବନ ଅତିବାହିତ କରିଥିଲେ । ଏହି ସମୟରେ ସେ ଯାହାକିଛି ଲେଖିଛନ୍ତି ସେ ସବୁ ଶ୍ରୀକୃଷ୍ଣ ଚୈତନ୍ୟଙ୍କ ଦ୍ୱାରା ପରିକଳ୍ପିତ ଓ ବୃନ୍ଦାବନର ଗୋସ୍ୱାମୀମାନଙ୍କ ଦ୍ୱାରା ପ୍ରଚାରିତ ବ୍ରଜଲୀଳାତ୍ମକ ଅଚିନ୍ତ୍ୟ ଭେଦାଭେଦ ବାଦର ବିବୃତ ବିଶ୍ଳେଷଣରେ ମୁଖରିତ । କବି ତାହାଙ୍କ ଜୀବଦ୍ଦଶାରେ ବିଂଶାଧିକ କାବ୍ୟକବିତା ଲେଖି ଯାଇଛନ୍ତି । ସେ ସମସ୍ତ ଉନ୍ନତ ସାହିତ୍ୟିକ କୃତିଭାବରେ ଗୃହୀତ ନ ହେଲେ ମଧ୍ୟ ସେଥିରୁ କେତୋଟି ଯେ, କବିକର୍ମର ଉଜ୍ଜ୍ୱଳ ସ୍ୱାକ୍ଷର ବହନ କରି ଚିର ଦେଦୀପ୍ୟମାନ ରହିଛି, ଏଥିରେ ଦ୍ୱିମତର କୌଣସି ଅବକାଶ ନାହିଁ । କବିଙ୍କ ସମଗ୍ର ରଚନାବଳୀକୁ ନିମ୍ନଲିଖିତ କେତୋଟି ସ୍ଥୂଳ ବିଭାଗରେ ବିଭକ୍ତ କରାଯାଇ ପାରେ ।

୧ । କାଳ୍ପନିକ ଆଦିରସାଶ୍ରିତ କାବ୍ୟ

୨ । କୃଷ୍ଣ ବିଷୟକ ପ୍ରେମାଖ୍ୟାନ କାବ୍ୟ

୩। ସାଂପ୍ରଦାୟିକ ସାହିତ୍ୟ
୪। ଅନୁବାଦ ସାହିତ୍ୟ
୫। ଶାସ୍ତ୍ରୀୟ ରଚନା
୬। କ୍ଷୁଦ୍ର ଗୀତିକାବଳୀ
୭। ଜୀବନୀ ସାହିତ୍ୟ

ମୋହନଲତା କାବ୍ୟର ଶେଷରେ କବି ସ୍ୱକୃତ ଗ୍ରନ୍ଥ ସବୁର ଉଲ୍ଲେଖ କରିଛନ୍ତି ।

ଆହେ ଶ୍ରୋତାମାନେ ଏବେ ଶୁଣ ଦେଇ କର୍ଣ୍ଣ
ଗ୍ରନ୍ଥମାନ ନୁହଇ କହି ଗୋଚର ବିଧାନ ॥ ୧ ॥

ଉତ୍କଳ ବଙ୍ଗଳା ଖୁରୁଠାଦି ଭାଷାମାନ
ଏ ପ୍ରକାରେ କିଛି କିଛି କରିଛି ବର୍ଣ୍ଣନ । ୨ ।

ଚଉପଦୀ ଚଉତିଶା ବୋଲି ଅଛି ଯେତେ
କଉଁ ଦେଶେ କଉଁଠାରେ ପ୍ରକାଶ ଜଗତେ । ୩ ।

ଲଳିତ ଲୋଚନା ଗ୍ରନ୍ଥ ବାଉନ ଛାନ୍ଦରେ
ସଂପୂର୍ଣ୍ଣ ହୋଇଛି ଜାଣ କଳ୍ପନା ବେଭାରେ । ୪ ।

ଶ୍ରୀ ଯୁଗଳ ରସାମୃତ ଲହରୀ ପ୍ରବନ୍ଧ
ଶ୍ରୀ ରାଧାକୃଷ୍ଣ ପୂର୍ବରାଗ ଅଠାବନ ଛାନ୍ଦ । ୫ ।

ତାହା ସଙ୍ଗମାନ ରସେ ଭଉଁଣି କଠିନ
ଅଷ୍ଟତ୍ରିଂଶ ଛାନ୍ଦରେ ହୋଇଛି ସଂପୂର୍ଣ୍ଣ । ୬ ।

ଶ୍ରୀ ପ୍ରେମ ତରଙ୍ଗିଣୀ ଯେ ଚମତ୍କାର ରସ ।
ଛତିଶ ଛାନ୍ଦରେ ସେହୁ ହୋଇଅଛି ଶେଷ । ୭ ।

ଶ୍ରୀଲ ପ୍ରେମକଳ୍ପଲତା ମଥୁରା ଗମନେ
ବର୍ଣ୍ଣିତ ହୋଇଛି ଷଟଦଶ ଛାନ୍ଦେ ତେହ୍ନେ । ୮ ।

ଶ୍ରୀଚଟାଉ ଚନ୍ଦ୍ରୋଦୟ ଷଟଦଶ ଛାନ୍ଦ
ଜନକ ଚରିତ ସବ ଚଟାଉ ନିବନ୍ଧ । ୯ ।

ଶ୍ରୀ ଶ୍ରୀ ନାମ ଚିନ୍ତାମଣି ଅଟେ ଛାନ୍ଦ ବାର
ଶ୍ରୀ ଶ୍ରୀ ନଷ୍ଟାନୀଳମଣି ତେମନ୍ତ ପ୍ରକାର । ୧୦ ।

ଉଦାହରଣ ଏଥିରେ ବହୁତ ଶାସ୍ତ୍ରରୁ
ତତ୍ତ୍ୱ ସିଦ୍ଧାନ୍ତ ବସ୍ତୁର ନିଷ୍ଠା କରିବାରୁ । ୧୧ ।

ଶ୍ରୀ ଶ୍ରୀ ତତ୍ତ୍ୱତରଙ୍ଗିଣୀ ସିଦ୍ଧାନ୍ତର ସାର
ଉଦାହରଣ ସର୍ବ ପୁରାଣମାନଙ୍କର । ୧୨ ।

ଏଣୁ ସର୍ବ ହୋଇ ହେଲା ସେ ଦ୍ୱାବିଂଶ ଛନ୍ଦ
ଶ୍ରୀ ଶ୍ରୀ ପାଠ ରତ୍ନାବଳୀ ଯେ ଦ୍ୱାଦଶେ ସିଦ୍ଧ । ୧୩ ।

ଅଷ୍ଟ ନାୟିକା ଲକ୍ଷଣ ଅଷ୍ଟ ଛନ୍ଦ ହୋଇ
ଶ୍ରୀ କୁଞ୍ଜ ବିହାର ନାମ ତାହାର ଅଟଇ । ୧୪ ।

ଗୋବିନ୍ଦ ଗୁଣ କୀର୍ତ୍ତନ ମାଳା ନାମେ ଗୀତ
ସତାଇଶ ଛନ୍ଦରେ ହୋଇଛି ସମାପତ । ୧୫ ।

ଶ୍ରୀ ଶ୍ରୀ ବିଦଗ୍ଧ ମାଧବ ନାଟକ ସଂସ୍କୃତ
ଶ୍ରୀ ଶ୍ରୀ ରୂପଗୋସ୍ୱାମୀଙ୍କ କୃତ ସେ ବିଦିତ । ୧୬ ।

ପଦ୍ୟାରେ ତାହା ମୁଁ ଛନ୍ଦ ବନ୍ଧରେ କହିଲି
ଶ୍ରୀ ବ୍ରଜଲୀଳା ମୃତ ସମୁଦ୍ର ନାମ ଦେଲି । ୧୭ ।

ଛପନ ଛନ୍ଦେ କହିଲି ମୁଁ ସେ କବି ନୋହି
ମାଣିକ ଉତ୍କଳ ଲୋକେ ବୁଝିବାର ପାଇଁ । ୧୮ ।

ଶ୍ରୀ ଉଜ୍ଜ୍ୱଳନୀଳମଣି ଶ୍ରୀ ଗୋସାଇଁ ଗ୍ରନ୍ଥ
ବଙ୍ଗଳା ଭାଷା ପଦ୍ୟାରେ କରିଛି ତା ଗୀତ । ୧୯ ।

ପ୍ରେମ ଚନ୍ଦ୍ରାମଣି ନାମେ ବଂଗ ଦେଶୀଭାଷେ
ଶବ୍ଦ କାରଣ କଣିକା ଆଦି ଅର୍ଥ ଯେ ସେ । ୨୦ ।

ମୃତ ସୂର୍ଯ୍ୟୋଦୟ ନାମ ପଞ୍ଚ ଅଧ୍ୟାସାର
ଅଷ୍ଟପଦୀ ଦ୍ୱାଦଶୀ ପର ବିଧି ନିର୍ଦ୍ଧାର । ୨୧ ।

ଶ୍ରୀ ପ୍ରବୋଧାନନ୍ଦ ସରସ୍ୱତୀ ନାମେ ନ୍ୟାସୀ
ହରି ଭକ୍ତି କଳ୍ପଲତା ଗ୍ରନ୍ଥ ସେ ପ୍ରକାଶି । ୨୨ ।

ଶ୍ରୀ ଭାଗବତ ଭାଗରେ ଉତ୍କଳ ଭାଷାରେ
ତାହା ବର୍ଣ୍ଣନ ହୋଇଛି ଦଶ ଅଧ୍ୟାୟରେ । ୨୩ ।

ଶ୍ରୀ ଶ୍ରୀ କୃଷ୍ଣଦାସ କବିରାଜ ଗୋସ୍ୱାମୀର
ଶ୍ରୀକୃଷ୍ଣ ଚୈତନ୍ୟ ଚରିତାମୃତ ସାର । ୨୪ ।

ନବାକ୍ଷର ସଙ୍ଗେ ତାହା ହଳଲ ଗୁମ୍ଫାରେ
ଆଦ୍ୟ ମଧ୍ୟ ଅନ୍ତ ତିନି ମିଳା ସେ ପ୍ରକାରେ । ୨୫ ।

ଭାଷା ପାଳଟ ଏ ଗ୍ରନ୍ଥେ ମୁଁ ଯେ କବି ନୋହି
ଶ୍ରୀ ଗୋସାଇଁ କୃପାରୁ ତହିଁରେ ଅବଗାହି । ୨୬ ।

ଏଥିରେ କେତେ କେତେ ସଂସ୍କୃତ ସମ୍ମିଳିତ
ଛନ୍ଦ ଶ୍ଳେଷ ବିରୋଧୀ ଭାବ ଆଶ୍ରୟ ସ୍ଥିତ । ୨୭ ।

ଶ୍ରୀ ବ୍ରହ୍ମାଣ୍ଡ ମଙ୍ଗଳ କେବଳ ପରାକୃତେ
ଶ୍ରୀ କୃଷ୍ଣ ଚଇତନ୍ୟ ବାଣୀଲୀଳା ବିଧି ମତେ । ୨୮ ।

ରାମାୟଣ ସଙ୍ଗେ ସେ ରୂପେ ଏକ ଖଣ୍ଡ
ଇତ୍ୟାଦି ଗ୍ରନ୍ଥର ନାମ କଲୁ ଏଥି ରୁଣ୍ଡ । ୨୯ ।

ଶ୍ରୀ ବିଶ୍ୱମ୍ଭର ବିହାର 'ବ' କାର ନିତ୍ୟମ
ପ୍ରୀତ ଚିନ୍ତାମଣି ବନ୍ଧୁ ମିଳନ ଜାଣିମ । ୩୦ ।

ଏ ଦୁଇ ଗ୍ରନ୍ଥ ସମ୍ପୂର୍ଣ୍ଣ ହୋଇତ ନାହାନ୍ତି
ବିଘ୍ନନାଶ ବିଘ୍ନରାଜ ହୋନ୍ତୁ ଏ ସମାପ୍ତି । ୩୧ ।

ବହୁତ ଗ୍ରନ୍ଥରୁ ଅଂଶି ତୋଳା କରି ଧୀରେ
ସଙ୍ଗୀତ ସଦାନନ୍ଦ କହିଲି ଯେ ଛନ୍ଦରେ । ୩୨ ।

ଗୀତ ବାଦ୍ୟ ତାଳ ନୃତ୍ୟ ଇତ୍ୟାଦି ଲକ୍ଷଣ
ଦଶ ଛନ୍ଦରେ ବର୍ଣ୍ଣିଲି ପୁରାଣ ପ୍ରମାଣ । ୩୩ ।

ମୋହନ ଲତା ନାମରେ ଏ ଗୀତି ପ୍ରକାଶ
ସମ୍ପୂର୍ଣ୍ଣ କଲି ହୋଇଲି ଛନ୍ଦ ଛୟାଳିଶ । ୩୪ ।

କବି ବିନା ଏ ଶ୍ରମ କେ କରିବ ଗୋଚର
ରସିକ ବିନା କେ ବୁଝେ ଏ ରସ ସାଗର । ୩୫ ।

ପଞ୍ଚ ପ୍ରାପ୍ତେ ସମ୍ଭୋଗ ମାଧିକ ମୂଳ ସାର
ସ୍ନେହ ନ ଜାଣନ୍ତି ଏଥି କି କାର୍ଯ୍ୟ ତାହାର । ୩୬ ।

ରସ ଚର୍ବ୍ୟମାଣ, ନୋହେ ଅମୃତ ଯା ତୁଲ
ସକଳ ସାହିତ୍ୟେ ଏହି କଥା ଅଟେ ମୂଳ । ୩୭ ।

ମୋ କବିତ୍ୱ ଗ୍ରାହକ ହୋଇବେ ଯେତେମାନେ
ନାମ ଜାଣିଲେ ହର୍ଷାଦ ରଖିବେ ଯତନେ । ୩୮ ।

ଏହି ଯେନ ସବୁ ଗ୍ରନ୍ଥ ଆଖ୍ୟା କହି ଏଥି
ଗ୍ରାହକ ମାନଙ୍କ ଠାରେ ଏତଦର୍ଥେ ଅର୍ଥୀ । ୩୯ ।

ମୋହନ ଲତା ବା ମୋହନ କଳ୍ପଲତା କାବ୍ୟ ରଚିତ ହୋଇ ସାରିବା ପରେ କବି ଆଉ କେତୋଟି କାବ୍ୟ ରଚନା କରିଛନ୍ତି । ସେଗୁଡ଼ିକ ମୋହନ-ଲତାରେ ପ୍ରଦତ୍ତ କାବ୍ୟ ସୂଚୀରେ ସ୍ଥାନ ପାଇ ପାରି ନାହିଁ । କୀର୍ତ୍ତନ ଉଜ୍ଜ୍ୱଳ, ବାଳ ବୋଧିନୀ, ସ୍ମର ଦୀପିକା ବା ସ୍ମରଣାସ୍ତ୍ର, ଚୌର ଚିନ୍ତାମଣି, ଶ୍ରୀମଦ୍ ଭଗବଦ୍ ଗୀତାନୁବାଦ ବ୍ୟତୀତ ଚଉତିଶା, ଚଉପଦୀ, ଓ ଜଣାଣ ଇତ୍ୟାଦି ବହୁ କ୍ଷୁଦ୍ର କବିତା କବି ରଚନା କରିଥିବା ଜଣାଯାଏ । ଆଲୋଚନାର ସୌକର୍ଯ୍ୟ ଦୃଷ୍ଟିରୁ ସେଗୁଡ଼ିକୁ ନିମ୍ନଲିଖିତ ପ୍ରକାରେ ସଜାଇ ଦିଆଯାଇ ପାରେ ।

## (କ) କାଳ୍ପନିକ କାବ୍ୟ

୧ - ଲଳିତଲୋଚନା
୨ - ମୋହନ କଳ୍ପଲତା

## (ଖ) କୃଷ୍ଣ ବିଷୟକ ପ୍ରେମାଖ୍ୟାନ କାବ୍ୟ

୩ - ଯୁଗଳ ରସାମୃତ ଲହରୀ
୪ - ଯୁଗଳ ରସାମୃତ ଭଉଁରୀ
୫ - ପ୍ରେମ ତରଙ୍ଗିଣୀ
୬ - ଶିଖାଉ ଚନ୍ଦ୍ରୋଦୟ
୭ - ପ୍ରୀତି ଚିନ୍ତାମଣି

## (ଗ) ସାମ୍ପ୍ରଦାୟିକ ସାହିତ୍ୟ

୮ - ନାମ ଚିନ୍ତାମଣି
୯ - ନିଷ୍ଠା ନୀଳମଣି
୧୦ - ତତ୍ତ୍ୱ ତରଙ୍ଗିଣୀ
୧୧ - ପାଠ ରତ୍ନାବଳୀ
୧୨ - କୁଞ୍ଜ ବିହାର (ଅନୁପଲବ୍ଧ)
୧୩ - ଗୋବିନ୍ଦ ଗୁଣ କୀର୍ତ୍ତନମାଳା (ଅନୁପଲବ୍ଧ)
୧୪ - ଭୃତ ସୂର୍ଯ୍ୟୋଦୟ (ଅନୁପଲବ୍ଧ)

୧୫ - ବ୍ରହ୍ମାଣ୍ଡ ମଙ୍ଗଳ (ଅନୁପଲବ୍ଧ)
୧୬ - କୀର୍ତ୍ତନ ଉଜ୍ଜ୍ୱଳ

## (ଘ) ଜୀବନୀ ସାହିତ୍ୟ

୧୭ - ବିଶ୍ୱମ୍ଭର ବିହାର
୧୮ - ଗୌର ଚିନ୍ତାମଣି

## (ଙ) ଅନୁବାଦ ସାହିତ୍ୟ

୧୯ - ପ୍ରେମ କଳ୍ପଲତା
୨୦ - ବ୍ରଜଲୀଳାମୃତ ସମୁଦ୍ର
୨୧ - ଉଜ୍ଜ୍ୱଳ ନୀଳମଣି (ଅନୁପଲବ୍ଧ)
୨୨ - ପ୍ରେମ ଚିନ୍ତାମଣି (ବଙ୍ଗାନୁବାଦ. ଅନୁପଲବ୍ଧ)
୨୩ - ହରିଭକ୍ତି କଳ୍ପଲତା (ଅନୁପଲବ୍ଧ)
୨୪ - ଶ୍ରୀ କୃଷ୍ଣ ଚୈତନ୍ୟ ଚରିତାମୃତସାର
(ଅନୁପଲବ୍ଧ
୨୫ - ଭଗବଦ୍ ଗୀତାନୁବାଦ

## (ଚ) ଶାସ୍ତ୍ରୀୟ ରଚନା

୨୬ - ସଙ୍ଗୀତ ସଦାନନ୍ଦ
୨୭ - ବାଳ ବୋଧିନୀ
୨୮ - ସ୍ୱର ଦୀପିକା ବା ସ୍ୱର ଶାସ୍ତ୍ର

## (ଛ) କ୍ଷୁଦ୍ର ଗୀତିକାବଳୀ

୨୯ - ଦୂତୀ ଚଉତିଶା
୩୦ - କୋଇଲି ଚଉତିଶା
୩୧ - ଶ୍ରୀ ନୀଳାଦ୍ରିନାଥ ମହିମା ଜଣାଣ
୩୨ - ଶ୍ରୀ ଚୈତନ୍ୟ ଜଣାଣ
୩୩ - ନୂଆଗଡ଼ ଲିଙ୍ଗେଶ୍ୱରଙ୍କ ଜଣାଣ
୩୪ - ମନଃ ଶିକ୍ଷା
୩୫ - ଚଉପଦୀ ସମାହାର

ଉପର୍ଯ୍ୟୁକ୍ତ କାବ୍ୟ କବିତା ମାନଙ୍କ ମଧ୍ୟରୁ କୁଞ୍ଜବିହାର, ଗୋବିନ୍ଦ ଗୁଣ କୀର୍ତ୍ତନ ମାଳା , ବ୍ରଜସୂର୍ଯ୍ୟୋଦୟ, ବ୍ରହ୍ମାଣ୍ଡ, ମଙ୍ଗଳ ଉତ୍କଳ ନୀଳମଣି, ଦ୍ୱିଜଭକ୍ତ କଳ୍ପଲତା ଓ ଶ୍ରୀକୃଷ୍ଣ ଚୈତନ୍ୟ ଚରିତାମୃତ ହାର କେଉଁଠି ହେଲେ ଦେଖିବାକୁ ମିଳୁ ନାହିଁ । ବର୍ତ୍ତମାନ ଏଗୁଡ଼ିକ ସମ୍ପୂର୍ଣ୍ଣ ଅନୁପଲବ୍ଧ । ଅବଶିଷ୍ଟ ଗ୍ରନ୍ଥ ଗୁଡ଼ିକର ପୋଥି ବାଣୀବିହାରସ୍ଥ 'ପୋଥି ସଂରକ୍ଷଣ ଗ୍ରନ୍ଥାଗାର' ଓ ଓଡ଼ିଶା ରାଜ୍ୟ ସଂଗ୍ରହାଳୟର ପୋଥିବିଭାଗରେ ଏକାଧିକ ନକଲ ସଂରକ୍ଷିତ ହୋଇଅଛି । ଏହି ଉପଲବ୍ଧ ପୋଥି ମାନଙ୍କ ମଧ୍ୟରୁ ଯୁଗଳ ରସାମୃତ ଲହରୀ, ପ୍ରେମତରଙ୍ଗିଣୀ, ପ୍ରେମ କଳ୍ପଲତା, ନାମଚିନ୍ତାମଣି, ଦଷ୍ଟାନୀଳମଣି ଓ ବୈର ଚିନ୍ତାମଣି ବିଭିନ୍ନ ସମୟରେ ମୁଦ୍ରିତ ପୁସ୍ତକାକାରରେ ପ୍ରକାଶିତ ହୋଇଥିଲେ ମଧ୍ୟ ବର୍ତ୍ତମାନ ତାହା ଏକାନ୍ତ ଦୁଷ୍ପ୍ରାପ୍ୟ । ଏଣୁ ସାଧାରଣ ପାଠକ ମାନଙ୍କ ଜିଜ୍ଞାସା ଚରିତାର୍ଥ କରିବାପାଇଁ କବିଙ୍କ ଉପଲବ୍ଧ ସୃଷ୍ଟି ସମ୍ଭାର ବିଷୟରେ ଏଠାରେ ସାମାନ୍ୟ ସୂଚନା ଦିଆଯାଇଛି ।

**ଲଳିତ ଲୋଚନା**

ଲଳିତ ଲୋଚନା ଗୋଟିଏ କାଳ୍ପନିକ ଛାନ୍ଦକାବ୍ୟ ଓ ସଦାନନ୍ଦଙ୍କ ପ୍ରଥମ ସାହିତ୍ୟିକ ଅବଦାନ । ବାବନଟି ଛାନ୍ଦରେ ଏ କାବ୍ୟଟି ସମ୍ପୂର୍ଣ୍ଣ ହୋଇଛି । କାବ୍ୟର ଗଠନକୌଶଳ, ସୌନ୍ଦର୍ଯ୍ୟ ସମାବେଶ ଓ ବର୍ଣ୍ଣନ ପରିପାଟିରେ ମହାକାବ୍ୟ ସୁଲଭ ସମସ୍ତ ଧର୍ମ ସଂରକ୍ଷିତ । "ଆଦୌ ନମସ୍କ୍ରିୟା" ର ଲକ୍ଷଣ ଅନୁସାରେ ସଦାନନ୍ଦ ପ୍ରଥମେ, 'ରାଧାକାନ୍ତ' ଙ୍କୁ ବନ୍ଦନା କରି ଗ୍ରନ୍ଥ ଆରମ୍ଭ କରିଛନ୍ତି । ଏଥିରୁ ମନେହୁଏ 'ଲଳିତଲୋଚନା' ଲେଖାହେବା ବେଳକୁ କବିବୈଷ୍ଣବ ଚେତନାରେ ଉଦବୁଦ୍ଧ ହୋଇସାରିଥିଲେ; କିନ୍ତୁ ସଂସାର ତ୍ୟାଗୀ ହୋଇ ସନ୍ନ୍ୟାସ ଗ୍ରହଣ କରି ନଥିଲେ । ବାବା ଲଡ଼ୁକେଶ୍ୱର ତାଙ୍କ ଇଷ୍ଟଦେବତା ହୋଇଥିଲେ ମଧ୍ୟ ସେ ଗ୍ରନ୍ଥାରମ୍ଭରେ 'ରାଧାକାନ୍ତ' ଙ୍କୁ ଆରାଧ୍ୟ ଦେବତାଭାବେ ବନ୍ଦନା କରିଥିବାରୁ ତାଙ୍କର ବୈଷ୍ଣବତ୍ୱ ସୂଚିତ ହେଉଛି । ଅନ୍ୟପକ୍ଷରେ ତାଙ୍କର 'ବ୍ରହ୍ମଚର୍ଯ୍ୟାଶ୍ରମ' କାଳୀନ ସମସ୍ତ ରଚନାରେ କେବଳ ରାଧାକୃଷ୍ଣ ବ୍ୟତୀତ ଆଉ କୌଣସି ଦେବଦେବୀଙ୍କ ପ୍ରତି ଆନୁଗତ୍ୟ ପ୍ରକାଶ କରିନାହାନ୍ତି ; କିନ୍ତୁ ଲଳିତଲୋଚନା ରେ ଶ୍ରୀ ଜଗନ୍ନାଥ ଙ୍କୁ ସ୍ମରଣ କରିଥିବାରୁ (୭/୭) ଏହା ତାଙ୍କର 'ପୂର୍ବାଶ୍ରମ' ର ରଚନା ବୋଲି ସହଜରେ କଳ୍ପନା କରିହୁଏ । ନମସ୍କ୍ରିୟା ପରେ ଚରିତରୀତ ଛାନ୍ଦରେ ସାଧୁପ୍ରଶଂସା ଓ ଖଳନିନ୍ଦା କରାଯାଇଛି । କାବ୍ୟର ଆଭିମୁଖ୍ୟ ଘୋଷଣା କରି କବି କହିଛନ୍ତି ଯେ, ଏ କାବ୍ୟଟି ନାଗରୀ ନାରୀ ପରି କଳାପ୍ରବଣା ହେବ । ଅଳଙ୍କାର ବିମଣ୍ଡିତା ଓ ବକ୍ରୋକ୍ତି ନିପୁଣା ହୋଇ ରସିକ ମନୋହାରିଣୀ ହେବ , ପୁଣି ରସ, ଭାବ ଓ ଧ୍ୱନି ର ସୂକ୍ଷ୍ମରୁ ଅଭିବ୍ୟଞ୍ଜନାରେ ପାଠକ ମାନଙ୍କୁ

ଏମୁଗ୍ଧ କରିଦେବ । କାବ୍ୟ ପରିକଳ୍ପନାରେ କବିଙ୍କ ଇପ୍‌ସିତ କାମନା ଚରିତାର୍ଥ ହୋଇଛି । ଶୃଙ୍ଗାର ରସାପ୍ଳିତ ଲଳିତଲେଖନୀର ଆଙ୍ଗିକ ସୁଷମା ଯେପରି ଚିତ୍ତାକର୍ଷକ, ଆତ୍ମିକ ରୂପବିଭବ ମଧ୍ୟ ସେପରି ଚମତ୍କାରକାରୀ ହୋଇ ପାରିଛି । ମନେହୁଏ ଏ କାବ୍ୟର ଅଙ୍ଗ ସୌଷ୍ଠବ ସମ୍ପାଦନ ରେ ସଦାନନ୍ଦ ଉପେନ୍ଦ୍ର ଭଞ୍ଜଙ୍କ ଲାବଣ୍ୟବତୀ କାବ୍ୟର ସୃଷ୍ଟି ଶିଳ୍ପ ଦ୍ୱାରା ବିଶେଷ ଭାବରେ ଅନୁପ୍ରାଣିତ । ଉଦାହରଣ ସ୍ୱରୂପ ଲାବଣ୍ୟବତୀ ଓ ଚନ୍ଦ୍ରଭାନୁର ପୂର୍ବଜନ୍ମ ବୃତ୍ତାନ୍ତ ପରି ଏହାର ପରିକଳ୍ପନାରେ ମଧ୍ୟ ନାୟକ ଓ ନାୟିକାର ପୂର୍ବଜନ୍ମ କଥା ବର୍ଣ୍ଣନା କରାଯାଇଛି ।

ଥରେ ଲକ୍ଷ୍ମୀ ଓ ନାରାୟଣ ଏକାନ୍ତ ଆଳାପରେ ମଗ୍ନଥିବା ବେଳେ, ନାରାୟଣ କାମପୀଡ଼ା ଅନୁଭବ କଲେ । ଲକ୍ଷ୍ମୀ ଏହା ଜାଣିପାରି ନାରାୟଣଙ୍କୁ ଅପଦସ୍ଥ କରିବାପାଇଁ ମନସ୍ଥ କରି ନିଜ ମନରୁ ଗୋଟିଏ ଅନିନ୍ଦ୍ୟ ସୁନ୍ଦରୀ କନ୍ୟା ଜାତ କଲେ । ତାହାକୁ ସେ ନିର୍ଦ୍ଦେଶ ଦେଇ କହିଲେ ଯେ, ସେ ନାରାୟଣଙ୍କ ନିକଟକୁ ଯାଇ ଏପରି କର୍ମରେ ପ୍ରବୃତ୍ତ ରହିବ, ଯାହାଦ୍ୱାରା ନାରାୟଣ କାମାତୁର ହୋଇ ବିରହ ଯନ୍ତ୍ରଣାରେ ମୁହ୍ୟମାନ ହେବେ । କିନ୍ତୁ ଏହା ସହିତ ଆହୁରି ଗୁରୁତର ଆଦେଶ ମଧ୍ୟ ଥିଲା ଯେ, ସେ ସବୁ କରି ପାରେ କିନ୍ତୁ ଭୁଲରେ ସୁଦ୍ଧା କୌଣସି ପୁରୁଷର ଅଂଗ କୁ ସ୍ପର୍ଶ କରିବ ନାହିଁ । ଯଦିକରେ ତେବେ ତାହାର ମରଣ ସୁନିଶ୍ଚିତ । ଏହିପରି ଗୋଟିଏ ଅନିନ୍ଦ୍ୟ ସୁନ୍ଦରୀ କନ୍ୟାକୁ ଆସୁଥିବାର ଦେଖି ଅନ୍ତର୍ଯାମୀ ନାରାୟଣ ଲକ୍ଷ୍ମୀଙ୍କ ମୂଳ ଉଦ୍ଦେଶ୍ୟ ବୁଝିପାରି ସ୍ୱନିଃଶ୍ୱାସରୁ ଏକ ଅନିନ୍ଦ୍ୟ ସୁନ୍ଦର ପୁରୁଷ ଜାତ କଲେ । ଲକ୍ଷ୍ମୀଙ୍କ ମନରୁ ଜାତ ହୋଇଥିବାରୁ କନ୍ୟାର ନାମ ମନୋଜା ଓ ବିଷ୍ଣୁଙ୍କ ନିଃଶ୍ୱାସରୁ ଜାତ ହୋଇଥିବାରୁ ପୁରୁଷର ନାମ ଶ୍ୱାସୋଦ୍‌ଭବ ହେଲା । ଦୁହେଁ ଦୁହିଁଙ୍କୁ ଏକାନ୍ତରେ ପାଇ ଦୁର୍ବାର କାମତୃଷ୍ଣାରେ ପରସ୍ପର ପ୍ରତି ଆକୃଷ୍ଟ ହେଲେ । ଉଦ୍ଦାମ ଯୌବନର ଅତିଶୟ ଉନ୍ମାଦନାରେ ମନୋଜା ଲକ୍ଷ୍ମୀଙ୍କ ବାରଣ ଭୁଲି ଗଲେ । ଦୁଇବାହୁ ପ୍ରସାରିତ କରି ମନର ମଣିପତିକୁ ଆଲିଙ୍ଗନ କରିବା ପାଇଁ ଅସ୍ଥିର ହୋଇ ପୁରୁଷତନୁ ସ୍ପର୍ଶ କରିବା ମାତ୍ରେ ମନୋଜାର ପ୍ରାଣବାୟୁ ଉଡ଼ିଗଲା । ପ୍ରାଣପ୍ରିୟା ମନୋଜାର ଅକାଳ ମୃତ୍ୟୁରେ ନାୟକ ଶ୍ୱାସୋଦ୍‌ଭବ ଦୁଃଖରେ ବିଳାପ କରନ୍ତେ, ଲକ୍ଷ୍ମୀନାରାୟଣ ତାହାକୁ ଆଶ୍ୱାସନା ଦେଇ କହିଲେ ଯେ ପରଜନ୍ମରେ ସେ ମନୋଜାକୁ ପାଇପାରିବ । ଫଳରେ ସୂର୍ଯ୍ୟବଂଶୀ ମହାନଗରାଧିପତି ପରମ ବୈଷ୍ଣବ ରାଜା ବୃଷଭଦତ୍ତଙ୍କ ପୁତ୍ରରୂପେ ଶ୍ୱାସୋଦ୍‌ଭବ ଓ ତୈଲଙ୍ଗ ଦେଶର ରାଜା ଶାନ୍ତଶୀଳଙ୍କ କନ୍ୟା ରୂପେ ମନୋଜା ଜନ୍ମଗ୍ରହଣ କଲେ ।

ଶ୍ୱାସୋଦ୍‌ଭବ ନିପୁଣ ଢଳକ ଜାଲବରେ ନୃପଚନ୍ଦ୍ରଙ୍କ ରାଣୀ ସୁଲକ୍ଷଣାଙ୍କ ଗର୍ଭରୁ ଜନ୍ମଲାଭ କଲେ । କ୍ରମେ ରୂପ ଓ ଗୁଣରେ ତାହାଙ୍କର ଅସାମାନ୍ୟ ତେଜ ଫୁଟି ଉଠିଲା । ସଖା ପରିବେଷ୍ଟିତ ରାଜକୁମାରଙ୍କ ଅପୂର୍ବ ସୌନ୍ଦର୍ଯ୍ୟରେ ମୁଗ୍ଧ ହୋଇ ଜଣେ ଶିବ ଭକ୍ତ ଜଙ୍ଗମ, ନିପୁଣ ଢଳକଙ୍କ ଚିତ୍ର ଚିତ୍ରପଟରେ ଲେଖି ଦେଶ ବିଦେଶରେ ପ୍ରଦର୍ଶନ କରି ବୁଲିଲେ । ବଣିହାର ନଗରାଧିପତି ତୈଳଙ୍ଗ ଦେଶର ରାଜା ଶାନ୍ତଶୀଳଙ୍କ ରାଣୀ ଗୁଣବନ୍ତୀ ଗୋଟିଏ ଅନୁପମ ସୁଷମା ସମନ୍ୱିତା କନ୍ୟା ଲାଭକଲେ । ତାହାର ନେତ୍ର ଲାଳିତ୍ୟରେ ମୁଗ୍ଧ ହୋଇ ତାହାକୁ 'ଲଳିତ ଲୋଚନା ନାମ ଦେଲେ । ଜ୍ୟୋତଷ୍ଣ କନ୍ୟା ଲଳିତଲୋଚନାଙ୍କ ଶିକ୍ଷାଦାତ୍ରୀ ଭାବେ ନିଯୁକ୍ତ ହୋଇ ସାହିତ୍ୟ, ସଙ୍ଗୀତ ଓ ରତିଶାସ୍ତ୍ରାଦି ଶିକ୍ଷା ଦେଲେ । ରାଜକୁମାରୀ କ୍ରମେ ବାଲ୍ୟ, ପୌଗଣ୍ଡ ଅବସ୍ଥା ଅତିକ୍ରମ କରି କିଶୋରୀ ହେଲେ । ଅଙ୍ଗପ୍ରତ୍ୟଙ୍ଗରେ ଲାବଣ୍ୟର ବନ୍ୟା ପ୍ରବାହିତ ହେଲା । ମନରେ ପ୍ରଜାପତିର ଡେଣା ଲାଗିଗଲା ।

ଦିନେ ନବବସନ୍ତର ଆଗମନରେ ଉନ୍ମନା ଲଳିତଲୋଚନା ସଖୀମାନଙ୍କ ସଙ୍ଗେ ବନ ଭ୍ରମଣରେ ବାହାରିଲେ । ପ୍ରାକୃତିକ ଶୋଭା ସମ୍ପନ୍ନ ବନରେ ସଖୀମାନଙ୍କ ସହିତ ହାସପରିହାସରେ କିଛି ସମୟ ଅତିବାହିତ କରିବା ପରେ ଗୋଟିଏ ପଦ୍ମ ବନରେ ନାନା କୌତୁକରେ ଜଳକ୍ରୀଡା ସାରି ରାଜଭବନକୁ ପ୍ରତ୍ୟାବର୍ତ୍ତନ କଲେ । ସେଦିନ ରାତିରେ ରାଜକନ୍ୟା ସ୍ୱପ୍ନ ଦେଖିଲେ ଯେ, ସ୍ୱୟଂ ଶିବ ଉଭା ହୋଇ ଲଳିତଲୋଚନାଙ୍କୁ କହୁଛନ୍ତି—"ତୋର ସହାର ସାଚବର ଲାଭ ହେବ । ସେ ବିଷୟରେ ନିକଟରେ କିଛି ସଙ୍କେତ ମିଳିବ । ହୁକନ୍ୟା ମାୟାବତୀ ମାଳିନୀ ଗୋଟିଏ ସାକ୍ଷାତ୍ ଯୋଗିନୀ । ତାହାକୁ 'ଦୂତୀ' ଭାବରେ ନିଯୁକ୍ତ କଲେ ସେ ତନ୍ତ୍ରମନ୍ତ୍ର ବଳରେ ଅଚିରେ କାର୍ଯ୍ୟ ସମ୍ପାଦନ କରିପାରିବ ।"

ଦିନେ ରାଜା ଶାନ୍ତଶୀଳ ସମ୍ମୁଖରେ ଉପସ୍ଥିତ ହୋଇ ଜଣେ ଚିତ୍ରକଳା ନିପୁଣ ଜଙ୍ଗମ ନିଜର ଅଦ୍ୱିତୀୟ ଚିତ୍ରପଟଗୁଡ଼ିକୁ ପ୍ରଦର୍ଶନ କରୁଥିଲା । ସମସ୍ତେ ମନ୍ତ୍ରମୁଗ୍ଧ ହୋଇ ଚିତ୍ରପଟଗୁଡ଼ିକୁ ଦେଖୁଥିଲେ । ତାରି ମଧ୍ୟରେ ଥିବା ନିପୁଣ ଢଳକଙ୍କ ଅପୂର୍ବ ଶୋଭାସମ୍ପନ୍ନ ଚିତ୍ରପଟଟି ଦେଖି ରାଜକନ୍ୟାଙ୍କ ମନର ପ୍ରୀତି-କୋରକଟି ମୁକୁଳିତ ହୋଇ ଉଠିଲା । ସେ ମନେ ମନେ ନିପୁଣ ଢଳକଙ୍କ ସହିତ ପ୍ରେମବନ୍ଧନରେ ବାନ୍ଧିହେଲେ ।

ଦିନେ ଅବଲୀଳାକ୍ରମେ ନିପୁଣଢଳକ ସୈନ୍ୟସାମନ୍ତ ଓ ସଖାମାନଙ୍କ ସହିତ ମୃଗୟା ଉଦ୍ଦେଶ୍ୟରେ ଘୋର ବନରେ ପ୍ରବେଶ କଲେ । ଶିକାର ଖୋଜି ଖୋଜି ମନ୍ତ୍ରୀପୁତ୍ର ସହିତ ରାଜପୁତ୍ର ବାଟବଣା ହୋଇ ଗୋଟିଏ ଦିବ୍ୟକାନନସ୍ଥ ନଦୀତଟରେ

ଉପସ୍ଥିତ ହେଲେ । ସେଠାରେ ଗୋଟିଏ ଦିବ୍ୟ ସୁନ୍ଦରୀର ଅପୂର୍ବ ରୂପ ଦେଖି ରାଜପୁତ୍ର ବିମୋହିତ ହେଲେ । ଦୁହେଁ ପରସ୍ପର ପ୍ରତି ଆକୃଷ୍ଟ ହେଲେ । ଏକାକିନୀ ସେ ସୁନ୍ଦରୀ କାହିଁକି ଏ ନିର୍ଜନ ବନରେ ବିଚରଣ କରୁଛନ୍ତି ବୋଲି ପ୍ରଶ୍ନ ହେବାରୁ ସେ ମାୟାବିନୀ ମୋହିନୀ କହିଲେ—"ମୁଁ ଜଣେ ରାଜକୁମାରୀ । ପିତାଙ୍କ ଦ୍ୱାରା ଆୟୋଜିତ ବର ପାତ୍ରଟି ମୋର ପସନ୍ଦ ନ ହେବାରୁ ମୁଁ ରାଜପ୍ରାସାଦ ଛାଡ଼ି ଏଠାରେ ବୁଲୁଛି । ମୁଁ ବ୍ରହ୍ମାନନ୍ଦ ଅବଧୂତଙ୍କ ଶିଷ୍ୟା । ବେତାଳ ବିଦ୍ୟା ମୋତେ ଜଣା । ଗୁରୁ କୃପାରୁ ମୋର କାହାରିକି ଭୟ ନାହିଁ । କେହି ମୋର କିଛି କରି ପାରିବେ ନାହିଁ । ପରେ ପରେ ରାଜକୁମାରଙ୍କ ପରିଚୟ ପାଇ ସେମାନେ ପରସ୍ପର ପରିଣୟ ପାଶରେ ଆବଦ୍ଧ ହେବା ପାଇଁ ସ୍ଥିର କଲେ । ନିପୁଣଢଳକ ମାୟାବିନୀ ରାଜକୁମାରୀଙ୍କୁ ପାଲିଙ୍କିରେ ବସାଇ ସ୍ୱରାଜଧାନୀ ଅଭିମୁଖେ ପ୍ରସ୍ଥାନ କଲେ । ବାଟରେ ନେପାଳ ରାଜାଙ୍କ ସୈନ୍ୟଙ୍କରେ ପରାସ୍ତ କରି ପାଲିଙ୍କି ଶୂନ୍ୟ ଥିବା ଦେଖିଲେ । ଏହି ସମୟରେ ଜଣେ ଅବଧୂତଙ୍କ ସହିତ ଦେଖା ହେଲା ଓ ସେ ସେହି ମାୟାବିନୀ ସୁନ୍ଦରୀ ଓ ସୈନ୍ୟଙ୍କର ବୃତ୍ତାନ୍ତ ବର୍ଣ୍ଣନା କରି ସବୁ ମାୟା ପ୍ରଣୋଦିତ ବୋଲି ସୂଚନା ଦେଲେ ।

ଏହାପରେ ଚିତ୍ରକାର ଜଙ୍ଗମ ନିପୁଣଢଳଙ୍କୁ ଲଳିତଲୋଚନାର ଚିତ୍ରପଟ ଦେଖାଇଲେ । କୁମାର ରୂପଦର୍ଶନରେ ମୁଗ୍ଧ ହୋଇ ଲଳିତଲୋଚନା ପ୍ରେମରେ ପଡ଼ିଗଲେ । ଏଣେ ଲଳିତଲୋଚନା ନିପୁଣଢଳକଙ୍କ ଚିତ୍ରପଟ ଦେଖିବା ଦିନୁ ବିରହରେ କାତର ହୋଇ ଅସନ ବସନ ତ୍ୟାଗ କରିବାରୁ ସଖୀମାନେ ସ୍ୱପ୍ନାବିଷ୍ଟ ଯୋଗିନୀ ମାଳିନୀକୁ ଚିତ୍ରପଟଗତ ପୁରୁଷକୁ ଖୋଜି ବାହାର କରିବା ପାଇଁ ନିର୍ଦ୍ଦେଶ ଦେଲେ । ମାଳିନୀ ସ୍ୱ-ମାୟା ବଳରେ ରାଜପ୍ରାସାଦରେ ପ୍ରବେଶ କରି କୁମାର ସମ୍ମୁଖରେ ଜେମାମଣିର ରୂପଗୁଣ ବର୍ଣ୍ଣନା କଲା । ମାଳିନୀ ସ୍ୱ-ମନ୍ତ୍ର ବଳରେ ଦିବ୍ୟାଞ୍ଜନ ଆଖିରେ ଲଗାଇ ଦେବାରୁ କୁମାର ରାଜକୁମାରୀଙ୍କୁ ଦେଖି ପାରିଲେ । ସେ କୁମାରୀ ପ୍ରାପ୍ତି ଲୋଭରେ ଅତ୍ୟନ୍ତ ଆକୁଳିତ ହେବାରୁ ମାଳିନୀର ପରାମର୍ଶ କ୍ରମେ କୁମାରୀ ନିକଟକୁ ଗୋଟିଏ ପତ୍ର ଲେଖିଲେ ।

ମାଳିନୀ କୁମାରଙ୍କୁ ଚିଠାଉଠି ଦେଇ ସେହି ରାଜ୍ୟ, ନଗର, ଶାସନ, ରାଜା ଓ ରାଜକୁମାରୀଙ୍କ ଅବସ୍ଥା ଓ ସୌନ୍ଦର୍ଯ୍ୟ ବର୍ଣ୍ଣନା କଲା । ପତ୍ର ପାଠକରି ଜେମାମଣି ରାଜକୁମାରଙ୍କ ପ୍ରଗାଢ଼ ପ୍ରେମର ପରିଚୟ ପାଇ ଦିନୁଦିନ ବିରହଦଶାର ତୀବ୍ରତାରେ ପଡ଼ି ଆହାର ବିହାର ତ୍ୟାଗ କଲେ । ତନୁ କ୍ଷୀଣ ହେବାକୁ ଲାଗିଲା । ଚିନ୍ତିତ ରାଜାରାଣୀ, ଦାସୀ ଓ ପରିଚାରିକାଙ୍କ ପରାମର୍ଶକ୍ରମେ ଜେମାଙ୍କ ବିବାହ ପାଇଁ ସ୍ୱୟମ୍ବର ଆୟୋଜନ କଲେ । ଦୂତମାନେ ଦେଶ ଦେଶ ବୁଲି ରାଜପୁତ୍ରମାନଙ୍କୁ

ନିମନ୍ତ୍ରଣ କଲେ । ଏହି ସମୟରେ ଲଳିତଲୋଚନାଙ୍କ ଠାରୁ ପତ୍ର ନେଇ ମାଳିନୀ ନିପୁଣତିଳକଙ୍କ ହସ୍ତରେ ପ୍ରଦାନ କଲା । ପତ୍ରରେ କୁମାରୀର କୁମାର ପ୍ରତି ଯେଉଁ ପ୍ରେମ ନିବେଦନ ନିହିତ ଥିଲା, ତାହା ପଢ଼ି କୁମାର ସ୍ୱୟମ୍ବରକୁ ଯିବାପାଇଁ ଅତ୍ୟନ୍ତ ଉଦ୍‌ବିଗ୍ନ ହେଲେ । ପିତାଙ୍କଠାରୁ ଅନୁମତି ନେଇ ସୈନ୍ୟସାମନ୍ତ ସଖାମାନଙ୍କ ସହିତ ତୈଳଙ୍ଗ ଦେଶ ଉଦ୍ଦେଶ୍ୟରେ ପ୍ରସ୍ଥାନ କଲେ । ନାୟିକା ପ୍ରାପ୍ତି ଲୋଭରେ ଅତ୍ୟନ୍ତ ପୁଲକିତ ରାଜକୁମାର ନିରତିଶୟ ଉତ୍ସାହ ଓ ଉତ୍ତେଜନାରେ ନବ-ଦାମ୍ପତ୍ୟ ଜୀବନର ଶତ ବର୍ଣ୍ଣାଢ୍ୟ କଳ୍ପନାରେ ନିମଗ୍ନ ହେଲେ ।

ବିଭିନ୍ନ ଦେଶରୁ ରାଜପୁତ୍ରମାନେ ସ୍ୱୟମ୍ବର ଉଦ୍ଦେଶ୍ୟରେ ଆସିବାକୁ ଲାଗିଲେ । ଲଳିତଲୋଚନା ବଳଭି ଉପରେ ବସି ସେମାନଙ୍କର ଔତ୍ସୁକ୍ୟପୂର୍ଣ୍ଣ ଆଗମନ ଓ ପହଞ୍ଚିବାର ଲକ୍ଷ୍ୟ କରୁଥିଲେ । ନିପୁଣତିଳକଙ୍କ ଆଗମନ ଲକ୍ଷ୍ୟ କରି ସେ ମହା ଉତ୍ସାହରେ ଅଧୀର ହୋଇ ପଡ଼ିଲେ । କୁମାରୀ ଓ କୁମାରଙ୍କର ଶୁଭ-ଚକ୍ଷୁ ମିଳନ ହେଲା । ତୋଷାଳିନଗରରେ ରାଜକୁମାରଙ୍କ ରହିବା ବ୍ୟବସ୍ଥା କରାଯାଇଥିଲା । ମାଳିନୀ ସେଠାରେ ପହଞ୍ଚି ସମସ୍ତ କୁଶଳ ଜିଜ୍ଞାସା କରି କୁମାରଙ୍କ ଠାରୁ ଗୋଟିଏ ପତ୍ର ଆଣି ରାଜକୁମାରୀଙ୍କ ହସ୍ତରେ ସମର୍ପଣ କଲା । ସେ ପତ୍ର ପାଠ କରି ରାଜଜେମା କୁମାରଙ୍କ ପ୍ରତି କୃତଜ୍ଞତା ରେ କୃତ କୃତ୍ୟ ହେଲେ । ଆନନ୍ଦର ଆତିଶଯ୍ୟରେ ଉଚ୍ଛ୍ୱସିତ ହୋଇ ବାରମ୍ବାର ସେହି ପ୍ରେମପୂର୍ଣ୍ଣ ପତ୍ରଟି ପଢିବାକୁ ଲାଗିଲେ । ମନରେ ଶତ ଇନ୍ଦ୍ରଧନୁର ବର୍ଣ୍ଣିଳ ଛବି ଫୁଟି ଉଠିଲା ।

ସୁରମ୍ୟ ସ୍ୱୟମ୍ବର ମଣ୍ଡପରେ ରାଜକୁମାରମାନେ ଉପବେଶନ କଲେ । ବାଦ୍ୟ ଓ ଗାନରେ ଗଗନ ମଣ୍ଡଳ କମ୍ପି ଉଠିଲା, । ମାଳିନୀ ରାଜଜେମାଙ୍କୁ ଜଣେ ଜଣେ କରି ସମସ୍ତ ରାଜପୁତ୍ରଙ୍କ ପରିଚୟ ଦେଲା । ଶେଷରେ ଲଳିତଲୋଚନା ନିପୁଣତିଳକଙ୍କ ଗଳାରେ ବରଣମାଳା ଦେଇ ପତିରୂପେ ନିର୍ବାଚନ କଲେ । ବରକନ୍ୟାଙ୍କ ବିବାହ ମହା ଆଡ଼ମ୍ବରରେ ସମ୍ପୂର୍ଣ୍ଣ ହେଲା । ପରଦିନ ମଧୁଶଯ୍ୟା ପାଇଁ କେଳିମନ୍ଦିରକୁ ମଣ୍ଡଣି କରାଗଲା । ନାୟକ ନାୟିକାଙ୍କ ଦାମ୍ପତ୍ୟ ପ୍ରେମଲୀଳାର ବିବିଧ ବୈଚିତ୍ର୍ୟରେ ପରସ୍ପର ନିମଜ୍ଜିତ ହେଲେ । ପ୍ରତ୍ୟୁଷରୁ କେଳି ପୁରରୁ ବାହୁଡ଼ିବାପରେ ଜେମାଙ୍କୁ ସଖୀମାନଙ୍କର ପରିହାସ ଓ ନାୟକଙ୍କୁ ପ୍ରୌଢ଼ା ପରିଚାରିକାମାନଙ୍କର ପରିହାସରେ ରାଜଅନ୍ତଃପୁର ମୁଖର ହୋଇ ଉଠିଲା । କନ୍ୟାପିତା ଶାନ୍ତଶୀଳ ବିବିଧ ଉପଢୌକନ ଓ ଉପାସ୍ତନ ଦେଇ ବରକନ୍ୟାଙ୍କୁ ବିଦାୟ ଦେଲେ । ବହୁ ଆକାଙ୍କ୍ଷିତ ନବଦମ୍ପତି ପରସ୍ପରକୁ ଅତି ନିକଟରେ

ପାଇ ମହାନନ୍ଦ ଓ ଆନନ୍ଦରେ ପ୍ରତ୍ୟେକ ମୁହୂର୍ତ୍ତିକି ସରସ ପରିବେଶ ମଧ୍ୟରେ ଅତିବାହିତ କଲେ । ହିମ ଓ ଶିଶିର ଋତୁର ବର୍ଣ୍ଣାଢ଼୍ୟ ବୈଚିତ୍ର୍ୟ ମଧ୍ୟରେ ପ୍ରେମୋନ୍ମତ୍ତ ଦାମ୍ପତ୍ୟ ଜୀବନର ନବଉତ୍ତା ନୂତନ ଉନ୍ମାଦନାର ଶତ ଦିଗନ୍ତ ଉନ୍ମୋଚିତ କରିଦେଲା ।

ଋତୁରାଜ ବସନ୍ତର ଆଗମନରେ ସମଗ୍ର ସୃଷ୍ଟି ଉଲ୍ଲସିତ ହେଲା, ଜୀବମାନେ କାମ କାମନାରେ ଅସ୍ଥିର ହେଲେ । ନାୟକ ନାୟିକା ଉପବନ ମଣ୍ଡପରେ ପ୍ରେମାଳାପରେ ମଜ୍ଜିଥିବା ବେଳେ ହଠାତ୍ ଶୋଣିତ ସିଂହର ଗର୍ଜନ ଶୁଣି ଓ ଦୌରାତ୍ମ୍ୟର ବାର୍ତ୍ତାପାଇ କପୂରତିଲକ ସିଂହ ସହିତ ଯୁଦ୍ଧ କରିବା ପାଇଁ ଚାଲି ଗଲେ । ଆଗ୍ରହରେ ସିଂହକୁ ହତ୍ୟା କରନ୍ତେ ପଡ଼ୋଶୀ ରାଜ୍ୟର ଯୁବରାଜ ଶୋଭାକର କୁମାରଙ୍କୁ ନିଜ ରାଜ୍ୟକୁ ନେଇଯିବାକୁ ପାଗ୍ରେହିତି କଲେ । ଏବଂ ଅନୁରୋଧ କଲେ ଯେ ସେ ସେଠାରେ ଶରତ ଋତୁ ପର୍ଯ୍ୟନ୍ତ ରହି ଯୁଦ୍ଧବିଦ୍ୟା ଶିକ୍ଷା ଦେବେ । ଏ ପ୍ରସ୍ତାବରେ ସମ୍ମତ ପ୍ରକାଶ କରି କପୂର ତିଳକ ସେଠାରେ ଅବସ୍ଥାନ କଲେ ।

ପରେ ପରେ ଗ୍ରୀଷ୍ମ ଋତୁ ଓ ବର୍ଷା ଋତୁର ଆଗମନରେ ନାୟକ ଓ ନାୟିକା ବିରହାନୁଚନ୍ତାରେ ବ୍ୟଥିତ ହେଲେ । ଶରତ ଋତୁର ଆଗମନରେ କପୂରତିଲକ ସ୍ୱଦେଶ ପ୍ରତ୍ୟାବର୍ତ୍ତନ କରି ଲଳିତଲୋଚନା ସହିତ ମିଳିତ ହେଲେ । ଦୁଃଖର ରଜନୀ ଶେଷ ହେଲା । ବିରହ ଖଣ୍ଡିତା ନାୟିକାର ମାନ, ଗୁରୁ ବଚନ ବନ୍ୟାପରି ପର ଶେଷରେ ପ୍ରଣୟୀ ଓ ପ୍ରଣୟିନୀଙ୍କ ଦାମ୍ପତ୍ୟ ପ୍ରେମର ବନ୍ୟା ଛୁଟିଲା । ଉପଯୁକ୍ତ ସମୟ ଉପସ୍ଥିତ ହୁଅନ୍ତେ ରାଜା ବୃଷବନ୍ତ ରାସଲୀଳା ଉତ୍ସବ ପାଳନ କଲେ । ଉତ୍ସବ ପରେ ରାଜା ସମସ୍ତ ପାତ୍ରମନ୍ତ୍ରୀଙ୍କ ଉପସ୍ଥିତରେ ଯୁବରାଜଙ୍କୁ ପାଖକୁ ଡ଼ାକି କହିଲେ ସଂସାର ଅଳୀକ, ଜୀବନ ନଶ୍ୱର, ବାସୁଦେବ ଉପାସନା ହିଁ ସଂସାରେ ସାର । ରାଜା ଜୀବନର ଉଦ୍ଦେଶ୍ୟ ବ୍ୟାଖ୍ୟା କରି ବୈଷ୍ଣବଦୀକ୍ଷା ନେଇ ସସ୍ତ୍ରୀକ ବୃନ୍ଦାବନ ଗମନ କଲେ । ଯୁବରାଜ ରାଜ ସିଂହାସନରେ ଅଧିଷ୍ଠିତ ହୋଇ ରାଜ୍ୟ ଶାସନ କଲେ ।

ଲଳିତଲୋଚନା କାବ୍ୟଟି କବିଙ୍କର ପ୍ରଥମ ଅବଦାନ ହେଲେ ମଧ୍ୟ ଏଥିରେ ରୀତିଯୁଗୀୟ ଆଦର୍ଶ-କବିଙ୍କର ସମସ୍ତ ସଂଭ୍ରମ ସ୍ୱାକ୍ଷର ଲିପିବଦ୍ଧ ହୋଇଛି । ଚିରାଚରିତ ରୀତିରେ କାବ୍ୟ କଥାର ପରିକଳ୍ପନା କରାଯାଇ ଥିଲେ ମଧ୍ୟ ବର୍ଣ୍ଣନାରେ ସ୍ୱାଗତଯୋଗ୍ୟ ସରଳତା ଓ ନୂତନତା ସର୍ବତ୍ର ପରିଲକ୍ଷିତ ହୁଏ ।

ଦଶେଷ କର ଏହାର ସଂଭୋଗ କଳ୍ପନା ଓ ବରହ ବର୍ଣ୍ଣନାରେ ଖଣ୍ଡ ଯୁଗୀୟ ପ୍ରଯନ୍ତୁ ପ୍ରପୀଡ଼ିତ ଅତଥ୍ୟର ଓ ଅଯଥାର୍ଥତା ନାହିଁ ; ଅଛି ତାଙ୍କ ପ୍ରାଣର ସ୍ପନ୍ଦନ ଆବେଗ, ସ୍ୱାଭାବିକ ଓ ସହଜ ସ୍ୱଭାବର ବ୍ୟାପ୍ତି, ସରଳ ଓ ତରଳ ପ୍ରାଣର ଅଭିବ୍ୟକ୍ତି, ଯାହା ସାଧନାମୟ ପ୍ରେମସମ୍ପର୍କ ଭିତରଂପୁ ତରୁଣ ତରୁଣୀଙ୍କ କାମନାମୟ ମୁହୂର୍ତ୍ତ ଗୁଡ଼ିକୁ ମହୋତ୍ସବମୟ କରିଦିଏ ।

## ମୋହନ କଳ୍ପଲତା

ମୋହନ କଳ୍ପଲତା ସଦାନନ୍ଦଙ୍କର ଦ୍ୱିତୀୟ କାଳ୍ପନିକ ଖଣ୍ଡ କାବ୍ୟ । ଛତ୍ରୀଶଟି ଦୀର୍ଘ ଛାନ୍ଦରେ ଏହା ସମାପ୍ତ ହୋଇଛି । ଲେଖକ ତାଙ୍କର 'ପୂର୍ବାଶ୍ରମ' ରେ ଏ କାବ୍ୟର ଶୁଭାରମ୍ଭ କରି ଅର୍ଦ୍ଧାଧିକ ଅଂଶ ଲେଖିଥିଲେ ମଧ୍ୟ, ବହୁ ବର୍ଷ ପରେ ସେ ତାଙ୍କର ପଶ୍ଚିମ ଜୀବନରେ ଅବଶିଷ୍ଟ ଅଂଶ ଲେଖି ଏହାକୁ ସମ୍ପୂର୍ଣ୍ଣ କରିଛନ୍ତି ।

ଲଳିତ ଲେଚନା ପରି ଏ କାଳ୍ପନିକ କାବ୍ୟର ଗତିପ୍ରକୃତି କୁ ମଧ୍ୟ ଅନ୍ତଯୁଗୀୟ କାବ୍ୟାଦର୍ଶ ସମ୍ପୂର୍ଣ୍ଣ ନିୟନ୍ତ୍ରଣ କରିଛି । ଛତ୍ରିଶତି ଖଣ୍ଡରେ ପ୍ରଥମ ଛାନ୍ଦରେ ମଙ୍ଗଳାଚରଣ କରି କବି ଦ୍ୱିତୀୟ ଛାନ୍ଦରୁ କଥା ବସ୍ତୁର ସୂତ୍ରପାତ କରିଛନ୍ତି । ମଙ୍ଗଳାଚରଣ ପରେ କାଳ୍ପନିକ ଖଣ୍ଡ କାବ୍ୟରେ ନାୟକ ନାୟିକାଙ୍କ ପୂର୍ବଜନ୍ମ ବୃତ୍ତାନ୍ତ ବର୍ଣ୍ଣନା ଗୋଟିଏ ସାଧାରଣ କଥା ତାହାହିଁ ଏଠାରେ ମଧ୍ୟ ନିର୍ବାହ କରାଯାଇଛି । ଶ୍ରୀକୃଷ୍ଣ ଦ୍ୱାରକା ଯିବା ପରେ ଗୋପରେ ଗୋପୀମାନେ ଓ ଶ୍ରୀରାଧା କୃଷ୍ଣ ବିରହରେ ଅତ୍ୟନ୍ତ ଦୀନହୀନ ଅବସ୍ଥାରେ କାଳଯାପନ କରୁଥିଲେ । ଦିନେ ଯମୁନା କୂଳରେ ଉପସ୍ଥିତ ହୋଇ ଗୋପୀମାନେ କୃଷ୍ଣକଥା ସ୍ମରଣ କରି ବାହୁନି ବାହୁନି କାନ୍ଦିବାକୁ ଲାଗିଲେ । ରାଧାଙ୍କ ନୟନ ଯୁଗଳରୁ ନିର୍ଗତ ଲୋତକ ଧାର ଗୋଟିଏ ଗର୍ତ୍ତରେ ପୁଞ୍ଜୀଭୂତ ହୋଇ ରହିଲା । ବୃନ୍ଦା ସେହି ଗର୍ତ୍ତରୁ ମୃତ୍ତିକା ଆଣି ଅବଳୀଳା କ୍ରମେ ଗୋଟିଏ ଲାବଣ୍ୟ ପ୍ରତିମା ତିଆରି କଲେ । ଶ୍ରୀରାଧା ଏକାକ୍ଷର ମନ୍ତ୍ରରେ ତାହାକୁ ଜୀବନ୍ୟାସ କରି ଗୋଟିଏ ଜୀବନ୍ତ ଦିବ୍ୟ ନାରୀରେ ପରିଣତ କଲେ । ଗୋପୀମାନେ ଦ୍ୱାରକାସ୍ଥିତ କୃଷ୍ଣଙ୍କୁ ଗୋପୀମାନଙ୍କର ଦୁର୍ଦ୍ଦଶା ଜଣାଇବା ପାଇଁ ଏହି ସୁନ୍ଦରୀ ନାରୀକୁ ଦୂତୀ ରୂପରେ ଦ୍ୱାରକା ପଠାଇଲେ । ସେ ଦ୍ୱାରକା ଯାଇ କୃଷ୍ଣଙ୍କୁ ଶ୍ରୀରାଧାଙ୍କ ବିରହଦଶା ଜନିତ ଅବସ୍ଥାର କରୁଣ ସଂବାଦ ନିବେଦନ କଲା । ଶ୍ରୀକୃଷ୍ଣ ନିଜ ଅଧରର କନିଷ୍ଠାଙ୍ଗୁଳିରୁ ଗୋଟିଏ ଦିବ୍ୟ ରୂପବାନ୍ ପୁରୁଷ ଉତ୍ପନ୍ନ କରି, ସେ ଦୁହିଁଙ୍କୁ ସ୍ୱାମୀ ସ୍ତ୍ରୀ ରୂପରେ

ଲୀଳାଖେଳା କରିବାକୁ ନିର୍ଦ୍ଦେଶ ଦେଲେ ; ଏବଂ କହିଲେ ମର୍ତ୍ତ୍ୟରେ ଜନ୍ମ ନହେଲେ 'ସୁଖ' କି ଜାଗତିକ ପଦାର୍ଥ ତାହା ଅନୁଭବ କରି ହୁଏ ନାହିଁ । ଏଣୁ ସେ ଦୁହେଁ ପୁନର୍ବାର ଏ ମର୍ତ୍ତ୍ୟରେ ଜନ୍ମ ହେବେ ଓ ଲୀଳାଖେଳା ପରି ଶେଷରେ ପୂର୍ଣ୍ଣ ଶ୍ରୀକୃଷ୍ଣଙ୍କ ଅଙ୍ଗରେ ଲୀନ ହୋଇଯିବେ । ଏହି ଭବିଷ୍ୟତ ବାଣୀ ଅନୁସାରେ ଶ୍ରୀକୃଷ୍ଣଙ୍କ ଅଙ୍ଗରୁ ଜାତ ପୁରୁଷ କର୍ଣ୍ଣାଟ ଦେଶର ରାଜା ବୀରବାହୁଙ୍କ ପୁତ୍ର ଶ୍ରୀବନ୍ଦନ ରୂପରେ ଏବଂ ସେହି ଯୁବତୀ ରତ୍ନାକର କଟକର ଧର୍ମଶୀଳଙ୍କ ଦୁହିତା ମୋହନ କଳ୍ପଲତା ନାମରେ ଜନ୍ମ ଗ୍ରହଣ କଲେ । ପୂର୍ବଜନ୍ମ ବୃତ୍ତାନ୍ତ ପରେ ନାୟକ ନାୟିକାଙ୍କ ଜନ୍ମ ପୂର୍ବରୁ ସେମାନଙ୍କର ପିତାମାତା, ରାଜ୍ୟ, ନଗର, କୁଳଶୀଳ, ଯଶକୀର୍ତ୍ତି ଇତ୍ୟାଦିର ଯଥାଯଥ ବର୍ଣ୍ଣନା କରାଯାଇଛି । ତାପରେ ନାୟକର ଜନ୍ମ, ପୁତ୍ରଦର୍ଶନ ଓ ନାୟକର ଗୁଣ ବର୍ଣ୍ଣନା କରିବାରେ କବି ଯଥାସମ୍ଭବ କବିତ୍ୱ ସାମର୍ଥ୍ୟ ପ୍ରଦର୍ଶନ କରିଛନ୍ତି । କଥାବସ୍ତୁର ସ୍ୱାଭାବିକ ଗତି ସହିତ ତାଳଦେଇ କାବ୍ୟ ନାୟିକା ମୋହନ ଲତାର ଜନ୍ମ, ବାଲ୍ୟଲୀଳା, ପୁଷ୍ପଭେଦ ଓ ଯୌବନ ପ୍ରାପ୍ତିର ସଂକ୍ଷିପ୍ତ ବର୍ଣ୍ଣନା କରାଯାଇଛି । କାବ୍ୟ ନାୟକଙ୍କ ବୀରତ୍ୱ, ପାଣ୍ଡିତ୍ୟ ଶସ୍ତ୍ରମନ୍ତ୍ର, ସୌନ୍ଦର୍ଯ୍ୟ, ସାହସିକତା ଆଦି ଦୁର୍ଲ୍ଲଭ ବ୍ୟକ୍ତିତ୍ୱର ସମସ୍ତ ଐଶ୍ୱର୍ଯ୍ୟ ବର୍ଣ୍ଣନା ସହିତ ନାୟିକାର ବାଲ୍ୟକୈଶୋର ଲୀଳା ଓ ପୁଷ୍ପଦର୍ଶନ ଯଥା ସମ୍ଭବ କବି ପ୍ରସିଦ୍ଧି ଅନୁସାରେ ନିର୍ବାହ କରାଯାଇଛି । ନବ ଯୌବନା ନାୟିକାର ଅଙ୍ଗ ସୌଷ୍ଠବ ପ୍ରଦର୍ଶନ କରିବାକୁ ଯାଇ କବି ସ୍ୱତ ସୁଗ୍ରୀସୁ କୋଠ ସମ୍ପତ୍ତି ରମ୍ଭା, କରିକର, ମଦନଜମ୍ଭ, ଶ୍ରୀଫଳ, ମଙ୍ଗଳକଳସ, ସ୍ୱର୍ଣ୍ଣକୁମ୍ଭ, ମେରୁ ପର୍ବତ, ପଦ୍ମ, ଭ୍ରମର ଶ୍ରେଣୀ, ନବାମ୍ବୁଦ, ଚନ୍ଦ୍ର ଇତ୍ୟାଦିର ଚିରାଚରିତ ପ୍ରୟୋଗ ମଧ୍ୟ କରିଛନ୍ତି । ମୋହନଲତାର, ବେଶ ରଚନା ପରେ କବି ପୂର୍ବ ରାଗର ସୂତ୍ରପାତ କରିବାକୁ ଯାଇ ଚିତ୍ରପଟ ଦର୍ଶନର ଆୟୋଜନ କରିଛନ୍ତି । ନାୟକର ଶିକାର, ବନ ଭ୍ରମଣ, ଅଷ୍ଟବକ୍ର ମଣି, ନେତସୁଖୋଦୟ ମୋହନଲତା ପଟ୍ଟଦର୍ଶନ, ମୋହନଲତାର ଶାସ୍ତ୍ର ଆଗମନ, ନାୟକ ନାୟିକାଙ୍କ କାଳିକା ପୂଜା ଇତ୍ୟାଦି ପରେ ସ୍ୱତ କାବ୍ୟର ଏକ ବଳିଷ୍ଠ ପରମ୍ପରା ସ୍ୱପ୍ନଦର୍ଶନ ଓ ଇନ୍ଦ୍ରଜାଲ ବାଲକ ମାଧ୍ୟମରେ ନାୟକ ନାୟିକା ମଧ୍ୟରେ ପୂର୍ବରାଗର ସନ୍ଦେଶ ସୃଷ୍ଟି କରାଯାଇଛି । ପରେ ପରେ ଶୃଙ୍ଗାର ରସର ଉଦ୍ଦୀପନ ବିଭାବ - ବର୍ଷାକାଳ ବର୍ଣ୍ଣନା ଆସିଛି । ତାହାର ପୁନ ବାର ପରିଣତିରେ ନାୟକ ଲୋଭିତ ଚିତ୍ତ । ଶରତ ଋତୁ ନାୟିକାକୁ କରିଛି ଅସ୍ଥିର । ନାୟିକାର ଯୁଗହସ୍ତ ଅପରନ୍ତି କାମନା ହୁଏ ପଡ଼ିଛି ଗୋଟିଏ ପରେ ଗୋଟିଏ ଚିଠିରେ । ପ୍ରତ୍ୟୁତ୍ତର ବି ମିଳିଛି ନାୟକଠାରୁ । ତା ପରେ ହୋଇଛି କେମାର ସ୍ୱୟମ୍ବର ଆୟୋଜନ । ନାୟିକାର ଚନ୍ଦ୍ରାଭ ନାୟକ ଦ୍ୱାରା ପ୍ରାପ୍ତି, ଧୂମ ଚତୁର ବର୍ଣ୍ଣନା, ଦୂତ ପ୍ରେରଣ ଓ ଭେଟ, ସୈନ୍ୟସଜ୍ଜା,

ପ୍ରଦାହକ, ନାୟକ ଅନୁକୂଳ, ନାୟକର ଅପେକ୍ଷା, ସ୍ୱୟଂବର, ନାୟକ ଛଦ୍ମ-ବେଶ, ସାକ୍ଷାତ୍ ଦର୍ଶନ, ବରଣ, ବିବାଦ, ବେଶ, ଅଭିସାର, ଉପମାନନ୍ଦା, ବସନ୍ତ, ବାତ୍ୟାସୁରତ, ନାୟିକା ସଂକେତ, ରତିବାହୁଡ଼ା, ଅଷ୍ଟମଙ୍ଗଳା ବିଚ୍ଛେଦ, ନାୟକର ସ୍ତ୍ରୀ ସହ ସ୍ୱଦେଶ ପ୍ରତ୍ୟାଗମନ, ଦେବୀଙ୍କ ଅସତୀତ୍ୱ ଓ ଶୁଦ୍ଧ ପରିଚୟ, ପରିସମାପ୍ତି ।

ଲଳିତ ଲୋଚନା ପରି ମୋହନଲତା ମଧ୍ୟ ଗୋଟିଏ କାଳ୍ପନିକ ଖଣ୍ଡକାବ୍ୟ ହୋଇଥିବାରୁ ଏହାର କଥାବସ୍ତୁରେ କୌଣସି ନୂତନତା ନାହିଁ । କବି ଅର୍ଜୁନ ଦାସଙ୍କ କଳ୍ପଲତା ଠାରୁ ଆରମ୍ଭ କରି ସଦାନନ୍ଦଙ୍କ ମୋହନ କଳ୍ପଲତା ପର୍ଯ୍ୟନ୍ତ ସମସ୍ତ କାଳ୍ପନିକ ଖଣ୍ଡକାବ୍ୟର କଥାବସ୍ତୁ ଗୋଟିଏ । ତାହା ଏତେ ଗତାନୁଗତିକ ଯେ, ଗୋଟିଏ କାବ୍ୟର ନାୟକ ଓ ନାୟିକାଙ୍କ ନାମ ଧାମ ଜାଣିଲେ ଯେ କୌଣସି ପାଠକ ସମଗ୍ର କଥାବସ୍ତୁର ଗୋଟିଏ କ୍ରମିକ ସ୍ଥୂଳଚିତ୍ର ଅନାୟାସରେ ଅଙ୍କିଦେଇ ପାରିବେ । ଏଣୁ ସାଧାରଣତଃ ଖଣ୍ଡକାବ୍ୟରେ କଥାର ସମାବେଶ ଓ ପରିବେଶରେ ପରିକଳ୍ପନାଗତ ସୃଷ୍ଟିଧର୍ମୀ ମାଦକତା କେଉଁଠି ହେଲେ ମିଳେ ନାହିଁ କି ଏଠାରେ ମଧ୍ୟ ମିଳେ ନାହିଁ । ତେବେ ସମସ୍ତ ଖଣ୍ଡକାବ୍ୟ ଯେଉଁ କଳ୍ପନା ବିଳାସ, ବର୍ଣ୍ଣନା ନୈପୁଣ୍ୟ ଓ ଶୃଙ୍ଗାର ପ୍ରବଣତା ପାଇଁ ପ୍ରସିଦ୍ଧ, ସେ ସବୁର ପରିକଳ୍ପନାରେ ସଦାନନ୍ଦଙ୍କ ଯଥେଷ୍ଟ ସିଦ୍ଧହସ୍ତତାର ପରିଚୟ ମିଳେ । ଅନୁପ୍ରାସ, ଯମକ ଓ ଶ୍ଳେଷର ବିବିଧ ରଙ୍ଗ ବୈଚିତ୍ର୍ୟ ସହିତ ଅର୍ଥାଲଙ୍କାର ଗୁଡ଼ିକର ସୁନିପୁଣ ଯୋଜନା ଓ ପ୍ରୟୋଗ, ସଦାନନ୍ଦଙ୍କ ସୃଷ୍ଟିଧର୍ମୀ କାବ୍ୟ ସମ୍ଭାରରେ ସହଜ ଦୃଷ୍ଟିଗୋଚର ହୁଏ ।

## ଯୁଗଳ ରସାମୃତ ଲହରୀ

କବି ଗ୍ରନ୍ଥର ଆରମ୍ଭରେ ମଙ୍ଗଳାଚରଣ କରିଛନ୍ତି । ଅବନା ଅକ୍ଷରରେ ରଚିତ ପ୍ରଥମ ଛାନ୍ଦରେ କେବଳ କୃଷ୍ଣଙ୍କ ବନ୍ଦନା କରାଯାଇଛି । ଦ୍ୱିତୀୟ ଛାନ୍ଦରେ କାବ୍ୟରେ ଆଭିମୁଖ୍ୟ ବର୍ଣ୍ଣନା କରି କବି ଘୋଷଣା କରିଛନ୍ତି ଯେ, କାବ୍ୟଟି କାମିନୀ ପ୍ରାୟ ହୋଇ ପାଠକମାନଙ୍କ କାମ ଜଳଧିକୁ ଉଛୁଳାଇବ । କୃଷ୍ଣ ସ୍ୱୟଂ ଅବତାର ହେଲେ ମଧ୍ୟ ନିଜେ ଧରା ବକ୍ଷରେ ଅବତୀର୍ଣ୍ଣ ହୋଇ ପୃଥିବୀର ଭାରହରଣ କରିବାପାଇଁ ରାଧା ଓ ଗୋପୀବର୍ଗଙ୍କ ସହିତ ଲୀଳା ରଚନା କରିଛନ୍ତି । କୃଷ୍ଣଙ୍କ ଜନ୍ମ ବୃତ୍ତାନ୍ତ ଓ ବାଲ୍ୟଲୀଳାକୁ ଉପେକ୍ଷା କରି ତାଙ୍କର ପୌଗଣ୍ଡ ଓ କୈଶୋର ଲୀଳାହିଁ କାବ୍ୟର ବର୍ଣ୍ଣିତ ବିଷୟ ବୋଲି ସୂଚନା ଦେଇ କବି ତୃତୀୟ ଛାନ୍ଦଠାରୁ ହିଁ କୃଷ୍ଣଲୀଳାର ବିବିଧ ବୈଚିତ୍ର୍ୟ ବର୍ଣ୍ଣନା

କରିଛନ୍ତି । ଦିନେ ଶ୍ରୀକୃଷ୍ଣ ଗାଈ ଚରାଇବା ପାଇଁ ବନକୁ ଯିବାକୁ ଯଶୋଦାଙ୍କ ଠାରୁ ଅନୁମତି ପ୍ରାର୍ଥନା କଲେ । ଯଶୋଦା ସେଥିପାଇଁ ଅନୁମତି ନ ଦେବାରୁ କୃଷ୍ଣ ପୌର୍ଣ୍ଣମାସୀଙ୍କୁ ଆଶ୍ରୟ ନେଲେ । ପୌର୍ଣ୍ଣମାସୀ ଯଶୋଦାଙ୍କୁ ବୁଝାଇ କହିଲେ ଯେ, କୃଷ୍ଣ ପ୍ରଥମେ ଗୋଶାସ୍ତ୍ରବିତ୍ ଗୋବର୍ଦ୍ଧନ ମଲ୍ଲଙ୍କ ଘରକୁ ଯାଇ ଗୋଶାସ୍ତ୍ର ଶିକ୍ଷା କରିବା ଉଚିତ୍ । ସେଥିରେ ଯଶୋଦା ସମ୍ମତି ପ୍ରକାଶ କରିବାରୁ କୃଷ୍ଣ ଗୋବର୍ଦ୍ଧନ ମଲ୍ଲଙ୍କ ପୁରକୁ ଗଲେ । ଗୋବର୍ଦ୍ଧନ କୃଷ୍ଣଙ୍କୁ ଭଣଜା ବୋଲି ସମ୍ବୋଧନ କରି ନିଜର ପତ୍ନୀ ଚନ୍ଦ୍ରାବଳୀଙ୍କୁ ନିର୍ଦ୍ଦେଶ ଦେଲେ ଯେ, ସେ ଯଥାଯୋଗ୍ୟ ବନ୍ଦାପନା କରି ଶ୍ରୀକୃଷ୍ଣଙ୍କୁ ରାଜକୀୟ ସମ୍ବର୍ଦ୍ଧନା ଜ୍ଞାପନ କରନ୍ତୁ । ଅର୍ଘ୍ୟ ଆକାରେ ବନ୍ଦାପନା ସମୟରେ ଚନ୍ଦ୍ରାବଳୀ ଓ କୃଷ୍ଣଙ୍କ ଚାରିଚକ୍ଷୁର ମିଳନ ହେଲା । ଦୁହେଁ ପରସ୍ପର ପ୍ରତି ଆକୃଷ୍ଟ ହୋଇ କାମବାଣରେ ଜର୍ଜରିତ ହେଲେ । ଗୋଶାସ୍ତ୍ର ଶିକ୍ଷା କରି କୃଷ୍ଣ ସ୍ୱଗୃହ ପ୍ରତ୍ୟାବର୍ତ୍ତନ କଲେ । ଏହି ଦିନଠାରୁ କୃଷ୍ଣ - ଚନ୍ଦ୍ରାବଳୀ ପ୍ରେମଲୀଳାର ଅଙ୍କୁରୋଦ୍ଗମ ହେଲା । ଯଶୋଦା ସ୍ଥିର କଲେ ଯେ, ଗୋପାଷ୍ଟମୀ ଦିନ କୃଷ୍ଣ ଗାଈମାନଙ୍କ ସହିତ ବନଗମନର ଶୁଭାରମ୍ଭ କରିବେ, ଗୋପାଷ୍ଟମୀ ଉତ୍ସବ ଓ ଗାଈମାନଙ୍କ ସହିତ କୃଷ୍ଣଙ୍କ ବନଗମନ ଦୃଶ୍ୟ ବେଶ୍ ଚିତ୍ତାକର୍ଷକ ହୋଇଛି ।

ପ୍ରତିଦିନ ଧେନୁମାନଙ୍କ ସାଙ୍ଗରେ କୃଷ୍ଣ ବୃନ୍ଦାବନକୁ ଯାଆନ୍ତି । କୃଷ୍ଣଙ୍କ ଅନୁପସ୍ଥିତିରେ ମାତା ଯଶୋଦାଙ୍କ ମନ ଅମଙ୍ଗଳ ଆଶଙ୍କାରେ ଅସ୍ଥିର ହୁଏ । ସ୍ନେହମୟୀ ଜନନୀଙ୍କ ମନୋବେଦନାର ପରିପ୍ରକାଶ ଅତ୍ୟନ୍ତ ମର୍ମସ୍ପର୍ଶୀ ହୋଇଛି । ଧୀରେ ଧୀରେ ଚନ୍ଦ୍ରାବଳୀଙ୍କ ସହ କୃଷ୍ଣଙ୍କ ମିଳନାକାଙ୍କ୍ଷା ତୀବ୍ରରୁ ତୀବ୍ରତର ହୋଇଛି । ସଖୀ ପଦ୍ମା ଆଗରେ ଚନ୍ଦ୍ରାବଳୀ କୃଷ୍ଣଙ୍କ ଅପୂର୍ବ ଶୋଭା ମାଧୁରୀ ବର୍ଣ୍ଣନା କରି ନିଜେ କିପରି ତାଙ୍କ ପ୍ରତି ଆକୃଷ୍ଟ ହୋଇ ପଡ଼ିଛନ୍ତି ତାହା ପ୍ରକାଶ କରିଛନ୍ତି । ଦିନେ ଯମୁନା ତଟରେ ସେ କୃଷ୍ଣଙ୍କ ସହିତ ଗୋପନରେ ମିଳିତ ହୋଇ କିପରି ପ୍ରୀତିଲୀଳାରେ ମଜ୍ଜି ଯାଇଥିଲେ ସେ କଥା ବର୍ଣ୍ଣନା କରିଛନ୍ତି । ଚନ୍ଦ୍ରାବଳୀଙ୍କ ବିରହ ବେଦନା ସୀମା ଅତିକ୍ରମ କରିଛି । ପୁଣି କିପରି କୃଷ୍ଣଙ୍କ ସହିତ ମିଳନ ହେବ, ସେହି ଚିନ୍ତାରେ ବ୍ୟଗ୍ର ବିରହିଣୀ ଚନ୍ଦ୍ରାବଳୀ ନିଜ ସଖୀ ସହିତ ପରାମର୍ଶ କରିଛନ୍ତି । ଚନ୍ଦ୍ରାବଳୀଙ୍କ ସହ କୃଷ୍ଣଙ୍କ ଗୁପ୍ତ ପ୍ରଣୟ କ୍ରମେ ବ୍ୟକ୍ତ ହୋଇ ଯିବାରୁ ଗୋବର୍ଦ୍ଧନ ମଲ୍ଲ ନିଜ ମାତାଙ୍କୁ ଏହାର ସୂଚନା ଦେଇ ବୋହୂ ଉପରେ କଡ଼ା ନଜର ରଖିବା ପାଇଁ ପରାମର୍ଶ ଦେଇଛନ୍ତି । କୃଷ୍ଣଙ୍କ କୈଶୋର ଲୀଳାର ବିବିଧ ରୂପ ଚିତ୍ରିତ ହୋଇଛି । ଅଷ୍ଟମ ଦୃଶ୍ୟରେ କୃଷ୍ଣ କିପରି ଯମୁନା କୂଳରେ ଲତା କୁଞ୍ଜରେ ବାଟଘାଟରେ ନାଟକ କରି ଗୋପୀମାନଙ୍କୁ ହଟହଟା କରନ୍ତି, ତାହାର ବହୁ ବୈଚିତ୍ର୍ୟପୂର୍ଣ୍ଣ ଚିତ୍ର

ନୃପୟାପିତ କରିନାଇଛନ୍ତି । କୃଷ୍ଣ ନାନା ଉପାୟ ଅବଲମ୍ବନ କରୁଥିଲେ ମଧ୍ୟ ନବ ଯଉବନୀ ଗୋପୀନୀ ମାନେ ସୁରତ ଦାନ ପାଇଁ ସମ୍ମତ ନ ହେବାରୁ ପୌର୍ଣ୍ଣମାସୀ କୃଷ୍ଣଙ୍କୁ ବଶୀକରଣ ମନ୍ତ୍ର ଦେଇଛନ୍ତି ଓ କହିଛନ୍ତି ଉପସ୍ଥିତ ଗୋପୀକାର ନାମାଙ୍କ ଉଚ୍ଚାରଣ କରିବା ମାତ୍ରେ ସେ ଆସି କିଙ୍କରୀ ପରି ପାଦସେବା କରିବ । ଏଣେ ଚନ୍ଦ୍ରାବଳୀ କୃଷ୍ଣ ବିରହ ବେଦନାରେ ମ୍ରିୟମାଣା । ମିଳନର ଆଶା କ୍ଷୀଣ ହୋଇଥିବାରୁ ତାଙ୍କର ପ୍ରାଣବାୟୁ ଉଡ଼ିଗଲା ପରି ମନେ ହେଉଛି । ଚନ୍ଦ୍ରାବଳୀଙ୍କର ଏପରି ଦୁର୍ଦ୍ଦଶା ଦେଖି ପୌର୍ଣ୍ଣମାସୀ ତାଙ୍କୁ 'କୃଷ୍ଣ ଭୁଜଙ୍ଗ' ମନ୍ତ୍ର ଦାନ କରିଛନ୍ତି । ଏହି ବଶୀକରଣ ମନ୍ତ୍ରଦ୍ୱାରା କୃଷ୍ଣ ନିଶ୍ଚୟ ବଶ୍ୟତା ସ୍ୱୀକାର କରିବେ ବୋଲି ଆଶ୍ୱାସନା ଦେଇ କୃଷ୍ଣଙ୍କ ନିକଟକୁ ଚିଠି ଲେଖିବା ପାଇଁ ପରାମର୍ଶ ଦେଇଛନ୍ତି । ଚନ୍ଦ୍ରାବଳୀଙ୍କ ପତ୍ର ଧରି ଶିଳ୍ପକାରିଣୀ କୃଷ୍ଣଙ୍କ ନିକଟରେ ପହଞ୍ଚିଛି । କାଲି ଚନ୍ଦ୍ରାବଳୀ କାଳୀ ଠାକୁରାଣୀଙ୍କୁ ପୂଜା କରିବା ପାଇଁ ଗଉରୀ ତୀର୍ଥକୁ ଯିବେ ବୋଲି କହି ପଠାଇ ଦେଇଛି । ଏ ଗୁପ୍ତ ରହସ୍ୟ ସଖୀମାନେ ଜାଣିପାରିବାରୁ କୃଷ୍ଣ ହେତେବେଳେ ଏହା ନ ପଢ଼ି ବନଗମନ ପରେ ନିଭୃତରେ ପତ୍ର ପାଠ କରିଛନ୍ତି । କୃଷ୍ଣ ପରଂବ୍ରହ୍ମ ଓ ବେଦର ତତ୍ତ୍ୱମସି ବୋଲି ବର୍ଣ୍ଣନା କରି ଚନ୍ଦ୍ରାବଳୀ ପତ୍ରରେ ମିଳନ ପାଇଁ ଆକୁଳ ନିବେଦନ କରିଛନ୍ତି । ସଖୀ କଳାପ ହାତରେ କୃଷ୍ଣ ପତ୍ରର ଉତ୍ତର ଦେଇଛନ୍ତି । ଚନ୍ଦ୍ରାବଳୀଙ୍କ କାଳୀ ପୂଜାର ଆୟୋଜନ ହୋଇଛି । ଶାଶୂ ସଖୀମାନଙ୍କୁ ସାବଧାନ ହେବା ପାଇଁ ସତର୍କ କରାଇ ବୋହୂଙ୍କୁ ଗଉରୀ ତୀର୍ଥକୁ ପଠାଇଛନ୍ତି । ଚନ୍ଦ୍ରାବଳୀ ପ୍ରଚ୍ଛନ୍ନରେ କୃଷ୍ଣଙ୍କ ସହିତ ଅଭିସାର ରଚନା କରିଛନ୍ତି । କାଳୀ ପୂଜିବାକୁ ଆସି କାଳିଆଠାରେ ଲାଗି ଯାଇଛନ୍ତି । ଏହିପରି ବହୁବାର ଶ୍ରୀକୃଷ୍ଣ-ଚନ୍ଦ୍ରାବଳୀ ମିଳନ ସମ୍ପାଦିତ ହୋଇଛି । ଏହି ଲୀଳାର ବିବିଧ ବୈଚିତ୍ର୍ୟ ଷୋଡ଼ଶ ଗ୍ରନ୍ଥ ପର୍ଯ୍ୟନ୍ତ ବିସ୍ତୃତ ଲାଭ କରିଛି ।

ସମୟ କ୍ରମେ କୃଷ୍ଣଙ୍କ ସହିତ ଚନ୍ଦ୍ରାବଳୀଙ୍କ ଗୁପ୍ତ ପ୍ରଣୟ କଥା ସବୁ ଲୋକେ କୁହାକୁହି ହେଲେ । ତାହା ହାଟରେ ପଡ଼ି ବାଟରେ ଗଡ଼ିଲା । କୃଷ୍ଣଙ୍କ ଅସାମାଜିକତା ଓ ଅନାଚାର କ୍ରମେ ଅସହ୍ୟ ହୋଇ ଉଠିଲା ! ଏହାର ପ୍ରତିରୋଧ ପାଇଁ ଗୋଟିଏ ସାମାଜିକ ଦଣ୍ଡ ବସିଲା । ସଭାରେ କୃଷ୍ଣଙ୍କ ବହୁ ଦୁର୍ଗୁଣ କଥା ଆଲୋଚିତ ହେଲା, କିନ୍ତୁ କୃଷ୍ଣଙ୍କୁ ସେଥିରୁ ନିବୃତ୍ତ କରିବା ପାଇଁ କୌଣସି ଉପାୟ ବାହାରିଲା ନାହିଁ । ଅଭିମନ୍ୟୁ ହେଲେ କହିଲେ ମୋ ସ୍ତ୍ରୀ ରାଧା ଅତି ମୂର୍ଖୀ । ମୁଁ ତାର ଯୋଗ୍ୟ ନୁହେଁ । ଯଦି ଥରେ କୃଷ୍ଣ ତାକୁ ଦେଖେ, ସେ ନିଶ୍ଚୟ ମୋ'ଣ ନାହିଁ କ'ଣ କରି ବସିବ । ଅପବାଦ ନାଗରୀ ଘୁରିଅଛି

ବାଜିବ । ଏହିପରି ନାନା ବିଷୟର ଆଲୋଚନା ପରେ ସ୍ଥିର ହେଲା ଯେ, ସେଇଟା ଘରେ ବୋହୂମାନଙ୍କୁ ଅଟକ କରି ରଖିବା ଏକମାତ୍ର ଉପାୟ । ସଭା ଭଙ୍ଗ ହେଲା । ଅଭିମନ୍ୟୁ ନିଜ ଜନନୀଙ୍କୁ ସବୁକଥା ବୁଝାଇ କହିଲେ । ରାଧାଙ୍କୁ ଦୁଆରବନ୍ଧ ଡେଇଁବାକୁ ନଦେବା ପାଇଁ ପରାମର୍ଶ ଦେଇ କଡ଼ା ନଜରରେ ରଖିବାକୁ ସାବଧାନ ବାଣୀ ଶୁଣାଇଲେ, ଫଳରେ ରାଧା ଗୃହବନ୍ଦିନୀ ଅସୂର୍ଯ୍ୟଂପଶ୍ୟା ହୋଇ ରହିଲେ । ଦିନେ ରାଧା ହଠାତ୍ ଉଠି ଆଖି ଖୋଲି ଗବାକ୍ଷ ବାଟେ ବାହାରକୁ ଦୃଷ୍ଟି ନିକ୍ଷେପ କରିବା ସଙ୍ଗେ ସଙ୍ଗେ ଶ୍ରୀକୃଷ୍ଣଙ୍କ ଅପୂର୍ବ ରୂପ ମାଧୁରୀ ତାଙ୍କର ଦୃଷ୍ଟି ଗୋଚର ହେଲା । କୃଷ୍ଣ ମଧ୍ୟ ରାଧାଙ୍କ ରୂପ ଲାବଣ୍ୟ ଦେଖି ଚମତ୍କୃତ ହେଲେ । ରୂପର ଆକର୍ଷଣ ପ୍ରଥମ ଦର୍ଶନରେ ପରସ୍ପରକୁ ବିମୁଗ୍ଧ ଚକିତ କରିଦେଲା । ପରସ୍ପର ପ୍ରତି ଦୁର୍ବାର ଆକର୍ଷଣରେ ଦୁହେଁ ମୁହ୍ୟମାନ ହେଲେ । ଶାଶୁ ଜଟିଳା ଓ ନଣନ୍ଦ କୁଟିଳାର ତୀବ୍ର ସଂଦିଗ୍ଧ ଦୃଷ୍ଟି ରାଧାଙ୍କୁ ଗୃହବନ୍ଦିନୀ କରି ରଖିଲା । ସଖୀମାନେ ମର୍ମବେଦନା ପ୍ରକାଶ କଲେ । କୃଷ୍ଣଙ୍କ ବିରହବେଦନା ପ୍ରଶମିତ କରିବା ପାଇଁ ସଖୀ ବିଶାଖା ରାଧାଙ୍କ ଚିତ୍ରପଟ ଦେଖାଇବାକୁ ସ୍ଥିର କଲେ । କୃଷ୍ଣ ଦକ୍ଷିଣ ନାୟକ । ଚନ୍ଦ୍ରାବଳୀଙ୍କ ପ୍ରଣୟ ନେତା କରୁକରୁ ରାଧାଙ୍କ ପ୍ରେମ ପାଶରେ ଆବଦ୍ଧ ହେଲେ ।

ଦିନେ ସଖୀଜନ ପରିବେଷ୍ଟିତା ରାଧା ଫୁଲ ତୋଳିବାକୁ ଉପବନକୁ ଯାଇଥିଲେ । କୃଷ୍ଣ ଗୋଟିଏ ଲତାକୁଞ୍ଜରେ ଲୁଚି ରହି ବିଶାଖାଙ୍କୁ ଦେଖି କହିଲେ, 'ହେ ନାଗରୀ ବର ! ଆସ ମୁଁ ତୁମ ଅଧର ପାନ ଆଶାରେ ଏଠାରେ ବସିଛି । ମୁଁ ତୁମର ଦାସ, ଅଧର ପୀୟୂଷ ଦାନ କରି ମୋତେ ସନ୍ତୋଷ ପ୍ରଦାନ କର' ଏହା କହି କୃଷ୍ଣ ବିଶାଖାଙ୍କୁ କୋଳକରି ଚୁମ୍ବ ଦେବାରୁ ସେ କହିଲେ, "ଆମ୍ଭଙ୍କୁ ଦେଖିତ ହେଉଛ ଏମନ୍ତ, ମୁଁ ଅବା କେଉଁ ସୁନ୍ଦରୀ ହାର, ରାଧିକା ଆନନ ଲୋକନେ କି ଜ୍ଞାନ ରହିବ, ହେବ ବାତୁଳ ବର ।" ରାଧାଙ୍କ ନାମ ଶୁଣି କୃଷ୍ଣ ପରିଚୟ ଜିଜ୍ଞାସା କଲେ । ବିଶାଖା ରାଧାଙ୍କ ସମ୍ୟକ୍ ପରିଚୟ ଦେଇ ତାହାଙ୍କ ଅପୂର୍ବ ଅଙ୍ଗସୌନ୍ଦର୍ଯ୍ୟ ବର୍ଣ୍ଣନା କଲେ ।

ରାଧା ମଧ୍ୟ ସଖୀ ଠାରୁ କୃଷ୍ଣଙ୍କ ଅଙ୍ଗପ୍ରତ୍ୟଙ୍ଗର ଅପୂର୍ବ ଶୋଭା କଥା ଶୁଣିଲେ । ବିଶାଖା ରାଧାଙ୍କ ଚିତ୍ରପଟଟି ଧରି କୃଷ୍ଣସଖା ମଧୁମଙ୍ଗଳକୁ ଦେଲେ ଓ କୃଷ୍ଣଙ୍କ ଚିତ୍ରପଟ ଆଣି ରାଧାଙ୍କୁ ଦେଖାଇଲେ । ପରସ୍ପରର ଅଙ୍ଗସୌଷ୍ଠବ ଓ ଲାବଣ୍ୟ ଦର୍ଶନରେ ବିମୁଗ୍ଧ କିଶୋର କିଶୋରୀ ମିଳନ ପାଇଁ ଉତ୍କଣ୍ଠିତ ହୋଇ ଉଠିଲେ । ଔତ୍ସୁକ୍ୟର ଆତିଶଯ୍ୟରେ ମିଳନାକାଙ୍କ୍ଷିଣୀ ରାଧାଙ୍କର

ଚେଷ୍ଟା ହୁଗଲା । ସଖୀମାନେ ସଚେତ କରାଇ ସ୍ୱୈରୀର ସଦୃଶ କାର୍ଯ୍ୟ କରିବାକୁ ପରାମର୍ଶ ଦେଲେ । କିନ୍ତୁ ରାଧାଙ୍କ ହୃଦୟ ଅନଙ୍ଗର ଅଜ୍ଞାତ ଇଙ୍ଗିତରେ ଜଡ଼ିତ ହେବାକୁ ଲାଗିଲା ।

ଦିନେ କୃଷ୍ଣ ଗୋଟିଏ ସ୍ୱପ୍ନ ଦେଖିଲେ । ପୌର୍ଣ୍ଣମାସୀ ତାଙ୍କୁ ନେଇ ରାଧାଙ୍କ ଶୟନ କକ୍ଷରେ ଛାଡ଼ିଦେଇ ଅନ୍ତର୍ହିତ ହେଲେ । ରାଧାଙ୍କ ଶୟନକାଳୀନ ସଂପୂର୍ଣ୍ଣ ମୁଖଶୋଭା ଦେଖି କୃଷ୍ଣ ବିମୁଗ୍ଧ ହେଲେ । ବାଳାକୁ ସ୍ପର୍ଶକରି ତାର ମୁଖରେ ଚୁମ୍ବନ ଦେବାମାତ୍ରେ କୃଷ୍ଣଙ୍କର ନିଦ୍ରାଭଙ୍ଗ ହେଲା । ସ୍ୱପ୍ନକଥା ଚିନ୍ତା କରି କୃଷ୍ଣ ବିଳାପ କରିବାକୁ ଲାଗିଲେ । ଅପର ପକ୍ଷରେ ରାଧା ମଧ୍ୟ ଅନୁରୂପ ସ୍ୱପ୍ନ ଦେଖିଲେ । କୃଷ୍ଣ ଆଲିଙ୍ଗନ କରି ତାଙ୍କୁ ଚୁମ୍ବନ ଦେବାବେଳେ ନିଦ ଭାଙ୍ଗିଲା । ଏ କଥା ସଖୀମାନଙ୍କ ଆଗରେ ବର୍ଣ୍ଣନା କରି କହିବାରୁ ସଖୀମାନେ ପରିହାସ କଲେ । ରାଧା ଆଉ ଦିନେ ସ୍ୱପ୍ନ ଦେଖିଲେ ଯେ, କୃଷ୍ଣ ବଂଶୀ ବଜାଇ କେବଳ ରାଧା ରାଧା ବୋଲି ଡାକୁଛନ୍ତି । ନିଦ ଭାଙ୍ଗିଲା, ସ୍ୱପ୍ନ କଥା ଆଲୋଚନା କରି ସେ ଜାଣି ପାରିଲେ ଯେ, ଚିତ୍ରପଟର ପୁରୁଷ, ସ୍ୱପ୍ନପୁରୁଷ ଓ ବଂଶୀବାଦକ, ଏ ତିନହେଁ ସେହି ଏକା କୃଷ୍ଣ, ରାଧା ଓ କୃଷ୍ଣ ପରସ୍ପର ମିଳିତ ହେବା ପାଇଁ ଅତ୍ୟନ୍ତ ଆକାଙ୍କ୍ଷିତ ହୋଇଥିଲେ ମଧ୍ୟ ମିଳନ ହୋଇ ପାରୁ ନ ଥିବାରୁ ପୌର୍ଣ୍ଣମାସୀ ଦୁର୍ବାସା ମୁନିଙ୍କୁ ଅଭିମନ୍ୟୁ ପାଖକୁ ପଠାଇ ଗ୍ରହଶାନ୍ତି ପାଇଁ ରାଧା ପ୍ରତିଦିନ ମଧ୍ୟାହ୍ନରେ ବୃନ୍ଦାବନରେ ସୂର୍ଯ୍ୟପୂଜା କରିବା ପାଇଁ ପରାମର୍ଶ ଦେଲେ ଓ କହିଲେ ଯେ ଅଭିମନ୍ୟୁ ଚନ୍ଦ୍ରଙ୍କ ମିତ୍ର ହେଉ ଓ ଅଜଠାରୁ ତାହାର ନାମ 'ଚନ୍ଦ୍ରସେଣ' ହେଉ । ଏଥିରେ ଶାଶୁ ଜଟିଳା ସମ୍ମତି ପ୍ରଦାନ କଲେ । ଅଭିମନ୍ୟୁ ଗୋପରେ ସୁପୁରୁଷ ଭାବରେ ଜନପ୍ରିୟ ହୋଇ ଥିଲେ ମଧ୍ୟ ସେ ଥିଲେ ନପୁଂସକ । ସେ ଓ କୃଷ୍ଣ ଥିଲେ ଅଭିନ୍ନ । କିନ୍ତୁ ଲୀଳା ସମ୍ପାଦନ ପାଇଁ ସେ ଦୁଇଜଣ ଦୁଇପୁରୁଷ ଭାବରେ ଅବତୀର୍ଣ୍ଣ ହୋଇଛନ୍ତି । ପୂର୍ବେ ରାଜା କନ୍ୟାଦାନ କରିବା ପାଇଁ ନାରଦ ଓ ପର୍ବତ ଦୁଇ ଋଷିଙ୍କୁ ଆମନ୍ତ୍ରଣ କରି ଆଣିଥିଲେ । କିନ୍ତୁ କନ୍ୟା ଭଗବାନଙ୍କୁ ଧ୍ୟାନରେ ବରଣ କରିବାରୁ ଭଗବାନ ଗରୁଡ଼ ପିଠିରେ ବସି ରାଜନବରରୁ କନ୍ୟାକୁ ହରଣ କରି ନେଇଗଲେ । ଋଷି କ୍ରୋଧରେ କୃଷ୍ଣଙ୍କୁ ଅଭିଶାପ ଦେଲେ—"ତୁଅ ନପୁଂସକ, ପ୍ରଭୁ ହୋଇ ଦେଲ ଆମ୍ଭଙ୍କୁ କାମ ସନ୍ତାପ ।" ପ୍ରଭୁ "ପରକୀୟା ଇଚ୍ଛାଧରି, ଭକ୍ତଶାପ ଅଙ୍ଗୀକାରୀ" ହେଲେ । ଏଣୁ ଅଭିମନ୍ୟୁ ଓ କୃଷ୍ଣ ଏକ ପୁରୁଷ ଓ ଅଭିମନ୍ୟୁ ନପୁଂସକ ।

ଶରତକାଳର ପ୍ରବେଶ । ବୃନ୍ଦାବନ ଅତ୍ୟନ୍ତ କାମୋଦ୍ଦୀପକ ହୋଇ ଉଠିଲା । କୃଷ୍ଣ ରାଧା ଚିନ୍ତାରେ କ୍ଷୀଣ ହେବାକୁ ଲାଗିଲେ । ଦିନେ ଉପବନରେ

ରାଧାଙ୍କ ସଖୀମାନଙ୍କ ସହ କୃଷ୍ଣଙ୍କ ଦେଖା ହେଲା । ନାନା ହାସ ପରିହାସ ମଧ୍ୟରେ କିଛି ସମୟ କଟିଲେ ମଧ୍ୟ ରାଧାଙ୍କ ସହିତ ମିଳନ ହେଲା ନାହିଁ । କୃଷ୍ଣ ବିଷଣ୍ଣ ମନରେ ଥିବାବେଳେ ବୃନ୍ଦାବନରେ ନିତ୍ୟଲୀଳା ସ୍ଥାନ ଦର୍ଶନ କଲେ । ସ୍ୱନିତ୍ୟ ଲୀଳା ସ୍ଥାନର ବିଚିତ୍ର ଦୃଶ୍ୟ ଦେଖି ମାୟାବଶତଃ କୃଷ୍ଣ ଆଶ୍ଚର୍ଯ୍ୟ ଚକିତ ହୋଇ ଗଲେ । ହିଂସାବର୍ଜିତ ଏହି ନିତ୍ୟସ୍ଥଳର ଚତୁଃ ପାର୍ଶ୍ୱରେ ଅଷ୍ଟକୁଞ୍ଜ । ଅନନ୍ତ ବୈକୁଣ୍ଠ ଏଠାରେ ଧୂଳିକଣା ପରି । ଷୋଡ଼ଶ ସ୍ତମ୍ଭ ବିଶିଷ୍ଟ ରତ୍ନ ମଣ୍ଡପରେ ରତ୍ନ ସିଂହାସନ । ତଦୁପରି ସହସ୍ର ଦଳ ବିଶିଷ୍ଟ ନୀଳନଳିନ ଉପରେ ଅଷ୍ଟଦଳ ପଦ୍ମ ଓ ବର୍ତ୍ତୁଳ କେଶର ଶୋଭିତ । ଏହି ଅଷ୍ଟଦଳ ପଦ୍ମର କେଶର ମଧ୍ୟରେ ରାଧା ସହିତ ନିଜେ ଶ୍ରୀକୃଷ୍ଣ ନିତ୍ୟ ଲୀଳାରେ ନିମଗ୍ନ ଥିବାପରି ସେ ଦେଖିଲେ । ସେ ଏ ଦୃଶ୍ୟ ଦେଖି ନିଜ ଉପରେ ଦୃଷ୍ଟି ନିକ୍ଷେପ କରି ପୁଣି ନିତ୍ୟ ଲୀଳାସ୍ଥଳ ଦେଖି ବିହ୍ୱଳ ହେଲେ । କିଛି ସମୟ ପରେ ରାଧା ସୂର୍ଯ୍ୟପୂଜା ପାଇଁ ଆସିବାରୁ ଲୁକ୍‌କାୟିତ ଭାବରେ ତାଙ୍କୁ ଦେଖି ସେ ରୂପମାଧୁରୀ ଆସ୍ୱାଦନ କରୁ କରୁ ତାଙ୍କର ଚେତା ବୁଡ଼ିଗଲା ।

ଏହି ଦୃଶ୍ୟ ଦର୍ଶନ ପରେ କୃଷ୍ଣ ନବୀନ ଅନୁରାଗର ବଶବର୍ତ୍ତୀ ହେଲେ । ସବୁବେଳେ ମୁଖରେ ରାଧା, ରାଧା ଉଚ୍ଚାରଣ କରିବାକୁ ଲାଗିଲେ । ସ୍ତମ୍ଭ, ସ୍ୱେଦ, ରୋମାଞ୍ଚନର ଦେହ ଆରମ୍ଭ ହେଲା । କାମସେନାକୁ ଦୂତୀ ଭାବରେ ରାଧାଙ୍କ ନିକଟକୁ ପ୍ରେରଣ କଲେ । କାମସେନା ରାଧାଙ୍କ ଘରେ ପ୍ରବେଶ କରି ଦେଖିଲା ଯେ, କୃଷ୍ଣଙ୍କ ରୂପ ଚର୍ଚ୍ଚା ଚାଲିଛି । ଯମୁନା କୂଳରେ କୃଷ୍ଣଙ୍କୁ ଦେଖି ରାଧା କିପରି ମୁଗ୍ଧ ହୋଇ ଯାଇଥିଲେ । ପୁଣି କୃଷ୍ଣଙ୍କ ସେ ମନଲୋଭା ତ୍ରିଭଙ୍ଗୀ ଠାଣି, ସୌନ୍ଦର୍ଯ୍ୟ ଛବି, ସେ ମୁରଲୀ ବାଦନ, ପତିବ୍ରତା ସତୀ ନାରୀ କି ମଧ୍ୟ କିପରି ଟାଣିନିଏ ଇତ୍ୟାଦି । ରାଧା ପ୍ରତିଜ୍ଞା କଲେ, ଯଦି ହେଲେ ସେ ଆଉ ଭୁଲରେ ଯମୁନା କୂଳକୁ ଯିବେନାହିଁ । ଗଲେ ସତୀତ୍ୱ ଅଭିମାନ ରକ୍ଷା କରିବା ଯୁବତୀ ନାରୀ ପକ୍ଷରେ ଏକାନ୍ତ ଅସମ୍ଭବ । ଏହିପରି ନାନା ଚର୍ଚ୍ଚା କରି ରାଧା ଏକାକୀ ଜଗତି ଉପରେ ବସିଛନ୍ତି, କାମସେନା ଗୁପ୍ତରେ ସେଠାରେ ପହଞ୍ଚି କୃଷ୍ଣଙ୍କ ସନ୍ଦେଶ ଦେଲେ । ରାଧା କୃଷ୍ଣଙ୍କ ଅସଙ୍ଗତ ପ୍ରସ୍ତାବ ଶୁଣି କ୍ରୋଧରେ ଉତ୍‌କ୍ଷିପ୍ତ ହୋଇ କହିଲେ, "ମୁଁ ଲୋଖାରେ ତାଙ୍କର ମାଇଁ ହେବି । ମୋ ପାତିବ୍ରତ୍ୟ ଭାଙ୍ଗିବାକୁ କହୁଛୁ, ତୁ ମଲୁନି ।" ଏହିପରି ବାକ୍ୟ ବାଣରେ ଜର୍ଜରିତ ହୋଇ କାମସେନା ଆସି କୃଷ୍ଣଙ୍କୁ ଜଣାଇଲେ, ଦୂତୀଦ୍ୱାରା ସେ ଲଭ୍ୟ ନୁହେଁ' ଆପଣା ଉପାୟ ନିଜେ ଚିନ୍ତାକର । ଏକଥା ଶୁଣି କୃଷ୍ଣଙ୍କ ମୁଣ୍ଡରେ ପଥର ପଡ଼ିଲା ପରି ଅନୁଭୂତ ହେଲା । କିନ୍ତୁ କୃଷ୍ଣ ଛାଡ଼ିବା ଲୋକ ନୁହନ୍ତି । ସେ ବେଳକାଳ ଉଣ୍ଡି ଯମୁନା କୂଳରେ ରାଧାଙ୍କ ପ୍ରତୀକ୍ଷାରେ ବସି ରହିଲେ । ରାଧା ଏକାକୀ ଆସୁଥିବାର ଦେଖି ବାଟ ଓଗାଳି ପାଟ ମାଗିଲେ । ଦୁହିଁଙ୍କ ମଧ୍ୟରେ

ଉକ୍ତ ଷଡଯନ୍ତ୍ର ସଫଳ । ଶେଷରେ ରାଧା ନିଆଁ ଘର ଡାକିବାରୁ କୃଷ୍ଣ ତରବରେ ସେ ସ୍ଥାନ ଛାଡ଼ି ପଳାଇଲେ । କିନ୍ତୁ ଅର୍ଦ୍ଧନିଶି ରାଧାଙ୍କ ନିଦ୍ରାରେ ସେ ନିମଗ୍ନ ରହିଲେ । ଶିଶିର ଋତୁ ପ୍ରବେଶ ହେଲା । କୃଷ୍ଣଙ୍କ କାମବେଦନା ବଢିଲା ।

ଦିନେ ଗୋଟିଏ ଜାଙ୍ଗଲିକ ନନ୍ଦଙ୍କ ସଭାରେ ଉପସ୍ଥିତ ହୋଇ ସାପଖେଳ ଦେଖାଇଲା । କୃଷ୍ଣ ତାହାଠାରୁ ଗାରୁଡ଼ିମନ୍ତ୍ର ଓ ସ୍ତମ୍ଭନ ମୋହନ ଉଚ୍ଚାଟନ ମନ୍ତ୍ର ଶିଖିଲେ । ଏହି ମନ୍ତ୍ର ବଳରେ ଦିନେ ସେ ଦୁଇ ଆଖିରେ ଚୌର୍ଯ୍ୟ ଅଞ୍ଜନ ଲଗାଇ ଅଦୃଶ୍ୟ ହୋଇଗଲେ । ଚନ୍ଦ୍ରସେଣ ପୁରରେ ପ୍ରବେଶ କରି ମନ୍ତ୍ରବଳ ରେ ସମସ୍ତଙ୍କୁ ଅଚେତନ କରିଦେଲେ । ତାପରେ ଗୋପନରେ ରାଧାଙ୍କ ଶୟନ କକ୍ଷରେ ପ୍ରବେଶ କରି ଶୟନାବସ୍ଥାରେ ରାଧାଙ୍କୁ ଦେଖିଲେ । ଅତ୍ୟନ୍ତ ଆତୁରତା ବଶତଃ ଲୋଭ ସମ୍ଭାଳି ନ ପାରି ରାଧାଙ୍କୁ କୋଳ କରିବାରୁ ତାଙ୍କର ନିଦ ଭାଙ୍ଗିଗଲା । ସେ କୃଷ୍ଣଙ୍କୁ ହାତରେ ଠେଲି ଦେବାରୁ କୃଷ୍ଣ ଭୟରେ ରାଧାଙ୍କ ଗୋଡ଼ ଧରିପକାଇ କାକୁତି ମିନତି କଲେ । ରାଧା କିନ୍ତୁ ସେଥିରେ ତରଳିଲେ ନାହିଁ । ବରଂ ପାଦରେ ପ୍ରହାର କରି ଚୋର ଚୋର ବୋଲି ପାଟି କଲେ । କୃଷ୍ଣ ଭୟରେ ଏକମୁହାଁ ହୋଇ ଧାଇଁ ପଳାଇଲେ । ତାଙ୍କୁ ଆଉ କିଛି ଭଲ ଲାଗିଲା ନାହିଁ । ସେ ଗୋଗୋଷ୍ଠ ଧରି ବନକୁ ଗଲେ । ଅବସାଦ ଗ୍ରସ୍ତ ଚିତ୍ତରେ ବିଷଣ୍ଣ ମନରେ ଏକାକୀ ବସି ଚିନ୍ତା କରିବାକୁ ଲାଗିଲେ । ଉନ୍ମାଦ ଭାବ ପ୍ରକାଶିତ ହେଲା । ଏତିକିବେଳେ ବ୍ରହ୍ମା ଆବିର୍ଭୂତ ହୋଇ ତାଙ୍କୁ ମୋହନ ମୁରଲୀ ପ୍ରଦାନ କରି ଅନ୍ତର୍ଦ୍ଧାନ ହେଲେ । ତାପରେ କାମସେନୀ ସେଠାରେ ପହଂଚି ପ୍ରୀତିଯୋଗ୍ୟ ସମ୍ବାଦ ଦେଇ କହିଲା ଯେ, 'ରାଧାଙ୍କ ସେହି ଠାଣି ପଣ ଆଉ ନାହିଁ, ଗର୍ବ ଖର୍ବ ହୋଇଛି । ସେ ଗୋଟିଏ ଯାକ ଏବେ ତୁମର' । କୃଷ୍ଣଙ୍କ ମୁଖମଣ୍ଡଳରୁ ଅଷ୍ଟ୍ରିର ସ୍ମିତହାସ୍ୟ ଝରି ପଡ଼ିଲା । ସୁସମ୍ବାଦରେ ଆଶାୟୀ ଶ୍ରୀକୃଷ୍ଣକାର୍ଯ୍ୟସିଦ୍ଧି ପାଇଁ ଗୋପେଶ୍ୱରଙ୍କୁ ଶତମୁଦ୍ରାର ପୂଜା ଦେବାକୁ ମନାସିଲେ ।

ଦିନେ ରାଧା ଯମୁନା କୂଳକୁ ଯାଇଥିଲେ । କଦମ୍ବ ବୃକ୍ଷ ମୂଳେ ନବରଙ୍ଗିଆ କୃଷ୍ଣଙ୍କ ଅପୂର୍ବ ମୂର୍ତ୍ତି ଦେଖି ତାଙ୍କର ଆଖି ଖୋସି ହୋଇଗଲା । ସେ କେବେ ଏହିପରି ମୋହନମୂରତି ଦେଖି ନଥିଲେ । ସଖୀଠାରୁ ଏହାଙ୍କ ପରିଚୟ ଜିଜ୍ଞାସା କରିବାରୁ "ଆଳି କହେ କରତାଳି ମାରି, ବାତୁଳ ହେଲୁକି କୃଶୋଦରୀ ଏ ନନ୍ଦ ନନ୍ଦନ ଜଗତ ବନ୍ଦନ, ଯେ ମନସ୍ୱୈରିନ୍ତ୍ର ଆଖି ଠାରି, ଗୋ, ସେହି ଏହି, ତୁମ୍ଭ ସ୍ନେହ ପରସ ଗ୍ରାହକ ସେହି ।" ଏଥର ରାଧାଙ୍କ ମତିଗତିରେ ଶୁଭଂକର ପରିବର୍ତ୍ତନ ଲକ୍ଷ୍ୟ କରି କୃଷ୍ଣ ଉତ୍ସାହିତ ହୋଇ ସଖା ମଧୁମଙ୍ଗଳ

ହାତରେ ଚିଠାଉ ପ୍ରେରଣ କଲେ । ରାଧା ଚିଠାଉ ପଢ଼ି ଆନନ୍ଦିତ ହେଲେ ଓ ସଖୀମାନଙ୍କୁ ପଢ଼ିବାକୁ ଦେଲେ । ସବୁଆଡେ ଆନନ୍ଦର ଲହରୀ ଖେଳିଗଲା । କୃଷ୍ଣ ମୋହନ ମୂରଲୀ ବଜାଇଲେ । ସେଥିରେ ଚତୁର୍ଦ୍ଦଶ ପୁର ଉଚ୍ଛନ୍ନ ହେଲ । କୃଷ୍ଣ ମାୟାରେ ସମସ୍ତେ ସ୍ତବ୍ଧ ହୋଇଗଲେ । ରାଧା, ମୋହନ ମୂରଲୀର ରାଧା ରାଧା ଧ୍ୱନି ଶୁଣି ଅଚେତ ହୋଇଗଲେ । ଚେତା ପାଇବା ପରେ ସଖୀ ଲେଖିଲ ପରି ଶ୍ରୀକୃଷ୍ଣଙ୍କ ଚିଠିର ଉତ୍ତର ନିଜେ ଲେଖି ଦୂତୀ ବୃନ୍ଦାବତୀଙ୍କ ହାତରେ କୃଷ୍ଣଙ୍କ ନିକଟକୁ ପଠାଇଲେ । ବୃନ୍ଦା ଯମୁନା କୂଳରେ କୃଷ୍ଣଙ୍କୁ ଭେଟି ପତ୍ର ପ୍ରଦାନ କଲେ । ରାଧାଙ୍କ ଦୁର୍ବିସହ ବିରହ ବ୍ୟଥା ବର୍ଣ୍ଣନା କରି ଆଉ ମୂରଲୀ ବାଦନ ନ କରିବାକୁ ଅନୁରୋଧ କଲେ । ନିକଟରେ ଥିବା ନିଭୃତ ନିକୁଞ୍ଜକୁ ଶ୍ରୀକୃଷ୍ଣଙ୍କ ସମ୍ମତି କ୍ରମେ ମିଳନର ସଂକେତ ସ୍ଥଳ ଭାବରେ ନିଶ୍ଚିତ କରି ବୃନ୍ଦାବତୀ ରାଧାଙ୍କ ନିକଟକୁ ଫେରି ଆସିଲେ । ବାଟରେ ଏକଥା ପୌର୍ଣ୍ଣମାସୀଙ୍କୁ ଜଣାଇଲେ । ମିଳନ ପର୍ବ ପାଇଁ ସୁପରିକଳ୍ପିତ ଯୋଜନା ଚୂଡ଼ାନ୍ତ ରୂପ ନେଲା । ରାଧା ନିର୍ଦ୍ଦିଷ୍ଟ ଦିନ ଓ ନିର୍ଦ୍ଦିଷ୍ଟ ସମୟରେ ଅଭିସାରିକା ସାଜି ସଖୀମାନଙ୍କ ଗହଣରେ ଯାଇ କୁଞ୍ଜରେ ଉପସ୍ଥିତ ହେଲେ । ସଖୀମାନେ ରାଧା ଓ କୃଷ୍ଣଙ୍କୁ ବଳାତ୍କାରରେ ଟାଣିନେଇ ଦୁହିଙ୍କର ମିଳନ ପର୍ବ ସମ୍ପାଦନ କଲେ । ରାଧା ଶ୍ରୀକୃଷ୍ଣଙ୍କ ଗଳାରେ ପଦ୍ମମାଳ ଓ ଶ୍ରୀକୃଷ୍ଣ ରାଧାଙ୍କ ଗଳାରେ ରତ୍ନମାଳୀ ଲମ୍ବାଇ ଦେଇ ଗାନ୍ଧର୍ବ ମତରେ ବିବାହ କର୍ମ ସମ୍ପନ୍ନ କଲେ । ବ୍ରଜବାଳୀମାନେ ହୁଳହୁଳି ଦେଲେ । ବୃକ୍ଷରେ ପକ୍ଷୀମାନେ ଧ୍ୱନି ଛଳରେ ବେଦମନ୍ତ୍ର ପାଠକଲେ । ସ୍ୱର୍ଗରେ ଦୁନ୍ଦୁଭି ବାଜିଲା । ଅପସରାମାନେ ନୃତ୍ୟକଲେ । ରାଧାକୃଷ୍ଣଙ୍କ କୁଞ୍ଜଲୀଳା ଓ ନିଶାନ୍ତ କାଳ ଲୀଳା ପରେ ପ୍ରଥମ ପୂର୍ବରୁ ଯେ ଯାହା ଗୃହକୁ ପ୍ରତ୍ୟାବର୍ତ୍ତନ କଲେ । ପ୍ରଭାତ ହେଲା । ପ୍ରେମମୟୀ ରାଧାଙ୍କ ଗୁଣ କୀର୍ତ୍ତନରେ କୃଷ୍ଣ ମୁଖର ହେଲେ । ଶ୍ରୀରୂପମଞ୍ଜରୀ ସହିତ ଶ୍ରୀକୃଷ୍ଣଙ୍କ ମିଳନ ପରେ ଗ୍ରନ୍ଥାନୁକ୍ରମଣୀ ଦେଇ କବି କାବ୍ୟ ସମାପ୍ତ କରିଛନ୍ତି ।

କବିଙ୍କ ଲେଖନୀରୁ ଦୁଇଟି କାଳ୍ପନିକ କାବ୍ୟର ଆବିର୍ଭାବ ପରେ ବୈଷ୍ଣବୀୟ ଚେତନା ସମୃଦ୍ଧ ଏହି କାବ୍ୟଟି ଆତ୍ମପ୍ରକାଶ କରିଛି । ଏଥିରେ ରୀତିଯୁଗୀୟ ଶବ୍ଦ ପାଣ୍ଡିତ୍ୟ ପ୍ରଦର୍ଶନର ପ୍ରଚେଷ୍ଟା ନାହିଁ, ସ୍ୱାଃର ସୁଲଳିତ କୋମଳ ଧାରା ସ୍ୱଚ୍ଛନ୍ଦ ଗତିରେ ପ୍ରବାହିତ ହୋଇ କାବ୍ୟର ଭାବ ବିଭବ ବ୍ୟକ୍ତ କରିବାରେ ଏକାନ୍ତ ସମର୍ଥ ହୋଇ ପାରିଛି । ଏଥିରେ ରାଧାକୃଷ୍ଣଙ୍କ ପୂର୍ବଜନ୍ମ ବୃତ୍ତାନ୍ତ ନାହିଁ । କିମ୍ବା ସେମାନଙ୍କର ବାଲ୍ୟଲୀଳା ବର୍ଣ୍ଣିତ ହୋଇନାହିଁ । ଅଷ୍ଟ ଯୂଥପତି ମାନଙ୍କ ମଧ୍ୟରେ ସର୍ବଶ୍ରେଷ୍ଠା ଚନ୍ଦ୍ରାବଳୀ

ଓ ରାଧାଙ୍କ ସହିତ କୃଷ୍ଣଙ୍କର ପ୍ରେମଲୀଳା ବର୍ଣ୍ଣନା ଏହାର ମୁଖ୍ୟଉପଜୀବ୍ୟ ବସ୍ତୁ । ସମଗ୍ର କାବ୍ୟରେ ଏହି ପ୍ରେମ ବ୍ୟାପାର ର ବିବିଧ ବିସ୍ତାର ଓ ବିକଚ ବିକାଶ ସାଧନ କରାଯାଇଛି । ଅବଶ୍ୟ ଧେନୁ ମାନଙ୍କ ସହିତ ବନରୁ କୃଷ୍ଣଙ୍କ ଗୃହ ପ୍ରତ୍ୟାବର୍ତ୍ତନ ସମୟରେ ପ୍ରକାଶିତ ଯଶୋଦାଙ୍କ ମାତୃଲାଳସା ସମଗ୍ର ଛାନ୍ଦମାନଙ୍କ ମଧ୍ୟରେ ଗୋଟିଏ ପ୍ରମୁଖ ନିରୂପଣ ଉପ୍ତି ବନ୍ତ, ଏହାର ଯୋଜନା ଯେପରି ଅସାଧାରଣ ତଥା ସାପେକ୍ଷ, ଏହାର କଳ୍ପନା ସେପରି ପ୍ରଚଣ୍ଡ ପ୍ରତିଭାଦୀପ୍ତ । ସ୍ନେହମୟୀ ଜନନୀର ହୃଦ୍‌ଗତ ବାତ୍ସଲ୍ୟ ମମତା ପ୍ରକାଶନରେ ଚିରନ୍ତନ ଆବେଦନର ସ୍ପର୍ଶ ପାଠକ ମାନେ ସମସ୍ତଙ୍କୁ ମୁଗ୍ଧ ଚକିତ କରିଦିଏ । ଚନ୍ଦ୍ରାବଳୀ କୃଷ୍ଣ ଓ ରାଧାକୃଷ୍ଣଙ୍କ ଯୁଗଳଲୀଳା କୀର୍ତ୍ତନ ବୃନ୍ଦାବନ ଗୋସ୍ୱାମୀମାନଙ୍କଠାରୁ ଧାରକରା ବିଷୟ ହେଲେ ମଧ୍ୟ କବିଙ୍କ ସ୍ୱକୀୟ କଳ୍ପନା ବିଳାସ ଓ କବିତ୍ୱପୂର୍ଣ୍ଣ ଦକ୍ଷତାର ସ୍ପର୍ଶରେ ତାହା ନିତ୍ୟ ନୂତନ ରୂପ ଗ୍ରହଣ କରିଛି । ଏତଦ୍ ବ୍ୟତୀତ ଭାବାନୁସାରୀ ଭାଷାପ୍ରୟୋଗ, ଅଜସ୍ର ବିନ୍ୟସ୍ତ ବିବିଧ ଅଳଙ୍କାର, ସୁଲଳିତ ଛାନ୍ଦ ଓ ରାଗରାଗିଣୀର ଝଙ୍କାର, ଶୃଙ୍ଗାର ରସର ଚମତ୍କାର ଅଭିବ୍ୟଞ୍ଜନ, ଲାଳିତ୍ୟପୂର୍ଣ୍ଣ ଶବ୍ଦ ପ୍ରୟୋଗ, ରୀତି, ବୃତ୍ତି ଓ ବର୍ଣ୍ଣବିନ୍ୟାସଗତ କୌଶଳରେ ସମଗ୍ର କାବ୍ୟଟି ସୁପାଠ୍ୟ ଓ ଉପଭୋଗ୍ୟ ହୋଇପାରିଛି ।

## ଯୁଗଳ ରସାମୃତ ଭଉଁରୀ

କବି ମଧୁପୁର ରାଜ୍ୟରେ ଥିବାବେଳେ ଏ ଗ୍ରନ୍ଥ ରଚନା କରିଥିଲେ । ସଦାନନ୍ଦ ଯୁଗଳ ରସାମୃତ ଲହରୀ କାବ୍ୟର ଶେଷରେ ଘୋଷଣା କରିଛନ୍ତି ଯେ ଯଦ୍ୟପି ସେ ଏ କାବ୍ୟରେ ଶ୍ରୀକୃଷ୍ଣଙ୍କର ମାଧୁର୍ଯ୍ୟ ଲୀଳା ବର୍ଣ୍ଣନା କରିଛନ୍ତି; ତଥାପି ଏଥିରେ ମାନରସ ଲୀଳା ବର୍ଣ୍ଣିତ ହୋଇନାହିଁ । ତାହା ସେ ଗୋଟିଏ ସ୍ୱତନ୍ତ୍ର କାବ୍ୟ ଯୁଗଳ ରସାମୃତ ଭଉଁରୀରେ ବର୍ଣ୍ଣନା କରିବେ । କବିଙ୍କ ବ୍ରଜଲୀଳା ବର୍ଣ୍ଣନାର ଯୋଜନା ଅନୁସାରେ ଏଠାରେ ରାଧାକୃଷ୍ଣଙ୍କ ମାନସ ଲୀଳା ବର୍ଣ୍ଣିତ । ଏହା ମାଧୁର୍ଯ୍ୟ ଲୀଳାର ଗୋଟିଏ ସମ୍ମୁଖ ଦିଗ, ଲହରୀ ପାଠକର ସାରିବା ପରେ ପାଠକ ଭଉଁରୀରେ ବିଶେଷ କିଛି କବିତ୍ୱପୂର୍ଣ୍ଣ ବୈଶିଷ୍ଟ୍ୟର ନୂତନ ଦିଗନ୍ତ ଖୋଜି ପାଏ ନାହିଁ । କବି କର୍ମ ଓ କୌଶଳରେ ଗତାନୁଗତିକତାର ସ୍ୱାକ୍ଷର ସ୍ପଷ୍ଟ । ଅଠରକଳଶୀ ଛାନ୍ଦରେ ରଚିତ ଏ କାବ୍ୟରେ ସେହି କୃଷ୍ଣଲୀଳା ବର୍ଣ୍ଣିତ । ଶବ୍ଦାଳଙ୍କାରର ବାହୁଲ୍ୟ ଓ ଅର୍ଥାଳଙ୍କାର ରସନିପୁଣ ଯୋଜନାରେ କାବ୍ୟ ଟି ସମୃଦ୍ଧ । ସାମ୍ପ୍ରଦାୟିକ ବୈଷ୍ଣବ ଚେତନା

ପ୍ରତି କବିଙ୍କ ପକ୍ଷପାତିତା ଏଥିରେ ପ୍ରବଳ ଅନୁଭୂତହୁଏ । ସଦାନନ୍ଦଙ୍କ ମତରେ ଯେଉଁମାନେ ରାଧାକୃଷ୍ଣଯୁଗଳ ଉପାସନା ରହୁପାସନା ନାହିଁ ସେମାନଙ୍କଜନ୍ମର ମାନବ ଜୀବନ ବ୍ୟର୍ଥତାରେ ପର୍ଯ୍ୟବସିତ ହୁଏ । ଆଉ ଯେଉଁମାନେ କବି ହୋଇ ଯୁଗଳ ଲୀଳା କୀର୍ତ୍ତନ କରି ନାହାନ୍ତି ସେମାନଙ୍କର କବିତ୍ୱ ମଧ୍ୟ ବୃଥା ଆସ୍ଫାଳନର ଅଳୀକ ଚେଷ୍ଟାରେ ପରିଣତ ହୋଇଛି । ଏଣୁ ସେ ଉପେନ୍ଦ୍ର ଭଞ୍ଜ ଓ ଲୋକନାଥ ବିଦ୍ୟାଧର ପ୍ରଭୃତି ପ୍ରତିଷ୍ଠିତ କବିଙ୍କୁ କବି-ସମାଜରେ ସମୁଚିତ ସ୍ଥାନ ଦେବାପାଇଁ କୁଣ୍ଠିତ । ଦୀନକୃଷ୍ଣ ଓ ଭୂପତି ପଣ୍ଡିତ ଉତ୍କୃଷ୍ଟ କୃଷ୍ଣଲୀଳା ଗାନ କରିଥିଲେ ମଧ୍ୟ ଚୈତନ୍ୟପନ୍ଥୀ ହୋଇନଥିବାରୁ ସେମାନଙ୍କ ପ୍ରତି ଯଥାଯୋଗ୍ୟ ଗୁରୁତ୍ୱ ଆରୋପିତ ହୋଇନାହିଁ । କବି ସ୍ପଷ୍ଟଭାବରେ ଉଲ୍ଲେଖ କରିଛନ୍ତି ଯେ, ଚୈତନ୍ୟ ପନ୍ଥୀ ବୈଷ୍ଣବ ଚେତନା ପ୍ରତି ଅନୁରାଗ ନଥିଲେ ଏ ଗ୍ରନ୍ଥରେ ଯେ କୌଣସି ପାଠକର ଅଭିନିବେଶ ଆଶା କରାଯାଇ ନପାରେ । ଏ ସବୁ ସତ୍ତ୍ୱେ କବିଙ୍କର ଧର୍ମନିଷ୍ଠା ଓ ତନ୍ମ-ୟତାର ସୁସ୍ଥଳତା ଗ୍ରନ୍ଥଟିର ଛନ୍ଦେ ଛନ୍ଦେ ସବିଶେଷ ବିକଶିତ । ସ୍ୱାଭାବିକ ସରଳ ତରଳ ଭାବବ୍ୟଞ୍ଜନାର ସହଜ ସୁନ୍ଦରପୂର୍ଣ୍ଣ ଅଭିବ୍ୟକ୍ତି, କବିଙ୍କର ଅକ୍ଷର କୀର୍ତ୍ତିର ସମୁଜ୍ଜ୍ୱଳ ନିଦର୍ଶନ ରୂପେ ଏଠାରେ ଚିର ଭାସ୍ୱର, ।

## ପ୍ରେମ ତରଙ୍ଗିଣୀ

ସଦାନନ୍ଦ କବିସୂର୍ଯ୍ୟ ବ୍ରହ୍ମାଙ୍କ ଏହା ଗୋଟିଏ ଉତ୍କୃଷ୍ଟ ବୈଷ୍ଣବ କାବ୍ୟ । ଆଦ୍ୟୋପାନ୍ତ କାବ୍ୟଟିରେ ପ୍ରେମର ତରଙ୍ଗ ସୃଷ୍ଟି ହୋଇଛି । ଏ କାବ୍ୟଟି ଅପେକ୍ଷାକୃତ କ୍ଷୁଦ୍ର ପରିସର ବିଶିଷ୍ଟ ଛତିଶିଟି ଛାନ୍ଦରେ ସମ୍ପୂର୍ଣ୍ଣ ହୋଇଥିଲେ ମଧ୍ୟ ଛାନ୍ଦ ଗୁଡ଼ିକ ଅତ୍ୟନ୍ତ ରସାଳ ଓ ପ୍ରେମାତ୍ମକ ସୂକ୍ଷ୍ମ ଅନୁଭୂତିର ବର୍ଣ୍ଣାଢ୍ୟ ଚିତ୍ରରେ ଋଦ୍ଧିମନ୍ତ, ରସ ଅନୁଭବୀ ମାନଙ୍କୁ ପରକୀୟା ପ୍ରୀତିର ମାଧୁର୍ଯ୍ୟ ଆସ୍ୱାଦନ କରାଇବା ଲକ୍ଷ୍ୟରେ ଗ୍ରନ୍ଥର ପରି-କଳ୍ପନା କରାଯାଇଛି ।

ପରବଧୂ ପରପୁରୁଷ ରାଧାକୃଷ୍ଣ ପ୍ରୀତି
ଅନ୍ୟାନ୍ୟରେ ପ୍ରାପ୍ତି ଲୋଭେ ଝୁରି ଝୁରି ନିତି ।

ଏହିପରି ଝୁରି ଝୁରିର ପରିଣତି ସ୍ୱରୂପ ଭାଗ୍ୟ ବଶତଃ ଦିନେ ଦିନେ କୌଣସି ସ୍ଥଳରେ ମିଳନ ସଂଘଟିତ ହେଲେ ପରମାନନ୍ଦ ପରିବର୍ତ୍ତିତ

ହୁଏ । କବି ରାଧାକୃଷ୍ଣ ମିଳନର ଏକ ଏକ ଦିନର ଘଟଣାକୁ କାବ୍ୟର ବିଷୟ କରି ବର୍ଣ୍ଣନା କରିଛନ୍ତି । "ଏଣୁ ମୁଁ ଏକ ରଜନୀ ମିଳନ କହିବି, ଆସ୍ୱାଦନ କରନ୍ତୁ ସେ ରସ ଅନୁଭବୀ" । କବି ଗୀତଗୋବିନ୍ଦ କାର ଜୟଦେବଙ୍କ ପରି କାବ୍ୟର ଆଭିମୁଖ୍ୟ ବର୍ଣ୍ଣନା କରି ଲେଖିଛନ୍ତି— ରାଧାକୃଷ୍ଣ ପ୍ରେମଲୀଳା ରସରୂପକ ପ୍ରେମତରଙ୍ଗିଣୀ - ସରରେ ବୈଷ୍ଣବ ମାନସ ହଂସ ବିହାର କରୁ ଅଥବା ସଙ୍ଗୀତ' ସାହିତ୍ୟ ଓ କାବ୍ୟନୀତିର ବିଦଗ୍ଧ "ରସିକ ଗ୍ରାହକ ଏଥି ମନ ବୁଡ଼ାଇ" । ଧାର୍ମିକ ଓ ସାହିତ୍ୟ ରସିକ ପାଇଁ ବହୁ ନିର୍ମଳ ଅନୁଭବ ପୂର୍ଣ୍ଣ କବିହୃଦର ସ୍ୱଚ୍ଛନ୍ଦ ଧାରା ଏଠି ପ୍ରବାହିତ ହୋଇଛି । ପ୍ରଥମ ଛାନ୍ଦରେ କବି ମଙ୍ଗଳାଚରଣ କରି କୃଷ୍ଣ ଓ ରାଧାଙ୍କୁ 'ସର୍ବେଶ୍ୱର ଓ ସର୍ବେଶ୍ୱରୀ' 'ରସିକ ରସିକା ଶିରୋମଣି' ବୋଲି ବର୍ଣ୍ଣନା କରିଛନ୍ତି । ମହାପ୍ରେମ ମଦରେ ଅହର୍ନିଶି ଉନ୍ମତ୍ତ ରାଧାକୃଷ୍ଣ ଅନାଗତ ବିରହ ଆଶଙ୍କାରେ ଆତଙ୍କିତ ହୋଇ ଉଠୁଛନ୍ତି । ରାଧା 'ମହାଭାବ ରୂପା' ଓ କୃଷ୍ଣ 'ରସରାଜ, ରସାଳସରେ ଦୁହିଙ୍କ ନୟନ ଘୂର୍ଣ୍ଣାୟମାନ । 'ଅପ୍ରାକୃତ ଅନଙ୍ଗରେ ପୀଡ଼ିତ ହୃଦୟ' ରାଧାକୃଷ୍ଣ ପରକୀୟା ପ୍ରୀତିରସ ଆକଣ୍ଠ ଆସ୍ୱାଦନ କରି ପରସ୍ପର ପ୍ରାପ୍ତି ଲୋଭରେ ଅତ୍ୟନ୍ତ ଆସକ୍ତ । ଏହି ମହାଭାବ ଚିରନ୍ତନ ହେଲେ ମଧ୍ୟ ଧରଣୀରେ ପୁନଃ ପ୍ରତିଷ୍ଠା ପାଇଁ ଶ୍ରୀକୃଷ୍ଣ ଗୌରାଙ୍ଗ ରୂପରେ ନବଦ୍ୱୀପରେ ଜନ୍ମ ଗ୍ରହଣ କଲେ । ତାଙ୍କର ଆବିର୍ଭାବ ହିଁ ସର୍ବଜନ ହୃଦୟରେ ବ୍ରଜଭାବ ସଞ୍ଚାର କଲା । କବି ଖେଦ ପ୍ରକାଶ କରି କହିଛନ୍ତି ଗୌରାଙ୍ଗ ରାଧାକୃଷ୍ଣ ଯୁଗଳମୂର୍ତ୍ତିର ପ୍ରେମମୟ ଅବତାର ହେଲେ ମଧ୍ୟ ଆଜି କେହି ତାହାକୁ ଯଥାର୍ଥ ଭାବରେ ଅନୁଭବ କରିପାରୁ ନାହାନ୍ତି । ସତେ ଯେପରି ଧର୍ମର ଅବକ୍ଷୟ କାଳ ଉପସ୍ଥିତ । ପ୍ରେମ ଭକ୍ତି ଚେତନାରେ ଜ୍ଞାନର ସ୍ଥାନ ଉଚ୍ଚ । ତେଣୁ "ଏବେ ଜ୍ଞାନୀଙ୍କ କର୍ମରେ ଭୁବନ ଭରିଲା । ଗୌରାଙ୍ଗଙ୍କି ତତ୍ତ୍ୱ ତାହା କେହି ନ ପରଖିଲା ।" ଭଗବାନଙ୍କ ମାଧୁର୍ଯ୍ୟଲୀଳା ତୁଳନାରେ ଐଶ୍ୱର୍ଯ୍ୟ ଲୀଳା ନିଷ୍ଠାରେ ଚାଲିଛି । ଏଣୁ ମାଧୁର୍ଯ୍ୟ ପୂର୍ଣ୍ଣ ରାଧାକୃଷ୍ଣ ପରକୀୟା ପ୍ରୀତିଲୀଳା ଭକ୍ତମାନଙ୍କର ପରମ ଆରାଧ୍ୟ ବସ୍ତୁ ।

କବି 'ଅଳପ ରୁଚିର ଭଲ' ବୋଲି ମତାମତ ବ୍ୟକ୍ତ କରି ଯଥା ସମ୍ଭବ କ୍ଷୁଦ୍ର ଛାନ୍ଦମାନଙ୍କରେ ଏହି ମାଧୁର୍ଯ୍ୟ ଲୀଳାର ଦିନଦିନକର ମଧୁର ମିଳନ ଘଟଣାକୁ ଚର୍ଚ୍ଚିତ କରିଛନ୍ତି । ପ୍ରେମତରଙ୍ଗିଣୀର ଷଟ୍‌ତ୍ରିଂଶ ଛାନ୍ଦଟି ଗୁରୁତ୍ୱପୂର୍ଣ୍ଣ । ଏଥିରେ କବି ରାଧାକୃଷ୍ଣଙ୍କର ପରକୀୟା ପ୍ରୀତିରସର ବିବିଧ ବୈଚିତ୍ର୍ୟକୁ ଦଶଗୋଟି ପ୍ରବାହରେ ବର୍ଣ୍ଣନା କରି, ମାଧୁର୍ଯ୍ୟଲୀଳାର ଚରମୋତ୍କର୍ଷ ପ୍ରତିପାଦନ କରିଛନ୍ତି ।

ପ୍ରସଙ୍ଗକ୍ରମେ କବି ଚୈତନ୍ୟଙ୍କଠାରୁ ଆସିଥିବା କଣ ସ୍ୱ-ଗୁରୁ ପରମ୍ପରାର ସୂଚନା ମଧ୍ୟ ଦେଇଛନ୍ତି । ରାଧାକୃଷ୍ଣ ଓ ଚନ୍ଦ୍ରାବଳୀ କୃଷ୍ଣ ସମ୍ଭୋଗ ଲୀଳାର ବହୁବିଭାବ ଏଥିରେ ପ୍ରକାଶଲାଭ କରିଛି ।

ନାୟକ କୃଷ୍ଣଙ୍କର ନାୟିକା ସହିତ ପ୍ରୀତିର ପୂର୍ବରାଗ, ବିରହ, ମିଳନ ଓ ସମ୍ଭୋଗ ବର୍ଣ୍ଣନାରେ କବିଙ୍କ ଅନ୍ୟାନ୍ୟ କାବ୍ୟମାନଙ୍କ ଅପେକ୍ଷା ବିଶେଷ କିଛି ସ୍ୱାତନ୍ତ୍ର୍ୟ ପରିଲକ୍ଷିତ ହୁଏ ନାହିଁ । ଅବଶ୍ୟ ସ୍ଥଳବିଶେଷରେ ପଦେଅଧେ ମର୍ମସ୍ପର୍ଶୀ ବର୍ଣ୍ଣନା ଦେଖିବାକୁ ମିଳେ । ନାୟକ ନାୟିକାର ପ୍ରୀତି ଦିନାନୁଦିନ ଗାଢ଼ତର ହେବାପାଇଁ ଲେଖା—

"ସମାନବୟସ୍କ ସମାନ ସୁନ୍ଦର, ସମାନଗୁଣ ସମାନ କେଳିର
ସମାନ ସ୍ନେହ ଅଧୀନତାମନ, ଏ ଦୁହିଁଙ୍କ ମଧ୍ୟେ ପ୍ରୀତିବର୍ଦ୍ଧନ ।
ସେ ଯାହା କରିଏ, କାଠ କଣ୍ଢେଇ ନାହିଁଅ ପରାଏ ।।"

ଅଭିମନ୍ୟୁ ସାମନ୍ତସିଂହାରଙ୍କ ବିଦଗ୍ଧ ଚିନ୍ତାମଣିରେ ଏହାର ପ୍ରତିଧ୍ୱନି ଲକ୍ଷ୍ୟ କରିବାର କଥା । କବି ପ୍ରସଙ୍ଗକ୍ରମେ ବିଭିନ୍ନ ଋତୁ ଚିତ୍ର ଆଙ୍କିଛନ୍ତି ଓ ସେହି ବର୍ଣ୍ଣନାଗୁଡ଼ିକୁ ପ୍ରେମ ବିକାଶର ଉଦ୍ଦୀପନ ବିଭାବ ହିସାବେ ଅଂକିତ କରିଛନ୍ତି ।

ଏଠାରେ ଗୋଟିଏ ଲକ୍ଷଣୀୟ ବିଷୟ ହେଉଛି ଯେ, କବି ପରକୀୟା ପ୍ରୀତି ମୂର୍ଚ୍ଛିତ ରାଧାକୃଷ୍ଣ ଯୁଗଳ ପ୍ରେମଲୀଳାର ଉପାସକ । 'କିନ୍ତୁ ପ୍ରାୟ ସବୁ କାବ୍ୟରେ ପୁରାଣ କଥା ଓ କିମ୍ବଦନ୍ତୀର ଆଶ୍ରୟ ନେଇ କବି ପରକୀୟା ପ୍ରେମକୁ ସ୍ୱକୀୟା ପ୍ରେମ ସ୍ତରରେ ସିଦ୍ଧ କରିବା ପାଇଁ ଚେଷ୍ଟା କରିଛନ୍ତି । ଏ ଚେଷ୍ଟାର ବିଭିନ୍ନ ଧାରା ତାଙ୍କର ପ୍ରାୟ ସମସ୍ତ କାବ୍ୟରେ ବିଚ୍ଛୁରିତ । ଏହି ପ୍ରେମତରଙ୍ଗିଣୀରେ ପରବଧୂ ରାଧା କପରି ପରପୁରୁଷ କୃଷ୍ଣଙ୍କ ପ୍ରତି ନିଜର ଆସକ୍ତି ଜନିତ ଗର୍ହିତ କାର୍ଯ୍ୟ କଳାପକୁ ଯୁକ୍ତିସିଦ୍ଧ କରୁଛନ୍ତି ତାହା ଦେଖିବାର କଥା ।

"ପ୍ରାଣ ନାଥଙ୍କୁ ବୋଲୁ ପରପୁରୁଷ,
ଯେଉଁ ବନ୍ଧୁ ଆମ୍ଭର ଧନ ସର୍ବସ୍ୱଲୋ ।
କର ଗ୍ରହଣ ମାତ୍ର ଅଭିମନ୍ୟୁର,
କୃଷ୍ଣ କେବଳ ମୋର ପ୍ରାଣ ଈଶ୍ୱରଲୋ ।
ଷଣ୍ଢ ପୁରୁଷ ହେଲେ ଲାଗନ୍ତା ଦୋଷ,
କର୍ମ ନିଷେଧ ନପୁଂସକେ ପ୍ରକାଶଲୋ ।

କୃଷ୍ଣ ବୋଲନ୍ତି ଚନ୍ଦ୍ରସେନ ମୁଁ ଏକ,
ଦେହ ପ୍ରାଣ ଘେନିଏ ମନରେ ତର୍କ କଲେ ।
ରତି ଆସ୍ୱାଦନକୁ ଦୁଇ ପ୍ରକାର,
ଏ ହେତ୍ୟ ଯେତେକ ପାପ-ଶ୍ରୀରେ ପସ୍ପର କଲେ ।
ତଥାପି ବୃନ୍ଦାବନ ଶୁଣିଛୁ କର୍ଣ୍ଣେ,
କୃଷ୍ଣ ଅବ୍ୟୟ ହଙ୍କ କଲା ସମ୍ପୂର୍ଣ୍ଣେ ।
ପୁରୁଷ ଯେଣୁ ଏକା ସମସ୍ତେ ଶକ୍ତି,
ତେବେ ଉଚିତ ହେଲା ତାରେ ଆଶକ୍ତଲେ ।

ସାମ୍ପ୍ରଦାୟିକ ଧର୍ମଚେତନା ଦୃଷ୍ଟିରୁ ଚଉତିଶା ପ୍ରେମଲୀଳା ର ମହତ୍ତ୍ୱ ପ୍ରତି ସାଧାରଣ ଦୃଷ୍ଟିରେ ଅବଜ୍ଞା ପ୍ରଦର୍ଶନ କରି ଦେଖିଲେ ମଧ୍ୟ ଚିରନ୍ତନ ପ୍ରଣୟୀ ଓ ପ୍ରଣୟିନୀଙ୍କ ଆକୁଳ ଆତ୍ମନିବେଦନର ଯେଉଁ ଅମର ସ୍ୱରଝଙ୍କାର ଏଥିରେ ଅଭିବ୍ୟକ୍ତ ହୋଇଛି ତାହାର ମହତ୍ତ୍ୱ ମଣିଷ ହୃଦୟରେ ପ୍ରେମ ବଳାହର ଆର୍ତ୍ତିକ ଅନୁଭୂତ ଥିବା ପର୍ଯ୍ୟନ୍ତ ଚିର ଦେଦୀପ୍ୟମାନ ହୋଇ ରହିବ ।

## ଚଉତିଶା ଚନ୍ଦ୍ରୋଦୟ

ମୋହନଲତା କାବ୍ୟର ବିବରଣୀ ଅନୁସାରେ ଏହି କାବ୍ୟଟି କବିଙ୍କ ଷଷ୍ଠ ରଚନା । ଏହା ଷୋହଳଟି ଛାନ୍ଦରେ ସମାପ୍ତ ହୋଇଛି । ଏଥିରେ ରାଧା ଓ କୃଷ୍ଣଙ୍କ ଉତ୍ତର ପ୍ରତ୍ୟୁତ୍ତର ମାଧ୍ୟମରେ ପଦ୍ୟଗୁଡ଼ିକ ଲିପିବଦ୍ଧ ହୋଇଅଛି । ଚଉତିଶା ଗୁଡ଼ିକ ମାଧ୍ୟମରେ ପ୍ରଣୟୀ ଓ ପ୍ରଣୟିନୀଙ୍କ ନିବିଡ଼ ପ୍ରେମାନୁଭୂତି ଅଭିବ୍ୟକ୍ତ ଲାଭ କରି ଥିବାରୁ ଏହା ଅତ୍ୟନ୍ତ ହୃଦ୍ୟ ଓ ଅନୁଭୂତି ବ୍ୟଞ୍ଜକ ହୋଇ ପାରିଛି । ମଧ୍ୟଯୁଗୀୟ ଓଡ଼ିଆ ସାହିତ୍ୟରେ ଚଉତିଶା ଲେଖାର ଶୈଳୀ ଓ ପରଂପରାରେ ଚଉତିଶା ଚନ୍ଦ୍ରୋଦୟ କାବ୍ୟଟି ଗୋଟିଏ ଉଜ୍ଜ୍ୱଳ ନିଦର୍ଶନ । ପ୍ରଥମେ ମୁଗ୍ଧା ନାୟିକା ରାଧା, କୃଷ୍ଣଙ୍କ କଥା ଚିନ୍ତା କରି ବିବଶା ହୋଇ ପଡ଼ିଛନ୍ତି । ମନରେ ପ୍ରଜାପତିର ରଙ୍ଗ । ସେ ଭାବିପାରୁ ନାହାନ୍ତି ଯେ, ସେ ବିବାହିତା ଓ ପତିବ୍ରତା ହୋଇଥିଲେ ମଧ୍ୟ କାହିଁକି ତାଙ୍କର ମନ କୂଳାଙ୍କୁର ଲଙ୍ଘନ କରି ପରପୁରୁଷ ପାଇଁ ଏତେ ଉଚ୍ଛନ୍ନ । ଏଥିରୁ ରକ୍ଷା ପାଇବାର ଉପାୟ ଜିଜ୍ଞାସା କରି କୃଷ୍ଣଙ୍କ ନିକଟକୁ ସେ ପତ୍ର ଲେଖିଛନ୍ତି । କୃଷ୍ଣ ଏ ଚିଠି ପାଇ ମନେ ମନେ ଅତ୍ୟନ୍ତ ଆନନ୍ଦିତ ହୋଇବନ୍ତି ଜାଣୁ ନଜାଣିଲା ପରି ଉତ୍ତରରେ ଲେଖିଛନ୍ତି —

ତୁମ୍ଭେ ଲେଖିଲ ଯେଉଁ କଥା, ବୁଝି ନ ପାରିଲି ସର୍ବଥା ।।
କେଉଁବେ କୁଳବତୀ ହୋଇ, କୁଳ ଛାଡ଼ିବ କାହିଁ ପାଇଁ ।।

× × × ×

ମୁଁ ତ ଏସବୁ ବିଷୟରେ ଅତ୍ୟନ୍ତ ଅପାରଗ । ବଡ ଧର୍ମଭୀରୁ । ମୁହିଁ କେବେ କୌଣସି ବ୍ରଜବାଳାକୁ ଛୁଇଁ ପାରେନା । ଏ ସବୁ କଥାକୁ ମୋର ବଡ଼ ଡର ।

ଛୁଇଁ ପଡ଼ିଲେ କରି ସ୍ନାନ । ନ ଚାହେଁ ନାରୀଙ୍କ ବଦନ ।।
ପରସ୍ତ୍ରୀ ହରଣ ଯେ କାର୍ଯ୍ୟ । ପାତକ ମାନଙ୍କର ରାଜ୍ୟ ।।

ରାଧା କୃଷ୍ଣଙ୍କ ଠାରୁ ଏପରି ଗୋଟିଏ ଉତ୍ତର ଆଶା କରି ନଥିଲେ । ପ୍ରଥମେ ସେ ବଡ଼ କଠିନ ହେବାକୁ ସ୍ଥିର କଲେ । କିନ୍ତୁ ପରମୁହୂର୍ତ୍ତରେ ସେ ଆଉ ଧୈର୍ଯ୍ୟ ଧରି ରହି ପାରିଲେ ନାହିଁ । ଏ ବିପତ୍ତିରୁ ରକ୍ଷା ପାଇବାର ଉପାୟ ଚିନ୍ତା କରିବା ପାଇଁ ପ୍ରିୟସଖୀ ଲଳିତା ଓ ବିଶାଖା ସହିତ ପରାମର୍ଶ କରି କହିଲେ — କୃଷ୍ଣଙ୍କୁ "ଭଜିଲେ ଅପବାଦ ନ ଭଜିଲେ ଦୁଃଖ" । କି'ଣ ସେ କରିବେ ବୁଝି ଦିଶୁନାହିଁ । ସଖୀ ଦ୍ୱୟ ନାନା କୌତୁକ କରି ପୁଣି ପତ୍ର ଲେଖାଇଲେ । ଏପରି ନାନା ରହସ୍ୟ ପୂର୍ଣ୍ଣ ପଦଟିଏ ପତ୍ରର ଆଦାନ ପ୍ରଦାନ ପରେ କୃଷ୍ଣଙ୍କ ସହିତ ରାଧାଙ୍କ ମିଳନ ସମ୍ପାଦିତ ହୋଇଛି । ମହୋଲ୍ଲାସମୟ ମିଳନ ପର୍ବ ବର୍ଣ୍ଣନା କରି କବି ଗ୍ରନ୍ଥ ସମାପ୍ତି କରିଛନ୍ତି ।

ଉତ୍କଳ ବିଶ୍ୱବିଦ୍ୟାଳୟର ପୋଥି ବିଭାଗରେ ଏହାର ଗୋଟିଏ ପାଣ୍ଡୁଲିପି ସୁରକ୍ଷିତ ହୋଇଛି । କାବ୍ୟଟି ଅତ୍ୟନ୍ତ ସରଳ ତରଳ ଭାଷାରେ ଲିଖିତ । ପ୍ରେମ ଗର୍ଭିତ ଉକ୍ତି ପ୍ରତ୍ୟୁକ୍ତି ଓ ଆଳାପ ଆଲୋଚନା ଗୁଡ଼ିକ ଅତ୍ୟନ୍ତ ଚମତ୍କାର ଓ ଭାବବ୍ୟଞ୍ଜକ । ପ୍ରଣୟୀ ଓ ପ୍ରଣୟିନୀଙ୍କ ମାନସିକ ଗ୍ଲାନି, ଆଶଙ୍କା, ଚିନ୍ତା, ମୋହ, ମଧୁର ସ୍ମୃତି, ହର୍ଷ, ଆବେଗ ପୁଲକ ଇତ୍ୟାଦିର ବିଶ୍ଳେଷଣ ଓ ଆଲେଖ୍ୟ ଦେଇ ଚମକପ୍ରଦ ହୋଇ ପାରିଛି । କୌଣସି ଗୂଢ଼ାର୍ଥ ବିଶିଷ୍ଟ ପଦ ରଚନା କରି ଭାବଧାରାର ସ୍ୱଚ୍ଛନ୍ଦ ଗତିରେ ଆଦୌ ବାଧା ସୃଷ୍ଟି କରାଯାଇ ନାହିଁ । ସେ ଯଥାର୍ଥରେ କାବ୍ୟର ଆଭିମୁଖ୍ୟ ଘୋଷଣା କରି ଲେଖିଛନ୍ତି —

"ସର୍ବ ଆହ୍ଲାଦକ ହେବ ନିଦାନ
ଗୂଢ଼ାର୍ଥରେ ନାହିଁ ମୋ ପ୍ରୟୋଜନ"

ବାସ୍ତବରେ ଚୈତନ୍ୟ ଚନ୍ଦ୍ରୋଦୟ କାବ୍ୟଟି ଭକ୍ତ, ଅଭକ୍ତ ପଣ୍ଡିତ ଓ ସାଧାରଣ ପାଠକ ନିର୍ବିଶେଷରେ ସମସ୍ତଙ୍କର ଆଦରର ବସ୍ତୁ ହୋଇ ପାରିଛି ।

## ଶ୍ରୀ ନାମ ଚିନ୍ତାମଣି

ଗ୍ରନ୍ଥରେ ନାମ କୀର୍ତ୍ତନର ମାହାତ୍ମ୍ୟ ପ୍ରତିପାଦିତ ହୋଇଛି । କବି ପ୍ରଦତ୍ତ ସୂଚୀ ଅନୁସାରେ ଏହା କବିଙ୍କ ସପ୍ତମ ରଚନା ଓ ଦ୍ୱାଦଶ ଛାନ୍ଦରେ ସମାପ୍ତ । ନାମ ଜପ କରିବାରେ ଆଦର୍ଶ ଭକ୍ତ ଭାବରେ ଅଜାମିଳ, ଜଗାଇ ମାଧାଇ, ପିଙ୍ଗଳା, ଦ୍ରୌପଦୀ, ମୀରାବାଈ ଓ ହରିଦାସ ପ୍ରଭୃତି ବିଶିଷ୍ଟ ଭକ୍ତମାନଙ୍କ କଥା ଉଲ୍ଲେଖ କରାଯାଇଛି । ଏଥିରେ କବି ଶ୍ରୀ ଚୈତନ୍ୟ ଓ ରାଧା କୃଷ୍ଣଙ୍କ ଅଷ୍ଟୋତ୍ତର ଶତ ନାମ କୀର୍ତ୍ତନ କରିବା ସଙ୍ଗେ ସଙ୍ଗେ ଓଡ଼ିଶାର ଗଜପତି ରାଜା ଓ ତାହାଙ୍କ ମନ୍ତ୍ରୀ ଶ୍ରୀ ରାୟ ରାମାନନ୍ଦଙ୍କୁ ମଧ୍ୟ ସ୍ମରଣ କରିଛନ୍ତି । ଗ୍ରନ୍ଥଟି ଚୈତନ୍ୟ ପନ୍ଥୀ ବୈଷ୍ଣବମାନଙ୍କ ପାଇଁ ଉପାଦେୟ ହେଲେ ମଧ୍ୟ ଏଥିରେ କାବ୍ୟିକ ମାଧୁର୍ଯ୍ୟର ଅଭାବ ପରିଲକ୍ଷିତ ହୁଏ । ବାଣୀବିହାର ପୋଥି ବିଭାଗରେ ଏହାର ଗୋଟିଏ ପାଣ୍ଡୁଲିପି ସୁରକ୍ଷିତ ଅବସ୍ଥାରେ ଅଛି ।

## ପ୍ରୀତି ଚିନ୍ତାମଣି

କବି ସଦାନନ୍ଦଙ୍କ ବିବୃତି ଅନୁସାରେ ଏ କାବ୍ୟଟି ଅସମ୍ପୂର୍ଣ୍ଣ ରହିଛି । ବହୁ ମିଳନର ବାଞ୍ଛିତ୍ୟ ବର୍ଣ୍ଣନା ଏଥିରେ ନାହିଁ । କିନ୍ତୁ ଓଡ଼ିଶା ଷ୍ଟେଟ୍ ମ୍ୟୁଜିଅମ୍ ରେ ସଂରକ୍ଷିତ ଗୋଟିଏ ପୋଥିରୁ ଜଣାଯାଏ ଯେ, ଏହା ତିନିଗୋଟି ଛାନ୍ଦ ବିଶିଷ୍ଟ ଗୋଟିଏ କ୍ଷୁଦ୍ର କାବ୍ୟ, ଅଭିମନ୍ୟୁ ସାମନ୍ତସିଂହାରଙ୍କ ବିଦଗ୍ଧ ଚିନ୍ତାମଣି କାବ୍ୟର ୩୯ ଓ ୪୨ ଛାନ୍ଦ ଦୁଇଟି ଏଥିରେ ପ୍ରଥମ ଓ ଦ୍ୱିତୀୟ ଛାନ୍ଦ ଭାବରେ ବିନ୍ୟସ୍ତ । ପୁଣି ସଦାନନ୍ଦଙ୍କ ଯୁଗଳ ରସାମୃତ ଲହରୀର ରାଧାଙ୍କ ସ୍ୱପ୍ନବିଳାସ ତଥା ସମ୍ବଳିତ ପଞ୍ଚବିଂଶ ଛାନ୍ଦଟି ଏଠାରେ ତୃତୀୟ ଛାନ୍ଦ ଭାବରେ ଉଦ୍ଧାର କରାଯାଇଛି । ପ୍ରଥମ ଦୁଇ ଛାନ୍ଦର ଭଣିତାରେ ଅଭିମନ୍ୟୁଙ୍କ ନାମ ଦେଖିବାକୁ ମିଳେ । ଏଣୁ ଏହା ଗୋଟିଏ ସ୍ୱତନ୍ତ୍ର କାବ୍ୟ ନୁହେଁ; କେବଳ ଉପଲବ୍ଧ ତିନୋଟି ପ୍ରେମାତ୍ମକ ସୁପ୍ରସିଦ୍ଧ ଛାନ୍ଦର ଗୋଟିଏ କ୍ଷୁଦ୍ର ସଂସ୍କରଣ ମାତ୍ର ।

## ନଷ୍ଟା ନୀଳମଣି

ସଦାନନ୍ଦ ବହୁ ବୈଷ୍ଣବ କାବ୍ୟ ରଚନା କରିଥିଲେ ମଧ୍ୟ ସେମାନଙ୍କ ମଧ୍ୟରେ ନଷ୍ଟା ନୀଳମଣି ସ୍ୱତନ୍ତ୍ର ମର୍ଯ୍ୟାଦାର ଅଧିକାରୀ । ଏହା ବାରଟି କ୍ଷୁଦ୍ର

ଛନ୍ଦରେ ରଚିତ ହୋଇଥିଲେ ମଧ୍ୟ, ଛନ୍ଦ କାବ୍ୟଭାବରେ ଗ୍ରହଣୀୟ ହେବା ସଙ୍ଗତ ନୁହେଁ । ଏଥିରେ ଆଖ୍ୟାନଧର୍ମୀ କୌଣସି ବିଷୟ ବର୍ଣ୍ଣିତ ହୋଇ ନାହିଁ କିମ୍ବା ସାହିତ୍ୟ ସୁଲଭ କୌଣସି ଚଟୁଳ କଳ୍ପନାର ବିଳାସିତା ଏଥିରେ ନାହିଁ । ଏସବୁ ସତ୍ତ୍ୱେ ସମଗ୍ର ଚୈତନ୍ୟପନ୍ଥୀ ଓଡ଼ିଆ ବୈଷ୍ଣବ ସାହିତ୍ୟରେ ଏ ଗ୍ରନ୍ଥର ପ୍ରଭାବ ଓ ପ୍ରାଧାନ୍ୟ ଅନନ୍ୟ ସାଧାରଣ । ଓଡ଼ିଶାରେ ବୈଷ୍ଣବ ସାହିତ୍ୟର ଧାରା ବହୁ ପ୍ରାଚୀନ କାଳରୁ ଅବାରିତ ଭାବେ ପ୍ରବାହିତ ହେଉଥିଲେ ମଧ୍ୟ ସେଗୁଡ଼ିକୁ ନିୟନ୍ତ୍ରିତ କରିବା ପାଇଁ ବିଧିବଦ୍ଧ ଭାବରେ କୌଣସି ଗ୍ରନ୍ଥ ଲେଖାଯାଇ ନ ଥିଲା କହିଲେ ଅତ୍ୟୁକ୍ତି ହେବ ନାହିଁ । ଷୋଡ଼ଶ ଶତାବ୍ଦୀରେ ମହାପ୍ରଭୁ ଚୈତନ୍ୟଙ୍କ ଦ୍ୱାରା ସହଜ ସ୍ୱାଭାବିକ ଭାବରେ ଉତ୍ସାରିତ ଭକ୍ତିଧାରା, ତଦୀୟ ଶିଷ୍ୟବର୍ଗ ବୃନ୍ଦାବନର ରୂପ, ସନାତନ ଓ ଜୀବଗୋସ୍ୱାମୀମାନଙ୍କ ଦ୍ୱାରା ଗୋଟିଏ ନିର୍ଦ୍ଦିଷ୍ଟ ସାଂପ୍ରଦାୟିକ ତତ୍ତ୍ୱ ସିଦ୍ଧାନ୍ତ ଭାବରେ ପ୍ରତିଶ୍ରୁତ ଓ ପ୍ରବର୍ତ୍ତିତ ହେଲା । ସେମାନେ ଷଡ଼୍‌ଦର୍ଶନ ପୂର୍ଣ୍ଣ ପଣ୍ଡିତ ଥିବାରୁ ତତ୍ସମ୍ପର୍କୀୟ ଆଚାର, ବିଚାର, ନିଷ୍ଠା ଓ ନିୟମ ପ୍ରଚାର କରିବା ପାଇଁ ବହୁ ଶାସ୍ତ୍ର ଗ୍ରନ୍ଥ କାବ୍ୟ ଗ୍ରନ୍ଥ ଲେଖିଯାଇଛନ୍ତି । ପ୍ରାମାଣିକ ଗ୍ରନ୍ଥମାନଙ୍କରେ ବହୁ ଶାସ୍ତ୍ରୀୟ ପ୍ରମାଣ ଓ ଯୁକ୍ତି ବଳରେ ସାଂପ୍ରଦାୟିକ ଧର୍ମସିଦ୍ଧାନ୍ତ ଓ ଧର୍ମାଚାରର ପ୍ରତିଷ୍ଠା କରାଯାଇଥିବା ବେଳେ କାବ୍ୟ, ନାଟକ ଓ ଗୀତି କବିତା ଗୁଚ୍ଛରେ ସେହି ସିଦ୍ଧାନ୍ତର ନିପୁଣ ପ୍ରୟୋଗ କରାଯାଇଛି । ସେସବୁ ଗ୍ରନ୍ଥରେ ପ୍ରକାଣ୍ଡ ପାଣ୍ଡିତ୍ୟ ଓ ସୃଷ୍ଟିଧର୍ମୀ କଳାକୁଶଳତାର ବିକଚ ବିକାଶ ଦେଖିବାକୁ ମିଳେ । ଏହି ଭକ୍ତିଭାବ ଗର୍ଭିତ ସାରସ୍ୱତ ସୃଷ୍ଟିଗୁଡ଼ିକ ଭାରତବର୍ଷରେ ସବୁ ପ୍ରାଦେଶିକ ସାହିତ୍ୟଗୁଡ଼ିକୁ ଶହ ଶହ ବର୍ଷଧରି ଅନୁପ୍ରାଣିତ କରିବା ସଙ୍ଗେ ସଙ୍ଗେ ସୃଷ୍ଟି ମୁଖର ମଧ୍ୟ କରିଥିଲା । ଓଡ଼ିଆ ସାହିତ୍ୟରେ ତାହାର ପ୍ରଭାବ କିଛି କମ୍ ନୁହେଁ । ବିଶେଷ କରି ଅଷ୍ଟାଦଶ ଶତାବ୍ଦୀର କବି ସଦାନନ୍ଦଙ୍କ ସମୟକୁ ଏହି ସାଂପ୍ରଦାୟିକ ମତବାଦର ବନ୍ୟା ଅବାରିତ ଭାବରେ ଏ ଦେଶକୁ ପ୍ଲାବିତ କରିଥିଲା । ସଦାନନ୍ଦ ଏହି ଧାର୍ମିକ ପରମ୍ପରାର ଜଣେ ସର୍ବଶ୍ରେଷ୍ଠ ଦାୟାଦ । ସେ ଏହି ସାଂପ୍ରଦାୟିକ ଧର୍ମଧାରା ପ୍ରଚାର କରିବା ପାଇଁ ଯେଉଁଭଳି ଉଦ୍ୟମ କରିଯାଇଛନ୍ତି ଏବଂ ଯେତେ ଗ୍ରନ୍ଥ ପ୍ରଣୟନ କରିଛନ୍ତି, ଗୁଣାତ୍ମକ ଓ ପରିମାଣାତ୍ମକ ଦୃଷ୍ଟିରୁ ବିଚାର କଲେ, ନିର୍ବିବାଦରେ କୁହାଯାଇ ପାରେ ଯେ, ସେପରି ଆଉ କେହି କରି ନାହାନ୍ତି । ତାଙ୍କ ଏହି ସାମଗ୍ରିକ ପ୍ରଚେଷ୍ଟାର ଫଳଶ୍ରୁତି ସ୍ୱରୂପ ନିଷ୍ଠାମାଳମଣି ଗ୍ରନ୍ଥଟି ଜନ୍ମଲାଭ କରିଛି । ଗ୍ରନ୍ଥଟି କ୍ଷୁଦ୍ର ହେଲେ ମଧ୍ୟ ଚୈତନ୍ୟପନ୍ଥୀ ବୈଷ୍ଣବ ଚିନ୍ତା, ଚେତନା, ଆଚାର ଓ ବ୍ୟବହାରର ଯଥାର୍ଥ ତାତ୍ତ୍ୱିକ ବିଶ୍ଳେଷଣରେ ଆନ୍ତରିକ ଉଦ୍ୟମର ପଥପ୍ରଦର୍ଶିକା ହୋଇପାରିଛି । ବୈଷ୍ଣବ ସାହିତ୍ୟ ଅଧ୍ୟୟନ ଓ ଅଧ୍ୟାପନା କରିବା ସମୟରେ ସାଧାରଣ ପାଠକ ମନରେ ଯେଉଁ ସହଜ ପ୍ରଶ୍ନଗୁଡ଼ିକ ଜାଗ୍ରତ ହୁଏ, ତାହାର ଉତ୍ତର ଏଥିରୁ ମିଳେ । ବିଶେଷ କରି ଓଡ଼ିଆ ବୈଷ୍ଣବ

ସାହିତ୍ୟକୁ ଭଲଭାବେ ବୁଝିବା ଓ ହୃଦୟଙ୍ଗମ କରିବା ପାଇଁ ଏ ଗ୍ରନ୍ଥଟିର ଭୂମିକା ଏକାନ୍ତ ଉଲ୍ଲେଖ ଯୋଗ୍ୟ । "ମିତଂ ଚ ସାରଂଚ ବଚୋହି ବାଗ୍ମିତା" ଏହି ନୀତିର ବଶବର୍ତ୍ତୀ ହୋଇ ସେ ଯଥାସମ୍ଭବ କ୍ଷୁଦ୍ର କଳେବର ବିଶିଷ୍ଟ ଗ୍ରନ୍ଥଟିଏ ଲେଖିବାକୁ ଯତ୍ନବାନ୍ ହୋଇଛନ୍ତି ବୋଲି କବି ନିଜେ ସ୍ୱୀକାର କରିଛନ୍ତି । "ଅଳ୍ପହୋଇ ଚୂଡ଼େ ଭକ୍ତତତ୍ତ୍ୱ ବୋଧ । ଏମନ୍ତ ପ୍ରକାର ହେଲେ କବୀନ୍ଦ୍ର ବନ୍ଧୁଙ୍କ" । ଏଥିରେ ଥିବା ସାମ୍ପ୍ରଦାୟିକ ତଥ୍ୟ ଓ ତତ୍ତ୍ୱ ପ୍ରୟୋଗ କରି କବି ଓ ତାହାଙ୍କ ଶିଷ୍ୟ ଅଭିମନ୍ୟୁ ସାମନ୍ତସିଂହାର ବିଦଗ୍ଧ କାବ୍ୟ ପ୍ରଣୟନ କରି ଅନ୍ୟ କବି ମାନଙ୍କ ପଥପ୍ରଦର୍ଶକ ହୋଇଛନ୍ତି ।

ଗ୍ରନ୍ଥଟି ବାରଟି କ୍ଷୁଦ୍ର ଛାନ୍ଦରେ ରଚିତ । ଏଥିରେ ଶ୍ରୋତା ବକ୍ତା କେହି ନାହିଁ । ପ୍ରସଙ୍ଗକ୍ରମେ କବି କେତେବେଳେ କାମିଠ ସ୍ୱ 'ଚିତ୍ତ' ଓ 'ମନ' କୁ ସମ୍ବୋଧନ କରି ତତ୍ତ୍ୱକଥା ବୁଝାଇବାକୁ ଚେଷ୍ଟା କରିଛନ୍ତି । ଆହୁରି ମଧ୍ୟ ସେ କହିଛନ୍ତି ଯେ 'ସମସ୍ତ ଈଶ୍ୱର' ରୁ ଗୌରାଙ୍ଗ ତତ୍ତ୍ୱ ଓ ରାଧାକୃଷ୍ଣ ଲୀଳା ମାଧୁର୍ଯ୍ୟର ସେ ବିସ୍ତୃତ ବର୍ଣ୍ଣନ କରି ପାରି ନାହାନ୍ତି । କବିସୂର୍ଯ୍ୟ ବ୍ରହ୍ମା ଏଣିକି କହିବାକୁ ବ୍ୟାକୁଳ ହେଉଥିବାର ଦେଖି ବାଞ୍ଛାକଳ୍ପତରୁ କୃଷ୍ଣ ଯାହା କହିଲେ କେବଳ ସେତିକି ସେ ବାତୁଳ ପରିଏ ବର୍ଣ୍ଣନ କରିଛନ୍ତି ।

ପ୍ରଥମରେ ସରସ୍ୱତୀ ଙ୍କୁ ବନ୍ଦନା କରି ସେ ସମଗ୍ର ସୃଷ୍ଟିକୁ ସ୍ଥାବର, ଜଙ୍ଗମ, କୀଟ ଓ ପତଙ୍ଗ ଏହିପରି ଚାରି ଭାଗରେ ବିଭକ୍ତ କରିଛନ୍ତି । ମାନବ ସମାଜର ସୁଷ୍ଠୁ ପରିଚାଳନା ପାଇଁ ବ୍ରାହ୍ମଣ କ୍ଷତ୍ରିୟ, ବୈଶ୍ୟ ଓ ଶୂଦ୍ର ଏହି ଚାରି ବର୍ଣ୍ଣାଶ୍ରମର ବ୍ୟବସ୍ଥା କରାଯାଇଛି । ସମାଜର ନିୟାମକ ଗ୍ରନ୍ଥ, ବେଦରେ ପ୍ରବୃତ୍ତି ଓ ନିବୃତ୍ତି ମାର୍ଗର ପରିକଳ୍ପନା କରାଯାଇଛି । ଜୀବନ ସମ୍ଭୋଗ ପାଇଁ ପ୍ରବୃତ୍ତି ମାର୍ଗ ପ୍ରଶସ୍ତ ଓ ଜନ୍ମମୃତ୍ୟୁ ହୀନ ମୋକ୍ଷ ପ୍ରାପ୍ତି ପାଇଁ ନିବୃତ୍ତି ମାର୍ଗ ପ୍ରଶସ୍ତତର । ଶୈବ, ଶାକ୍ତ, ଗାଣପତ୍ୟ ଓ ସୌର ସମ୍ପ୍ରଦାୟ ମାନେ ପ୍ରବୃତ୍ତି ଓ ନିବୃତ୍ତି ମାର୍ଗୀ । କିନ୍ତୁ ବୈଷ୍ଣବ ସମ୍ପ୍ରଦାୟ ଦ୍ୱୈତବାଦ ଓ ପ୍ରବୃତ୍ତି ମାର୍ଗରେ ବିଶ୍ୱାସ କରେ । ପଞ୍ଚଦେବୋପାସନାରେ ବିଶ୍ୱାସୀ ମାନଙ୍କୁ ସ୍ମାର୍ତ୍ତ ଏବଂ କେବଳ ବିଷ୍ଣୁ ଉପାସକ ମାନଙ୍କୁ ବୈଷ୍ଣବ କୁହାଯାଏ ।

ଦ୍ୱିତୀୟ ଛାନ୍ଦରେ 'ସମ୍ବନ୍ଧ ନିଷ୍ଠା' ଆଲୋଚନା କରିବାକୁ ଯାଇ କବି କହିଛନ୍ତି— ଭଗବାନ ସେବ୍ୟ, ମନୁଷ୍ୟ ସେବକ । ବୈଷ୍ଣବ ମାନେ ଏହି ସେବ୍ୟ ସେବକ ସମ୍ପର୍କ ରକ୍ଷି ଚଳନ୍ତି । 'ସେବ୍ୟ ସେବକ ସମ୍ବନ୍ଧ ବୈଷ୍ଣବର

କୃଷ୍ଣ ପ୍ରଭୁ ଆମ୍ଭେ ଦାସ' । ଶ୍ରୀ, ବ୍ରହ୍ମ, ରୁଦ୍ର ଓ ସନକ ଏହିପରି ଚାରୋଟି ବୈଷ୍ଣବ ସମ୍ପ୍ରଦାୟ ଭାରତ ବର୍ଷରେ ବିଖ୍ୟାତ । ଶ୍ରୀ ରାମାନୁଜାଚାର୍ଯ୍ୟ, ମାଧ୍ୱାଚାର୍ଯ୍ୟ, ବିଷ୍ଣୁସ୍ୱାମୀ, ନିମ୍ବାର୍କାଚାର୍ଯ୍ୟ ଯଥାକ୍ରମେ ଏହି ବୈଷ୍ଣବ ସମ୍ପ୍ରଦାୟ ମାନଙ୍କର ପ୍ରବର୍ତ୍ତକ । ବୈଷ୍ଣବ ସମ୍ପ୍ରଦାୟ ଗୁଡ଼ିକ ଶିଷ୍ୟାନୁଶିଷ୍ୟ କ୍ରମରେ ବିସ୍ତାର ଲାଭ କରୁଥିବା ବେଳେ ଭ୍ରାନ୍ତି ମତ ସ୍ଥିର ଭାବରେ ରହିଛି । ସମ୍ପ୍ରଦାୟ ବିହୀନ ଲୋକର ସବୁ କର୍ମ ବିଫଳ ହୁଏ । ଚାରି ବୈଷ୍ଣବ ସମ୍ପ୍ରଦାୟର ଚାରିଧାମ ନିର୍ଦ୍ଦିଷ୍ଟ । ରାମନାଥ, ସୋମନାଥ, ବଦ୍ରିନାଥ, ଓ ଜଗନ୍ନାଥ ( ରାମେଶ୍ୱର, ଦ୍ୱାରକା, ବଦ୍ରିକାଶ୍ରମ ଓ ପୁରୁଷୋତ୍ତମ ) । ଚୈତନ୍ୟ ପନ୍ଥୀ ବୈଷ୍ଣବମାନଙ୍କର ନିତ୍ୟଧାମ ବୃନ୍ଦାବନ ଓ ଏମାନେ ମୁକ୍ତିକୁ ଇଚ୍ଛା କରନ୍ତି ନାହିଁ । ନାରଦ, ବ୍ୟାସ, ସନକ, ଶୁକ ଓ ବଶିଷ୍ଠ ଆଦି ଋଷି ମାନଙ୍କର ମତକୁ ଅନୁସରଣ କରି ବୈଷ୍ଣବ ମାନେ ଚଳନ୍ତି

ଚତୁର୍ଥସ୍ତ ଛାନ୍ଦରେ କବି ହୃଷ୍ଟିସାର ବୈଷ୍ଣବ ମତକୁ ଗ୍ରହଣ କରି ମନୁଷ୍ୟ ଜୀବନକୁ ଚରିତାର୍ଥ କରିବାପାଇଁ ପରାମର୍ଶ ଦେଇଛନ୍ତି ।

"ଅନେକ ଶାସ୍ତ୍ର ବହୁତ ବିଦ୍ୟା ଏ ସଂସାରେ
ଅଳ୍ପକାଳେ ବହୁ ବିଘ୍ନ ପଡ଼ଇ ତହିଁରେ ।
ଏଥିରୁ ଯେ ସାର ତାହା ଉପାସନା କର
କ୍ଷୀରରୁ ସାରାଂଶ ଭକ୍ଷେ ହଂସ ଯେ ପ୍ରକାର ।"

ବ୍ୟାସଦେବ ଯେତେ ପୁରାଣ ରଚନା କରିଛନ୍ତି, ତନ୍ମଧ୍ୟରେ ଶ୍ରୀମଦ ଭାଗବତ ପୁରାଣ ଶ୍ରେଷ୍ଠ ତା ମଧ୍ୟରେ ରାସପଞ୍ଚାଧ୍ୟାୟୀ ଶ୍ରେଷ୍ଠତମ । ସେଥିରେ କର୍ମ ଓ ଜ୍ଞାନ ଅପେକ୍ଷା ଭକ୍ତିର ମହତ୍ତ୍ୱ ସ୍ୱୀକାର କରା ଯାଇଛି । ଗୋପୀମାନେ ଭୁକ୍ତି ମୁକ୍ତି କୁ ତୁଚ୍ଛ କରି ଭକ୍ତି କୁ ମୂଲ କରିଛନ୍ତି । ସେମାନଙ୍କର ପ୍ରେମସାର ପୂର୍ଣ୍ଣ ରାଶି ବ୍ରହ୍ମାଣ୍ଡରେ ନାହିଁ । କୃଷ୍ଣ ନିଜେ ସେଥିରେ ବନ୍ଦିତ । ସେହି ଉଜ୍ଜ୍ୱଳରସ ଗୌର ଚନ୍ଦ୍ର ନିଜର ଲୀଳା ମାଧ୍ୟମରେ ପ୍ରକାଶ କରିଛନ୍ତି ତଥା ରୂପ ଓ ସନାତନ ଗୋସ୍ୱାମୀଙ୍କ ଦ୍ୱାରା ତାହା ପ୍ରଚାର କରାଇଛନ୍ତି ।

ବହୁଗ୍ରନ୍ଥ ଦଳାଭ୍ୟାସ ବ୍ୟାଖ୍ୟା ବାଦତେଜ
ଶ୍ରୀ ରୂପ ଗୋସ୍ୱାମୀ ଆଜ୍ଞା ନିଜ ମନେ ହେଜ ।

ବୈଷ୍ଣବମାନେ ଗୋସ୍ୱାମୀମାନଙ୍କ ମତକୁ ବେଦବଚନ ଠାରୁ ଗୁରୁତ୍ୱପୂର୍ଣ୍ଣ ମନେକରନ୍ତି ।

ଚତୁର୍ଥ ଖଣ୍ଡରେ 'ଶ୍ରୀଗୁରୁନିଷ୍ଠା' ବ୍ୟାଖ୍ୟା କରାଯାଇଛି । ଦୀକ୍ଷା ଗ୍ରହଣ ମନୁଷ୍ୟର ପରମ କର୍ତ୍ତବ୍ୟ । ଦୀକ୍ଷା ଗ୍ରହଣ ନକଲେ ମଣିଷ ଜନ୍ମ ବୃଥା । ସଦ୍‌ଗୁରୁଙ୍କ ଠାରୁ ଦୀକ୍ଷା ଗ୍ରହଣ କରିବ । କୃଷ୍ଣଭକ୍ତ ନିଷ୍ଠାବାନ ଶାସ୍ତ୍ରଜ୍ଞାନ ଯୁକ୍ତ ବୈଷ୍ଣବ ବ୍ରାହ୍ମଣ ହେଲେ ଗୁରୁ ହେବା ପାଇଁ ଶ୍ରେଷ୍ଠ । ବିଶୁଦ୍ଧ କୁଳ ସମ୍ଭୂତ ଶୀଳ ବତ୍ସଳ, ସତ୍ୟବାଦୀ କାମ କ୍ରୋଧ ବିବର୍ଜିତ ପ୍ରବୀଣମନୁଷ୍ୟ ଶ୍ରେଷ୍ଠ ଶିଷ୍ୟ ଭାବରେ ଗ୍ରାହ୍ୟ, ଶିଷ୍ୟ ପ୍ରଥମେ ସଦ୍ ଗୁରୁଙ୍କୁ ପୂଜା କରି ପରେ କୃଷ୍ଣଙ୍କୁ ପୂଜିବ । ଶିଷ୍ୟର ଗୁରୁ, କୃଷ୍ଣ, ବୈଷ୍ଣବଠାରେ ଅଚଳ ଭକ୍ତି ରହିବା ଦରକାର । ନାମ, ରୂପ, ବୟସ, ବେଶ, ନିବାସ, କୃତ୍ୟ, ଗୁଣନିଷ୍ଠା, ସମ୍ବନ୍ଧ, ଯୂଥ, ପାଲ୍ୟ, ଦାସୀ, ନିବାସ ଏପରି ଏକାଦଶ ବିଧ ସାଧନା କରିବାକୁ ହେବ । ବୈଷ୍ଣବର ନିତ୍ୟାଗ୍ନର ବିଷୟରେ କୁହାଯାଇଛି ଯେ, ବୈଷ୍ଣବ ମାନେ ରାତ୍ର ଚାରିଦଣ୍ଡ ଥାଉ ଶଯ୍ୟାତ୍ୟାଗ କରି ଗୁରୁଧ୍ୟାନ, ପ୍ରଭୁସ୍ମରଣ, ରାଧାକୃଷ୍ଣ ନାମକୀର୍ତ୍ତନ, ସ୍ନାନ, ତୁଳସୀପୂଜା, ଶ୍ୟାମାଧନ୍ନ ଓ ନିର୍ମାଲ୍ୟ ସେବନ, ତିଳକ ଧାରଣ, ରାଧାକୃଷ୍ଣ ପୂଜନ, ନାମାବଳୀଧାରଣ, ଗୌର-ଚରଣ ଓ ଭକ୍ତବନ୍ଦନ, ଏକାଦଶ ସାଧନା ସହିତ ମନ୍ତ୍ରଜପ, ହରିନାମ, ଗୋପାଳମନ୍ତ୍ର, ରାଧାମନ୍ତ୍ର, ସ୍ମରଣ କରିବାକୁ ହେବ, ସିଦ୍ଧ କାମ ଗାୟତ୍ରୀ ଓ ସାଧକର ପଞ୍ଚନାମ ମୂଳ । ଗୁରୁ ବୈଷ୍ଣବଙ୍କୁ ଦଣ୍ଡବତ କରି ସ୍ତବରେ ଅଧରାମୃତ ପାନ କରିବ । ତାପରେ ଭୋଜନ କରିବ । କୃଷ୍ଣ ଚିନ୍ତନ, ଚରିତ ପଠନ, ଆରତି ଦର୍ଶନ, ନାମକୀର୍ତ୍ତନ, ଭଜନ, ଏକାଦଶୀ ପାଳନ, ଆତ୍ମସମର୍ପଣ ଆଦି କରି ଦିନନେବ । ଗୁରୁଙ୍କୁ ସାକ୍ଷାତ୍ କୃଷ୍ଣ । ଜ୍ଞାନ କରି ରାଗାନୁଗା ଭକ୍ତି ସାଧନାରେ ମଜ୍ଜି ରହିବ । ସଙ୍ଗନିଷ୍ଠା ପର୍ଯ୍ୟାୟରେ କୁହାଯାଇଛି ଯେ ଯେଉଁ ବୈଷ୍ଣବ ଭକ୍ତ ପ୍ରେମବିହ୍ୱଳ ହୋଇ ରାଧାକୃଷ୍ଣଲୀଳା କୀର୍ତ୍ତନ କରୁ କରୁ କ୍ଷଣ କ୍ଷଣକେ ଅଶ୍ରୁ, ପୁଲକ, ବେପଥୁ ପ୍ରମୁଖ ସାତ୍ତ୍ୱିକ ଭାବ ଜାଗୃତିରେ ନିମଗ୍ନ ହେଉଥିବେ ସେହିପରି ଭକ୍ତଙ୍କ ସଙ୍ଗେ ଇଷ୍ଟ ଗୋଷ୍ଠୀ କରିବ । ଜନହିତକାରୀ ଧନବନ୍ତ ଦାତାର ଆଶ୍ରୟରେ ରହିବା ଅପେକ୍ଷା ସ୍ୱାଧୀନ ଭାବରେ ରାଧାକୃଷ୍ଣ ନାମକୀର୍ତ୍ତନକରି ଭିକ୍ଷାଟନ ଦ୍ୱାରା ଜୀବନ ନିର୍ବାହ କରିବା ଅତ୍ୟନ୍ତ ଶ୍ରେୟସ୍କର । ସର୍ବତୋଭାବେ କୃଷ୍ଣଙ୍କ ଠାରେ ଆଶ୍ରୟ ଗ୍ରହଣ କରିବା ଏକାନ୍ତ ଭକ୍ତିନିଷ୍ଠା ।

ଗୋଲକ ବୃନ୍ଦାବନ ସ୍ୱୟଂ ଭଗବାନ କୃଷ୍ଣଙ୍କ ନିତ୍ୟ ବିହାର ସ୍ଥଳୀ । ଏହା ବୈକୁଣ୍ଠ ଅପେକ୍ଷା ଶ୍ରେଷ୍ଠ । ଏଠାରେ ପଳକହୀନ ଭାବରେ ରାଧାକୃଷ୍ଣଙ୍କ

ନିତ୍ୟଲୀଳା ସଙ୍ଘଟିତ । ପରକୀୟା ବ୍ୟାଜରେ ରତିବୃଦ୍ଧି ହେଉ ନିତ୍ୟ ବୃନ୍ଦାବନରେ ହୁଏ । ତାହା ବୈଷ୍ଣବ ମାନଙ୍କର ପରମାରାଧ୍ୟ । ଯୋଗମାୟାଙ୍କ ଆଦେଶ ବିନା କାହାର ହେଲେ ଏଠାରେ ପ୍ରବେଶାଧିକାର ନାହିଁ । ଏହି ନିତ୍ୟ ଗୋଲୋକରେ ରାଧାକୃଷ୍ଣଙ୍କ ନିତ୍ୟବିହାର ଦର୍ଶନ ବୈଷ୍ଣବର ଏକାନ୍ତ କାମ୍ୟ ।

କୃଷ୍ଣହିଁ ବୈଷ୍ଣବର ଏକମାତ୍ର ଆରାଧ୍ୟ ଦେବତା । 'ନବଘନ ନିନ୍ଦ, ନ୍ୟାସରେ ଗଣେଶ, ଶିବ, ଦୁର୍ଗା ବ୍ରହ୍ମା, ବିଷ୍ଣୁ ଇତ୍ୟାଦିଙ୍କୁ ବନ୍ଦନା କରିବ । ଏପରିକି 'ଦ୍ୱାରକା କୃଷ୍ଣ' ବୈଷ୍ଣବର ପ୍ରାଣନାଥ ନୁହନ୍ତି । 'ବ୍ରଜ ବିହାରୀ' ହିଁ ବୈଷ୍ଣବର ଧ୍ୟେୟ । କୃଷ୍ଣଙ୍କ ଦୁଷ୍ଟ ସଂହାରାଦି କାର୍ଯ୍ୟକଳାପ ଐଶ୍ୱର୍ଯ୍ୟ ଲୀଳାର ପ୍ରଖ୍ୟାପକ ହେଥିରେ କୌଣସି ମହତ୍ତ୍ୱ ନାହିଁ । ରାଧାଙ୍କ ସହିତ ପ୍ରେମଲୀଳା ତାଙ୍କର ବିଶେଷ ମହିମା । ଏହି ବ୍ରଜଲୀଳା ପ୍ରସଙ୍ଗରେ ବୈଷ୍ଣବର ମନ ହଂସା ବୁଡ଼ିରହେ ।

ନୁଆଁ ସ୍ୱାମୀଣୀ ନୁଆଁ ନୁଆଁ ଦେଶ
ନୁଆଁ ସ୍ଫୁରେ ନୁଆଁ ନୁଆଁ ହାସ
ନୁଆଁ ଇଙ୍ଗିତ ବଚନ ବେଶର
ଶ୍ରୋତବ୍ୟ ଦ୍ରଷ୍ଟବ୍ୟ ଧନ୍ୟ ଯେ ଯାର ॥

ଲକ୍ଷ୍ମୀ ନାରାୟଣ, କୃଷ୍ଣ ଅଷ୍ଟ ମହିଷୀ, ରାମ ସୀତା, ହର ପାର୍ବତୀ ଇତ୍ୟାଦିଙ୍କ ବିହାରରେ ପ୍ରୀତି ନାହିଁ, ତାହା କେବଳ ସମ୍ଭୋଗ ; କିନ୍ତୁ

''ଗୋପୀ କୃଷ୍ଣଙ୍କ ମଧ୍ୟରେ ରହ, ପାଇ ବିରହାନଳେ ଜ୍ୱାଳ ।''
ହେଉଥାଏ ନାନା ବିକାର, ପଶ୍ଚାତେ ମିଳିତା ଆଧାର ।
ଏ ରୂପ ଭଙ୍ଗୀ ଏହି ଛବି, କାହୁଁ ଲଭିବେ ଦେବଦେବୀ ।''

ବ୍ରଜରେ ଚିନ୍ମୟ ଅନଙ୍ଗର ସାମ୍ରାଜ୍ୟ । ବ୍ରଜର ଅପ୍ରାକୃତ ପ୍ରେମଲୀଳାରେ ପ୍ରେମିକ ପ୍ରେମିକାଙ୍କ ମଧ୍ୟରେ ଯେଉଁ ଚେଷ୍ଟା ଓ ବିକାର ଜାତହୁଏ ତାହା ଅଲୌକିକ, ଅନ୍ୟତ୍ର ତାହା ଦୁର୍ଲ୍ଲଭ । ଅଷ୍ଟ ମହିଷୀଙ୍କ ସହିତ କୃଷ୍ଣଙ୍କ ସମ୍ଭୋଗରେ ପ୍ରାକୃତ ଅନଙ୍ଗରାଗ ଥିବାରୁ ବ୍ରଜଲୀଳାର ମାଧୁର୍ଯ୍ୟ ସେଠାରେ କାହୁଁ ମିଳିବ ।

ବ୍ରଜଲୀଳାରେ ଗୋପୀମାନେ କୃଷ୍ଣଙ୍କ ପ୍ରତି ଯେଉଁ ପ୍ରେମପୂର୍ଣ୍ଣ ବାଣୀ ପ୍ରୟୋଗ କରନ୍ତି ତାହା ପ୍ରତ୍ୟେକ ବୈଷ୍ଣବର ଅତ୍ୟନ୍ତ ଆଦରର ବସ୍ତୁ । "ମୋ କର୍ଣ୍ଣ ଏମନ୍ତ ହୋଇବ, ଏ ବାଣୀ ହେଳେ କି ଶୁଣିବ" କହି ବୈଷ୍ଣବ ମାନେ ଲୀଳା ଆସ୍ୱାଦନର ଅତ୍ୟନ୍ତ ଆନ୍ତରିକତାରେ ଆଗ୍ରହୀ ହୋଇ ଉଠନ୍ତି ।

ଶେଷରେ କବି ଗଣେଶ୍ୱ କଥା ବର୍ଣ୍ଣନ କରିଛନ୍ତି । ଗୋପୀ, ମହିଷୀ ଓ ଲକ୍ଷ୍ମୀ ଗଣ ଏହି ତିନି କୃଷ୍ଣଙ୍କର ପ୍ରିୟଗଣ, ଏମାନେ ପୁଣି ଦେବକନ୍ୟା ମୁନିକନ୍ୟା ଓ ବେଦକନ୍ୟା ଭାବରେ ତିନି ପ୍ରକାରର । ଏମାନେ ସମସ୍ତେ ସାଧନସିଦ୍ଧ । କିନ୍ତୁ ଗୋପୀକନ୍ୟାମାନେ ନିତ୍ୟ ସିଦ୍ଧା । କୃଷ୍ଣଙ୍କ ମତରେ ଗୋପୀମାନେ ଭକ୍ତ ଶିରୋମଣି । କୃଷ୍ଣଙ୍କ ମାୟାରେ ସମସ୍ତେ ମୋହିତ ହୁଅନ୍ତି । କିନ୍ତୁ ଗୋପୀଙ୍କ ମାୟାରେ ନିଜେ କୃଷ୍ଣ ବିମୋହିତ । ଗୋପୀ ପ୍ରେମରେ କୃଷ୍ଣ ବିକ୍ରୀତ । ଏହି ଗୋପୀମାନଙ୍କ ମଧ୍ୟରେ ଅଷ୍ଟ ଯୁଥେଶ୍ୱରୀ ଶ୍ରେଷ୍ଠ । ସେମାନଙ୍କ ମଧ୍ୟରେ ଚନ୍ଦ୍ରାବଳୀ ଓ ରାଧା ସର୍ବଶ୍ରେଷ୍ଠ । ଏ ଦୁହିଙ୍କ ମଧ୍ୟରେ ରାଧା କୃଷ୍ଣଙ୍କର ପ୍ରାଣାଧିକା ଓ କୃଷ୍ଣ ତାଙ୍କ ପ୍ରେମରେ ବନ୍ଧା । ରାଧା, ସୌନ୍ଦର୍ଯ୍ୟ, ମାଧୁର୍ଯ୍ୟ, ସୌଭାଗ୍ୟ ଓ ଚାତୁର୍ଯ୍ୟ — ଏହି ଚତୁର୍ବିଧ ମାଧୁର୍ଯ୍ୟର ଆଧାର । ରାଧାଙ୍କ ବିରହ ଜ୍ୱାଳାରେ କୃଷ୍ଣ ଧୂଳିରେ ଲୋଟନ୍ତି ; ତାଙ୍କର ଦର୍ଶନ କ୍ଷଣଟିଏର ଆଶାରେ ଚତୁର୍ଦ୍ଦିଗ ବୁଲୁଥାନ୍ତି । ରାଧା ସବୁବେଳେ ସାତ୍ତ୍ୱିକ ଭାବରେ ବିଭୋର । କେଳିକୁଞ୍ଜରେ ସମ୍ଭୋଗ ବେଳେ ରାଧାକୃଷ୍ଣଙ୍କୁ ଚିହ୍ନି ହୁଏ ନାହିଁ । ଉଭୟଙ୍କ ନାରୀ ପୁଂସ ମତ ମଶୋଚ ହୋଇଯାଏ । ଏହିପରି ଅଲୌକିକ ତଥା ଅପ୍ରାକୃତ ରାଧାକୃଷ୍ଣ ଯୁଗଳ ଲୀଳା ରସ ଆସ୍ୱାଦନରେ ନିମଗ୍ନ ରହିବା, ଭୁକ୍ତି ମୁକ୍ତି ଇଚ୍ଛା ବିବର୍ଜିତ ବୈଷ୍ଣବ ସାଧକର ଚରମ ଲକ୍ଷ୍ୟ ।

## ତତ୍ତ୍ୱ ତରଙ୍ଗିଣୀ

ତତ୍ତ୍ୱ ତରଙ୍ଗିଣୀ କାବ୍ୟଟି ସଦାନନ୍ଦଙ୍କ ନବମ ରଚନା । ଏଥିରେ ଥିବା ଦ୍ୱାବିଂଶ ତରଙ୍ଗରେ ବୈଷ୍ଣବ ତତ୍ତ୍ୱ ସିଦ୍ଧାନ୍ତ ସାର କଥା ବର୍ଣ୍ଣନା କରିଛନ୍ତି ବୋଲି କବି ନିଜେ କହିଛନ୍ତି । ପ୍ରସିଦ୍ଧ ପୁରାଣମାନଙ୍କର ଉଦାହରଣ ଦେଇ ଭକ୍ତି ତତ୍ତ୍ୱର ମହତ୍ତ୍ୱ ପ୍ରତିପାଦନ କରିବା ଏ କାବ୍ୟର ମୂଳ ଲକ୍ଷ୍ୟ । ସମଗ୍ର କାବ୍ୟଟି ପୂର୍ବଖଣ୍ଡ ଓ ଉତ୍ତର ଖଣ୍ଡ ଏପରି ଦୁଇ ଭାଗରେ ବିଭକ୍ତ । ବାଣୀବିହାରସ୍ଥ ପୋଥି ବିଭାଗରେ କେବଳ ଉତ୍ତର ଖଣ୍ଡର ଦୁଇଖଣ୍ଡ ତାଳପତ୍ର ପୋଥି ସଂରକ୍ଷିତ ହୋଇ ରହିଅଛି । ଉତ୍ତର ଖଣ୍ଡଟି ଷୋଡ଼ଶ ତରଙ୍ଗରେ ସମାପ୍ତ ହୋଇଛି । ଏଣୁ ମନେ ହୁଏ ପୂର୍ବ ଖଣ୍ଡରେ ନିଶ୍ଚୟ ଛଅଗୋଟି ତରଙ୍ଗ ଥିବ । ଉପଲବ୍ଧ ଷୋଡ଼ଶ ତରଙ୍ଗର କଥାବସ୍ତୁରେ ପ୍ରତିପାଦ୍ୟ ବିଷୟ ଯଥାର୍ଥ ଭାବରେ ବିଶ୍ଳେଷିତ ହୋଇ ଅଛି ।

ପ୍ରଥମ ଲହରୀରେ ଭକ୍ତି, ଦ୍ୱିତୀୟରେ ସାଧନ ଭକ୍ତି ତୃତୀୟରେ ଭାବାଶ୍ରୟୀ ଉପାସନା ଭକ୍ତିର ୬୪ ଅଙ୍ଗ ଓ ଚତୁର୍ଥ ତରଙ୍ଗରେ ପ୍ରେମଭକ୍ତିର ଫଳ ନିରୂପିତ ହୋଇଛି । ଏହି ମତ ପ୍ରତିଷ୍ଠା ପାଇଁ ଲେଖକ ଆଗମ, ନିଗମ, ଭଗବଦ୍‌ଗୀତା, ସ୍କନ୍ଦ ପୁରାଣ ଓ ବ୍ରହ୍ମବୈବର୍ତ୍ତ ପୁରାଣମାନଙ୍କରୁ ବହୁପ୍ରମାଣ ଉଦ୍ଧାର କରିଛନ୍ତି । ଅବଶିଷ୍ଟ ତରଙ୍ଗଗୁଡ଼ିକରେ କବି ବେଦଗ୍ରନ୍ଥ, ଚତୁର, ଶାସ୍ତ୍ରଚକ୍ଷୁ, ପ୍ରତିଭାନ୍ୱିତ, ବଦାନ୍ୟ, ଧାର୍ମିକ, କୃତଜ୍ଞ ସ୍ଥିର, କ୍ଷମାଶୀଳ, ଗମ୍ଭୀର, ଧୃତିମାନ୍, ସୁଖୀ, ଭକ୍ତ, ସୁହୃଦ, ପ୍ରତାପୀ, କୀର୍ତ୍ତିମାନ୍, ହର୍ଷାବ୍ଧ, ଈଶ୍ୱର, ସର୍ବଜ୍ଞ, ସଚ୍ଚିଦାନନ୍ଦ, ବେଣୁମାଧୁର୍ଯ୍ୟ ରୂପମାଧୁର୍ଯ୍ୟ, ଔଦାର୍ଯ୍ୟ, ଆଦର ସାମାନ୍ୟ ବର୍ଣ୍ଣନା କରିବା ସଙ୍ଗେ ସଙ୍ଗେ ବୈଷ୍ଣବାଙ୍କର ସମ୍ମତ କୃପାସିଦ୍ଧା, ନିତ୍ୟସିଦ୍ଧ, ଶାନ୍ତ, ଦାସ୍ୟ, ସଖ୍ୟ, ବାତ୍ସଲ୍ୟ, ଭକ୍ତିରସ, ପ୍ରସାଧନ, କ୍ଷେତ୍ର, ବାସ, ଶଯ୍ୟା ଲୀଳାଶ୍ରବଣ ଓ ସାତ୍ତ୍ୱିକଭାବ ଗୁଡ଼ିକର ସ୍ୱରୂପ ବିଶ୍ଳେଷଣ କରିଛନ୍ତି ।

ଶେଷରେ ଶାନ୍ତଭକ୍ତି, ଅଶ୍ରିତଭକ୍ତି, ଦ୍ୟଭକ୍ତିର, ପ୍ରେମ, ସ୍ନେହ ଉତ୍କଣ୍ଠା ଓ ସିଦ୍ଧି ବିଷୟରେ ପୁରାଣ ସମ୍ମତ ମତ ଉପସ୍ଥାପିତ କରି କାବ୍ୟ ସମାପ୍ତି କରିଛନ୍ତି—ଏଣୁ ସେ କହିଛନ୍ତି —

"ଭକ୍ତିତରଙ୍ଗିଣୀ, କହେ କବିସୂର୍ଯ୍ୟ ବ୍ରହ୍ମା ପୁରାଣ ଘୁଣି ।"

## ପାଟ ରତ୍ନାବଳୀ

ବାଣୀବିହାରସ୍ଥ ପୋଥୀବିଭାଗରେ ଏହାର ଗୋଟିଏ ପାଣ୍ଡୁଲିପି ସଂରକ୍ଷିତ । ଦ୍ୱାଦଶ ଅଧ୍ୟାୟ ବିଶିଷ୍ଟ ଏହି କାବ୍ୟଟି ଲେଖକଙ୍କର ତାଲିକା ଅନୁସାରେ ଦଶମ ସ୍ଥାନ ଗ୍ରହଣ କରେ । କବି ଥରେ ନିଜର ଶିଷ୍ୟ ମଣ୍ଡଳୀ ହରିଦାସ, ଭଗବାନ ଦାସ, କରୁଣାକର ଦାସ, ମାଧବ ଦାସଙ୍କ ଦ୍ୱାରା ପରିବେଷ୍ଟିତ ହୋଇ ତୀର୍ଥାଟନରେ ବାହାରିଲେ । ବାରଟି ମୁଖ୍ୟ ଗୌଡ଼ୀୟ ବୈଷ୍ଣବ ପୀଠ—ଶ୍ରୀପାଟ ଦର୍ଶନ ସମୟରେ ଅନ୍ୟ ଚଉଷଠିଟି ବୈଷ୍ଣବମଠ ଓ ମହନ୍ତମାନଙ୍କୁ ମଧ୍ୟ ଦର୍ଶନ କରିଥିଲେ । ବିଭିନ୍ନ ପୀଠାଧିପତିମାନଙ୍କର ଅଲୌକିକ କୃତିତ୍ୱ ବର୍ଣ୍ଣନା କରିବା ସଙ୍ଗେ ସଙ୍ଗେ ଚୈତନ୍ୟପନ୍ଥୀ ବୈଷ୍ଣବମାନଙ୍କର ଆଚାର ବିଚାର ଓ ଧର୍ମନିଷ୍ଠା ମଧ୍ୟ କବି ବିଶେଷ ଭାବରେ ବର୍ଣ୍ଣନା କରିଛନ୍ତି । ଏହା ତୀର୍ଥଯାତ୍ରାର ଗୋଟିଏ ପ୍ରତ୍ୟକ୍ଷଦର୍ଶୀ ବିବରଣୀ ହୋଇଥିବାରୁ ଏଥିରେ ବହୁ ଐତିହାସିକ ବ୍ୟକ୍ତି ଓ ଭୌଗୋଳିକ କ୍ଷେତ୍ରର ବିଭିନ୍ନ କୌତୂହଳୋଦ୍ଦୀପକ ତଥ୍ୟ ମଧ୍ୟ ସନ୍ନିବେଶିତ ହୋଇଅଛି ।

ଶିଷ୍ୟବୃନ୍ଦ ପରିବେଷ୍ଟିତ କବି ସ୍ୱ-ଆଶ୍ରମରୁ ବାହାରି ମହାନଦୀ, ଦେଉଳୀଗ୍ରାମ କପିଳାସ ଅତିକ୍ରମ କରିବା ପରେ ରେମୁଣାସ୍ଥ କ୍ଷୀରଚୋର ଗୋପୀନାଥ ଦର୍ଶନ କରି ଗୋପୀବଲ୍ଲଭ ପୁରରେ ପ୍ରବେଶ କରନ୍ତି। ପ୍ରସଙ୍ଗକ୍ରମେ କବି ମାଧବେନ୍ଦ୍ରପୁରୀଙ୍କ ଶିଷ୍ୟ ହୃଦୟାନନ୍ଦ, ତାହାଙ୍କ ଶିଷ୍ୟ ଶ୍ୟାମାନନ୍ଦ ଓ ଶ୍ୟାମାନନ୍ଦଙ୍କ ଶିଷ୍ୟ ରସିକାନନ୍ଦ, ତାହାଙ୍କ ପ୍ରଶିଷ୍ୟ ସାଲବେଗ ଇତ୍ୟାଦିଙ୍କ ଅଲୌକିକ ଶକ୍ତିମତ୍ତା ବର୍ଣ୍ଣନା କରି ଉତ୍କଳରେ ସେମାନଙ୍କର ଭକ୍ତିଧର୍ମ ପ୍ରଚାର କଥା ଉଲ୍ଲେଖ କରିଛନ୍ତି। ଅଲୌକିକ ଘଟଣାଗୁଡ଼ିକର ବର୍ଣ୍ଣନାର ଉଦ୍ଦେଶ୍ୟ ହେଉଛି ବୈଷ୍ଣବମାନଙ୍କର ମହତ୍ତ୍ୱ ବିଶ୍ଳେଷଣ କରି ଜନସାଧାରଣଙ୍କୁ ଭକ୍ତିଧର୍ମ ପ୍ରତି ଆକୃଷ୍ଟ କରିବା। ଏହାପରେ ସଦାନନ୍ଦ ନିଜର ସାଂପ୍ରଦାୟିକ ଧର୍ମାଚାର ଓ ବ୍ରହ୍ମର ସର୍ବତ୍ର ବ୍ୟାପ୍ତିର ସୂଚନା ଦେଇ ଗ୍ରନ୍ଥ ସମାପ୍ତି କରିଛନ୍ତି। ଗୋଟିଏ ସାହିତ୍ୟିକ କୃତିଭାବରେ ବିବେଚନା କରିବା ପାଇଁ ଏଥିରେ କୌଣସି ଉପାଦାନ ପରିଲକ୍ଷିତ ହୁଏ ନାହିଁ।

## କୀର୍ତ୍ତନ ଉଜ୍ଜ୍ୱଳ

ଏହି ଗ୍ରନ୍ଥର ଗୋଟିଏ ପୋଥି ବାଣୀବିହାରସ୍ଥ ପୋଥି ସଂଗ୍ରହରେ ସଂରକ୍ଷିତ। ଗ୍ରନ୍ଥଟି ନଅଗୋଟି ପ୍ରଦୀପରେ ସମାପ୍ତ ହୋଇଛି। ଏହା ସଦାନନ୍ଦଙ୍କ ଦୀକ୍ଷାଗୁରୁ ବ୍ରଜକିଶୋର ଦାସ କୃତ ସଂସ୍କୃତ ଗ୍ରନ୍ଥ 'ଶ୍ରବଣ ମଙ୍ଗଳ'ର ବଙ୍ଗାନୁବାଦ। କୀର୍ତ୍ତନ ମାଧ୍ୟମରେ ଶ୍ରୀକୃଷ୍ଣ ଚୈତନ୍ୟଙ୍କ ପ୍ରତି ଭକ୍ତିଭାବନା ଜାଗ୍ରତ କରିବା ଗ୍ରନ୍ଥଟିର ଉଦ୍ଦେଶ୍ୟ। ଗୋଟିଏ ଗୋଟିଏ ପ୍ରଦୀପରେ କେତୋଟି ଲେଖାଏଁ ଗୀତ ଅଛି। ଏସବୁ ଗୀତଗୁଡ଼ିକ ବୈଷ୍ଣବମାନଙ୍କର ଗାନ ଉଦ୍ଦେଶ୍ୟରେ ଲିଖିତ। ଏହା ସମ୍ପୂର୍ଣ୍ଣଭାବରେ ଗୋଟିଏ ଚୈତନ୍ୟପନ୍ଥୀ ବୈଷ୍ଣବମାନଙ୍କର ସାଂପ୍ରଦାୟିକ ଗୀତ। ସାଧାରଣ ସାହିତ୍ୟିକ ଜିଜ୍ଞାସା ପୂର୍ତ୍ତିକଲା ଭଳି କୌଣସି ଉପାଦାନ ଏଥିରେ ନାହିଁ।

## ବିଶ୍ୱମ୍ଭର ବିହାର

ଲେଖକଙ୍କ ବିଂଶତମ ରଚନାଭାବରେ ବିଶ୍ୱମ୍ଭର ବିହାର ଗ୍ରନ୍ଥର ନାମ ମୋହନଲତା କାବ୍ୟରେ ଦେଖିବାକୁ ମିଳେ। ଗ୍ରନ୍ଥଟି ୩୬ ଛାନ୍ଦରେ ସମାପ୍ତ ହୋଇଛି। ଏହି ଗ୍ରନ୍ଥର ଗୋଟିଏ ଜୀର୍ଣ୍ଣ ପାଣ୍ଡୁଲିପି ଓଡ଼ିଶା ଷ୍ଟେଟ୍ ମ୍ୟୁଜିଅମରେ ସଂରକ୍ଷିତ ହୋଇଅଛି। ଏହା 'ବ' ଅକ୍ଷର ମାଧ୍ୟମରେ ରଚିତ। କବିଙ୍କ ପାଣ୍ଡିତ୍ୟ ପୂର୍ଣ୍ଣ ଶବ୍ଦଯୋଜନାରେ ରୀତିକାବ୍ୟ ସୁଲଭ ରଚନା କୌଶଳ ପରିଲକ୍ଷିତ ହୁଏ। ବ୍ରଜପନ୍ଥୀ ବୈଷ୍ଣବମାନଙ୍କ ପାଇଁ ଗ୍ରନ୍ଥଟି ଉପାଦେୟ। ଏଥିରେ ଶ୍ରୀ ଚୈତନ୍ୟ ଓ ତାହାଙ୍କ ପ୍ରିୟସଖା ଗଦାଧର ପଣ୍ଡିତଙ୍କୁ କୃଷ୍ଣ ଓ ରାଧାଙ୍କ ଅବତାର ରୂପେ ବର୍ଣ୍ଣନା କରାଯାଇଛି। ଶ୍ରୀ ଚୈତନ୍ୟଙ୍କ ବାଲ୍ୟ, କୈଶୋର, ପୌଗଣ୍ଡାବସ୍ଥା ବର୍ଣ୍ଣନା କରି

କବି ବିଷ୍ଣୁପ୍ରିୟାଙ୍କ ସହିତ ଚୈତନ୍ୟଙ୍କ ବୈବାହିକ ଜୀବନର ସଂକ୍ଷିପ୍ତ ଚିତ୍ର ଉପସ୍ଥାପିତ କରିଛନ୍ତି । ଶେଷରେ କୃଷ୍ଣ ଭାବରେ ଉନ୍ମତ୍ତ ଚୈତନ୍ୟ ସନ୍ନ୍ୟାସ ଗ୍ରହଣ କରି ବୃନ୍ଦାବନଗାମୀ ହେବାରୁ ମାତା ଶଚୀଦେବୀ ଓ ପତ୍ନୀ ବିଷ୍ଣୁପ୍ରିୟାଙ୍କ ମର୍ମନ୍ତୁଦ ମନୋବେଦନା ବର୍ଣ୍ଣନା କରିଛନ୍ତି । ଶ୍ରୀ ଚୈତନ୍ୟ ଓ ଗଦାଧର ପଣ୍ଡିତଙ୍କୁ କୃଷ୍ଣ ଓ ରାଧାଙ୍କ ଅବତାର ଭାବରେ ପ୍ରତିପାଦନ କରିବାରେ କବି ପଦ୍ମପୁରାଣ, ମତ୍ସ୍ୟ ପୁରାଣ, ନୃସିଂହ ପୁରାଣ, ରାଧାତନ୍ତ୍ର, ଭାଗବତ, ଗୀତା ଓ ବ୍ରହ୍ମବୈବର୍ତ୍ତ ପୁରାଣ, ବ୍ରହ୍ମସଂହିତାଦି ଗ୍ରନ୍ଥକୁ ପ୍ରମାଣ ଭାବରେ ଉଦ୍ଧାର କରି ବହୁ ସଂସ୍କୃତ ଶ୍ଳୋକର ଓଡ଼ିଆ ଅନୁବାଦ ସନ୍ନିବେଶ କରିଛନ୍ତି । କୃଷ୍ଣରୂପୀ ଗୌରାଙ୍ଗଙ୍କ ମହିମାଗାନ କରି ସଦାନନ୍ଦ ଶେଷରେ ଜୈମିନି ଭାରତର ଶ୍ଳୋକ ମାଧ୍ୟମରେ ନିଜ ମତର ସାରବତ୍ତା ପ୍ରଖ୍ୟାପନ କରିଛନ୍ତି ।

'ଯସ୍ମିନ୍ ଶାସ୍ତ୍ରେ ପୁରାଣେ ବା ହରିଭକ୍ତିର୍ନ ଦୃଶ୍ୟତେ
ଶ୍ରୋତବ୍ୟଂ ନୈବ ତଚ୍ଛାସ୍ତ୍ରଂ ଯଦି ବ୍ରହ୍ମା ସ୍ୱୟଂ ବଦେତ୍ ।''

## ଚୌର ଚିନ୍ତାମଣି

ଏ କାବ୍ୟଟି ଚବିଶଟି ଦୀର୍ଘ ଛାନ୍ଦରେ ରଚିତ । ପ୍ରତ୍ୟେକ ଛାନ୍ଦରେ ରୂପ, ଦେହ, ଅନୁରାଗ ରାଣୀ, ଦୂତୀ, ଅଭିସାର ଓ ମିଳନର ବର୍ଣ୍ଣନା ରହିଛି । ଗ୍ରନ୍ଥାରମ୍ଭରେ ନିଜର ଆରାଧ୍ୟ ଦେବତା ନନ୍ଦନନ୍ଦନଙ୍କୁ ବର୍ଣ୍ଣନା କରି ଶ୍ରୀରାଧାଙ୍କୁ ଶ୍ରୀକୃଷ୍ଣଙ୍କ ସ୍ୱ-ଶକ୍ତି ଭାବରେ ପ୍ରତିପାଦନ କରିଛନ୍ତି । ଏଥିରେ ଗୌରଚନ୍ଦ୍ର ଓ ଗଦାଧର କୃଷ୍ଣ-ରାଧା ଲୀଳା ମାଧୁର୍ଯ୍ୟ ଆସ୍ୱାଦନ କରି କିପରି ତନ୍ମୟ ହୋଇଯାଉଥିଲେ ଏବଂ ଚୈତନ୍ୟଙ୍କ ଦେହରେ କିପରି ଅଲୌକିକ ଯୁଗଳ ପ୍ରେମଚେଷ୍ଟା ଜାଗ୍ରତ ହେଉଥିଲା ସେସବୁ ବିସ୍ତୃତ ଭାବେ ଆଲୋଚିତ ହୋଇଛି । ଚୈତନ୍ୟପନ୍ଥୀ ବୈଷ୍ଣବ ସଂପ୍ରଦାୟର ତତ୍ତ୍ୱନିଷ୍ଣାତ ନ ହେଲେ, ଏହାର ମହତ୍ତ୍ୱ ଉପଲବ୍ଧି କରିବା ସାଧାରଣ ପାଠକ ପକ୍ଷରେ ସହଜ ସାଧ୍ୟ ନୁହେଁ । ଏଣୁ କବି ସ୍ପଷ୍ଟ ଭାବରେ ଘୋଷଣା କରିଛନ୍ତି ଯେ ଇଷ୍ଟ ଗୋଷ୍ଠୀରେ ବ୍ରଜପନ୍ଥୀ ବୈଷ୍ଣବମାନେ ହିଁ ଏହାକୁ ଅଧ୍ୟୟନ ଅଧ୍ୟାପନ ଓ ମନନ କରିବେ । ଅନ୍ୟମାନଙ୍କ ପାଇଁ ଏ ଗ୍ରନ୍ଥର ପଠନ ନିଜେ କବି ନିଷିଦ୍ଧ କରିଛନ୍ତି । ଏହାର ପଠନ ଓ ଅବଧାରଣ ପାଇଁ 'ଗୁରୁଦତ୍ତ ସିଦ୍ଧଦେହ' ଦରକାର । କବିଙ୍କ ଭାଷାରେ—

''ଗୁରୁଦତ୍ତ ସିଦ୍ଧ ଦେହ ଆରୋପଣେ ରହି
ଶ୍ରବଣ କର ଏ ଗ୍ରନ୍ଥ ହୋଇ ବ୍ରଜବାସୀ

ବ୍ରଜ ଉପାସକ ବିନା ନ ଶୁଣିବେ ଆନ
ଏ ବିଷୟେ ସର୍ବଦା ହୋଇବ ସାବଧାନ ॥"

ଏଥିରେ ଗୌରାଙ୍ଗ ଗଦାଧରଙ୍କ ଯୁଗଳ ପ୍ରେମଚେଷ୍ଟାର ବର୍ଣ୍ଣନା ସଙ୍ଗେ ସଙ୍ଗେ ତତ୍ସମ୍ପର୍କୀୟ ତାତ୍ତ୍ୱିକ ବ୍ୟାଖ୍ୟାର ଅବତାରଣା ମଧ୍ୟ କରାଯାଇଛି । କିନ୍ତୁ ଏହାସବୁ ସଂପୂର୍ଣ୍ଣ ଭାବେ ଗୋଟିଏ ସାଂପ୍ରଦାୟିକ ତନ୍ତ୍ର ଧାରି ହୋଇ ଥିବାରୁ ଏବଂ ସାଧାରଣ ପାଠକମାନଙ୍କର ସେଥିରେ ବିଶେଷ ଅଭିନିବେଶ ନ ଥିବାରୁ ଗୋଟିଏ ସାହିତ୍ୟିକ ଦୃଷ୍ଟିକୋଣରେ ଏହାର ସମୀକ୍ଷା ଅନାବଶ୍ୟକ ମନେହୁଏ । ଏ କାବ୍ୟଟିରେ ସଦାନନ୍ଦଙ୍କ ସହଜ ସୁଲଳିତ କବିତ୍ୱର ସ୍ପର୍ଶ ସର୍ବତ୍ର ଅନୁଭବ କରିହୁଏ ।

## ପ୍ରେମ କଳ୍ପଲତା

ସଦାନନ୍ଦଙ୍କ କାବ୍ୟମାନଙ୍କ ମଧ୍ୟରେ ପ୍ରେମ କଳ୍ପଲତାଟି କୃଷ୍ଣଲୀଳାତ୍ମକ ଗୋଟିଏ କ୍ଷୁଦ୍ର କାବ୍ୟ । ଏହା ଷୋଡ଼ଶ ଛାନ୍ଦ ବିଶିଷ୍ଟ ଓ ପ୍ରତ୍ୟେକ ଛାନ୍ଦଟି ଷୋହଳଟି ପଦରେ ସଂପୂର୍ଣ୍ଣ ହୋଇଛି । ରୂପଗୋସ୍ୱାମୀଙ୍କ 'ହଂସଦୂତ' ଗ୍ରନ୍ଥରେ ଏହାର ବିଷୟବସ୍ତୁ ପରିକଳ୍ପିତ । କିନ୍ତୁ କବି, କେଉଁଠି ହେଲେ ଏକଥାର ସୂଚନା ଦେଇ ନାହାନ୍ତି । କବିଙ୍କ ଅନ୍ୟାନ୍ୟ ଅନେକ ଗ୍ରନ୍ଥର ମୂଳ ଉତ୍ସ ବିଷୟରେ ସେ ନିଜେ ସ୍ପଷ୍ଟ ସୂଚନା ଦେଇଥିଲେ ମଧ୍ୟ ଏଠାରେ ତାହାର ବ୍ୟତିକ୍ରମ ପରିଲକ୍ଷିତ ହୁଏ ।

କବି ପ୍ରଥମ ଛାନ୍ଦରେ ମଙ୍ଗଳାଚରଣ କରି ରାମେଶ୍ୱରୀ ଓ ଚିପରାଜଙ୍କୁ ବନ୍ଦନା କରିଛନ୍ତି । ଏଥିରେ ବର୍ଣ୍ଣିତ ବିଷୟର ମହତ୍ତ୍ୱ ଓ ଗୁରୁତ୍ୱ ପ୍ରତିପାଦନ କରିବାକୁ ଯାଇ ପୁରାଣମାନଙ୍କରେ ଏହାର କଥ୍ୟ ପ୍ରବାହମାନତାର ସୂଚନା ଦେଇଛନ୍ତି । ନିଜର ଦୀନତା ପ୍ରକାଶ କରି କୃଷ୍ଣଙ୍କୁ ପ୍ରାର୍ଥନା କରି କହିଛନ୍ତି ଯେ ସଂସାର ରୂପକ ବିଷମ୍ବ ବିଷ ଗର୍ତ୍ତ ପ୍ରତି ଅହରହ ପ୍ରଧାବିତ ତାଙ୍କର ଚପଳ ମନକୁ କୃଷ୍ଣଲୀଳା ଆସ୍ୱାଦନରେ ସେ ନିମଜ୍ଜିତ କରନ୍ତୁ । ପରମ୍ପରାକ୍ରମେ ସାଧୁପ୍ରଶଂସା ଓ ଖଳନିନ୍ଦା କରି ରାଧାକୃଷ୍ଣ ଯୁଗଳ ଲୀଳା ଓ ଧର୍ମଯୋଧ୍ୟା ପୀଠର ମାହାତ୍ମ୍ୟ କୀର୍ତ୍ତନ କରିଛନ୍ତି । 'ମହାଜନ ଆଜ୍ଞା ଗ୍ରନ୍ଥ' ଭାବରେ ଏହାକୁ ଗ୍ରହଣ କରିବା ପାଇଁ ସେ ପାଠକମାନଙ୍କୁ ନିବେଦନ କରିଛନ୍ତି । କଥାବସ୍ତୁର ବିକାଶ କ୍ରମରେ ବ୍ରଜବାସୀ ଭାବାମୃତ ଓ ଲୀଳାଧାମର ମହତ୍ତ୍ୱ ପ୍ରତିପାଦନ କରି ଯୁଗଜନମାନଙ୍କୁ ଯଜନ ଯାଜନ କିମ୍ବା ଛାଡ଼ି ହରି କୀର୍ତ୍ତନ କରିବା ପାଇଁ ପ୍ରବର୍ତ୍ତାଇଛନ୍ତି । ତାପରେ ହାସ୍ୟ କଥାର ଅବତାରଣା କରାଯାଇଛି ।

ଏବେ ହଠାତ୍ ସମଗ୍ର ଗୋପପୁରରେ ପ୍ରଚାରିତ ହୋଇଗଲା ଯେ, କଂସ ରାଜାର ନିମନ୍ତ୍ରଣ କ୍ରମେ କୃଷ୍ଣ ବଳରାମ ମଥୁରାପୁରକୁ ଯିବେ। ଏକଥା ଶୁଣି ବ୍ରଜଭୂମିର ଆବାଳବୃଦ୍ଧବନିତା ହାହାକାର କରି ଉଠିଲେ। କ୍ରନ୍ଦନ ରୋଳରେ ସାରା ଗୋପନଗର ଶୋକାଚ୍ଛନ୍ନ ହୋଇଗଲା। ପରେ ପରେ ମାତ୍ର ଶ୍ରବଣ ପାଇଁ ପାଇଁ କୃଷ୍ଣ ମଥୁରା ଯିବା ସମ୍ବାଦ ପ୍ରଚାରିତ ହେବାରୁ ଅବସ୍ଥା ଏକପ୍ରକାର ଆୟତ୍ତା-ଧୀନ ହେଲା। ତଥାପି ଗୋପୀମାନେ କ୍ଷଣକର ବିଚ୍ଛେଦକୁ କୋଟିଏ ଯୁଗର ବିଚ୍ଛେଦ ପରି ମଣିଲେ। ଶୋକାଭିଭୂତ ଗୋପିକାମାନଙ୍କୁ ଓ ରାଧାଙ୍କୁ ନାନା ପ୍ରକାର ଚତୁର ମିଷ୍ଟ କଥା କହି କୃଷ୍ଣ ପ୍ରବୋଧନା ଦେଲେ। ରାମକୃଷ୍ଣ ରଥ ଉପରେ ବିଜେ ହେଲେ। ରଥ ଚାଲିଲା, ସେ ଦୃଷ୍ଟି ପଥରୁ ଅନ୍ତର୍ହିତ ହେବାରୁ ଗୋପୀମାନେ କ୍ରନ୍ଦନ କଲେ। ରାଧା କାନ୍ଦି କାନ୍ଦି ଚେତନାହତ ହୋଇ ପଡ଼ିଗଲେ। ପୁଣି ଚେତା ପାଇ ବ୍ୟାଧିଗ୍ରସ୍ତ ହୃଦୟରେ କ୍ରନ୍ଦନ କଲେ। କୃଷ୍ଣ ଯଥାସମୟରେ ମଥୁରା ନଗରୀର ଉପକଣ୍ଠରେ ପହଞ୍ଚି ରଜକକୁ ମାରି ମୁକ୍ତି ଦେଲେ। ସୁବସ୍ତ୍ର ପରିଧାନ କଲେ। ବାଟରେ କୁବ୍ଜାକୁ ଦିବ୍ୟ ସୁନ୍ଦରୀ ନାରୀରେ ପରିଣତ କଲେ। ଦ୍ୱାରଦେଶରେ ଥିବା ହାତୀ ସହିତ ମାହୁନ୍ତକୁ ବଧକରି କଂସ ନିକଟକୁ ଅଗ୍ରସର ହେଲେ। ବାଟରେ ବାଧା ସୃଷ୍ଟି କରୁଥିବା ଜଗୁଆଳୀ ମଲ୍ଲମାନଙ୍କୁ ମର୍ଦ୍ଦନ କରି କଂସ ନିକଟରେ ମଞ୍ଚ ଉପରେ ପହଞ୍ଚିଲେ। "ମାମୁଙ୍କୁ କହିଲେ, ଗ୍ରାମକୁ ଯାଇ, ମୋର କି ଦୋଷ, ପାଶରେ ଦେଖିଲେ ଯାହାରେ ପ୍ରାଣ ତେଜିଲା କଂସ।" ତାପରେ ସେ ଉଗ୍ରସେନଙ୍କୁ ରାଜା କଲେ। ବସୁଦେବ, ଦେବକୀ ଓ ଯାଦବମାନେ ମହା ଆନନ୍ଦରେ କାଳ କାଟିଲେ। କିନ୍ତୁ ମଥୁରାର ରାଜ ଐଶ୍ୱର୍ଯ୍ୟ ମଧ୍ୟରେ କ୍ଷଣେ ସୁଦ୍ଧା କୃଷ୍ଣ ସ୍ଥିର ହୋଇ ରହିପାରିଲେ ନାହିଁ। ତାଙ୍କର ଚିନ୍ତା, ଚୈତନ୍ୟ ଓ ଦୃଷ୍ଟି ସବୁବେଳେ ବୃନ୍ଦାବନରେ ନିବଦ୍ଧ ରହିଲା। ଗୋପୀ ବିରହ ଜନିତ ପ୍ରବଳ ବ୍ୟାଧି ଦିନକୁ ଦିନ ବଳି ପଡ଼ିଲା। ସେ ଏକାନ୍ତରେ ରାଧାନାମ ଘୋଷି ଘୋଷି ବ୍ୟଥିତ ହୃଦୟରେ ସମୟ ଅତିବାହିତ କଲେ। ବୃନ୍ଦାବନରେ ଏଣେ ଜୀବନର ଧନ ତାଙ୍କର ସ୍ମୃତି ତାଙ୍କୁ ଉଦ୍‌ବେଳିତ କଲା। କୃଷ୍ଣ ଉଦ୍ଧବଙ୍କୁ ଡାକି ବ୍ରଜକୁ ପଠାଇଲେ ଓ କହିଲେ ଗୋପୀମାନଙ୍କୁ 'ବ୍ରହ୍ମ ଉପଦେଶ' ଦେଇ ସେମାନଙ୍କର ବ୍ୟଥିତ ପ୍ରାଣକୁ ଶାନ୍ତ କରିବ। ମୁଁ ବ୍ରହ୍ମ ଅଛି ସବୁ ବସ୍ତୁରେ" ଏ କଥା ବୁଝାଇ ଦେବ। ଉଦ୍ଧବ ଗୋପପୁରକୁ ଗଲେ। ନନ୍ଦ ଯଶୋଦା ଓ ଗୋପିକାମାନେ କୃଷ୍ଣଙ୍କ କୁଶଳ ସମାଚାର ପଚାରି ବସିଲେ। ରାଧା ଓ ଗୋପିକାମାନଙ୍କ ଏକାନ୍ତ ଭକ୍ତିଦେଖି ଉଦ୍ଧବ ତାଙ୍କୁ ନିଜ୍ ଶ୍ରେଷ୍ଠ ମନେକଲେ। ତଥାପି ସେ କୃଷ୍ଣଙ୍କ ବ୍ରହ୍ମତ୍ୱ ଓ ସକଳ ଘଟରେ ତାଙ୍କର ସ୍ଥିତି କଥା ଗୋପୀମାନଙ୍କୁ ବୁଝାଇଲେ। ସେହି ଶୁଷ୍କ କଥାରେ ଗୋପୀମାନଙ୍କ ମନ ପାଇଲା ନାହିଁ। ସେମାନେ କେବଳ କୃଷ୍ଣଙ୍କୁ ଫେରାଇ ଆଣିବା ପାଇଁ

ବାରମ୍ବାର ଅନୁରୋଧ କଲେ । ଶାସ୍ତ୍ରାନୁମୋଦିତ ଜ୍ଞାନମାର୍ଗର ତାତ୍ତ୍ୱିକ ବ୍ୟାଖ୍ୟାନ ଦେଇ ଉଦ୍ଧବ ବ୍ରହ୍ମର ଏକତ୍ୱ ପ୍ରତିପାଦନ କଲେ—'ବ୍ରହ୍ମ ଏକୈବ ନା ପରଃ' ସେ ବ୍ରହ୍ମ ହେଉଛନ୍ତି କୃଷ୍ଣ, ଆଉ ସବୁ ମାୟା । ଏହାର ଉତ୍ତରରେ ଗୋପୀମାନେ ପଚାରିଲେ—

"ବୋଲ ଯେ ଶାସ୍ତ୍ରେ ଜ୍ଞାନ ଭକ୍ତି ଦୁଇକି ଲେଖିଛୁ ଏକ କରିବାର
ଗୋପାଳେ ଯେତେହେଁ ଚୋରସ ସଙ୍ଗେ ଗିଳା ବହଇ ଦେ କି ଖାଇବାର ?"

ଏହିପରି ନାନା ଯୁକ୍ତି ଛଳରେ ଗୋପୀମାନେ ଜ୍ଞାନ ମାର୍ଗକୁ ଉପହାସ କରି କହିଲେ ଯେ, କୃଷ୍ଣ ରାଜ ଭୋଗ ବିଳାସରେ ବିହ୍ୱଳ ହୋଇ ଗୋପୀମାନଙ୍କୁ ପାଶୋରି ଦେଲେଣି । ତାଙ୍କୁ ଶୀଘ୍ର ଏଠାକୁ ଫେରାଇ ଆଣିବାର ବ୍ୟବସ୍ଥା କର । ଉଦ୍ଧବ ଯେତେ ବୁଝାଇଲେ ମଧ୍ୟ ଗୋପୀମାନଙ୍କର ମନ ବୁଝିଲା ନାହିଁ । ଶେଷରେ ଉଦ୍ଧବ ମଥୁରାକୁ ଫେରି ଆସି ଗୋପୀମାନେ ଜ୍ଞାନ ମାର୍ଗକୁ 'କଡ଼ାକର' ମୂଲ୍ୟ ଦେଉ ନ ଥିବା କଥା କୃଷ୍ଣଙ୍କୁ କହିଲେ । ଭକ୍ତ ବତ୍ସଳ କୃଷ୍ଣ ରାଧାଙ୍କ କଥା ସବୁ ବୁଝିଲେ । ଏତିକିରେ କାବ୍ୟର ପରିସମାପ୍ତି ଘଟିଛି ।

ଏ କାବ୍ୟରେ କବି ଜ୍ଞାନମାର୍ଗର ଅସାରତା ଓ ଭକ୍ତିମାର୍ଗର ସାରବତ୍ତା ପ୍ରତିଷ୍ଠା କରିବା ପାଇଁ ଚେଷ୍ଟା କରିଛନ୍ତି । ମଥୁରାମଙ୍ଗଳରେ ଉଦ୍ଧବ ଓ ଗୋପିକା-ମାନଙ୍କ ମଧ୍ୟରେ ଏହିପରି ଆଲୋଚନାର ଧାରା ଦେଖିବାକୁ ମିଳେ । ସେଠାରେ ମଧ୍ୟ ମଥୁରାମଙ୍ଗଳର କବି ସବୁ ଆଲୋଚନା ଶେଷରେ "ଜ୍ଞାନ ଛାଡ଼ି ଭକ୍ତି ପାଦେ ବନ୍ଦେ" ବୋଲି ଘୋଷଣା କରି ଭକ୍ତି ମାର୍ଗର ମହତ୍ତ୍ୱ ପ୍ରତିପାଦିତ କରିଛନ୍ତି । ଜ୍ଞାନମିଶ୍ରା ଭକ୍ତିର ପୀଠ ଉତ୍କଳରେ ଧୀରେ ଧୀରେ କିପରି ଚୈତନ୍ୟପନ୍ଥୀ ପ୍ରେମ ଭକ୍ତିର ଧାରା ପ୍ରବାହିତ ହେବାକୁ ଲାଗିଲା ତାହାର ଐତିହାସିକ ବିବର୍ତ୍ତନର ସ୍ୱାକ୍ଷର ଏଥିରେ ସ୍ପଷ୍ଟ ।

କ୍ଷୁଦ୍ର କଳେବର ବିଶିଷ୍ଟ ଏହି କାବ୍ୟର ସଂକ୍ଷିପ୍ତ ଛାନ୍ଦଗୁଡ଼ିକ ଅନ୍ୟାନ୍ୟ ଛାନ୍ଦ ତୁଳନାରେ ସୁପରିକଳ୍ପିତ । ଆମୂଳଚୂଳ ବିବିଧ ଅନୁପ୍ରାସ, ଯମକ, ଉପମା ଓ ରୂପକ ପ୍ରଭୃତି ସହଜସିଦ୍ଧ ଅଳଙ୍କାରମାନଙ୍କର ସୁଷମ ସମାବେଶରେ ଛାନ୍ଦଗୁଡ଼ିକ ମଧୁର କୋମଳ ହୋଇ ଉଠିଛି । ଅପେକ୍ଷାକୃତ ଏ କାବ୍ୟର ଭାଷା ମାର୍ଜିତ ଓ ଭାବବ୍ୟଞ୍ଜକ । ସଂସ୍କୃତ ଶବ୍ଦାବଳୀର ଯଥାର୍ଥ ପ୍ରୟୋଗରେ ଛାନ୍ଦଗୁଡ଼ିକ ଗାମ୍ଭୀର୍ଯ୍ୟପୂର୍ଣ୍ଣ ପରିବେଶ ସୃଷ୍ଟି କରୁଛନ୍ତି । ଭଗବତ୍ ପ୍ରାପ୍ତି ପାଇଁ କଠିନ ଜ୍ଞାନମାର୍ଗ ଅପେକ୍ଷା ଭକ୍ତିମାର୍ଗ କିପରି ସୁଲଭ ଓ ସହଜ ସାଧ୍ୟ ତାହା ପ୍ରତିଷ୍ଠା କରିବାରେ କବିଙ୍କର କର୍ମକୁଶଳତାର ଯଥେଷ୍ଟ ପରିଚୟ ଏଥିରୁ ମିଳେ । ଭକ୍ତିଭାବ ବିଗଳିତ ହୃଦୟର ଆଲେଖ୍ୟ ଅଙ୍କନରେ କବିଙ୍କ ସିଦ୍ଧହସ୍ତତାର ଏହା ଗୋଟିଏ ନିର୍ଦ୍ଦିଷ୍ଟ ନିଦର୍ଶନ ।

## ବ୍ରଜଲୀଳାମୃତ ସମୁଦ୍ର

ଛପନଟି ଦୀର୍ଘ ଛାନ୍ଦ ବିଶିଷ୍ଟ ବ୍ରଜ ଲୀଳାମୃତ ସମୁଦ୍ର କାବ୍ୟଟି କେଉଁଙ୍କରି ସପ୍ତୋଦଶ ଗ୍ରନ୍ଥ । ଶ୍ରୀରୂପ ଗୋସ୍ୱାମୀଙ୍କ 'ବିଦଗ୍ଧ ମାଧବ' ନାମକ ସଂସ୍କୃତ ନାଟକକୁ ବୈଷ୍ଣବ କବି ଯଦୁନନ୍ଦନ ଦାସ ବଙ୍ଗଳାରେ ଛନ୍ଦୋବଦ୍ଧ ଅନୁବାଦ କରିଛନ୍ତି । ବଙ୍ଗାନୁବାଦର ଛନ୍ଦୋବଦ୍ଧ ଓଡ଼ିଆ ରୂପାନ୍ତର କରିଛନ୍ତି ସଦାନନ୍ଦ । କବିଙ୍କ ଭାଷାରେ—

ଶ୍ରୀରୂପ ଗୋସାଇଁ ମୁଖରୁ ଉଦ୍‌ଭବ ।
ପ୍ରଥମ ଜନ୍ମେ ଏ ବିଦଗ୍ଧ ମାଧବ ।।
ପ୍ରାକୃତେ ବଙ୍ଗଳା ଭାଷାରେ ଏ ଦ୍ୱିତୀୟେ ।
ରାଧା କୃଷ୍ଣ ଲୀଳା କଦମ୍ବ ଏ ।।
ଉତ୍କଳୀ ଛନ୍ଦୋବଦ୍ଧ ତୃତୀୟ ଜନ୍ମେ ।
ବ୍ରଜଲୀଳାମୃତ ସମୁଦ୍ର ଏ ନାମେ ।।

—ବ୍ର. ଲୀ. ସ. ୧୫ ଛାନ୍ଦ ୩୭-୩୯ ପଦ

ଏହା ଗୋଟିଏ ଅନୁଦିତ କାବ୍ୟ ହୋଇଥିବାରୁ କବି କଳ୍ପନାରେ କୃତିତ୍ୱ ମୌଳିକତା ଦୃଷ୍ଟିଗୋଚର ହୁଏ । କବିଙ୍କ ପ୍ରତିଭା ଓ ପାଣ୍ଡିତ୍ୟ ବିକାଶ ଏଥିରେ ଦେଖିବାକୁ ମିଳେ ନାହିଁ । ଛନ୍ଦୋବଦ୍ଧ ହେଲେ ମଧ୍ୟ ସାଧାରଣତଃ ଏହା ପୁରାଣ ଧର୍ମୀ । ଶ୍ରୀକୃଷ୍ଣଙ୍କର ସମଗ୍ର ବ୍ରଜଲୀଳା ଏଥିରେ ବର୍ଣ୍ଣିତ । କବି ଖୁବ୍ ଅଳ୍ପ ସମୟ ମଧ୍ୟରେ ଏ ଗ୍ରନ୍ଥଟି ଆରମ୍ଭ କରି ସଂପୂର୍ଣ୍ଣ କରିଛନ୍ତି । ବୋଧହୁଏ ବହୁ ଗ୍ରନ୍ଥ ପ୍ରଣୟନ ଅଭିଳାଷ କବିଙ୍କୁ ଗୋଟିଏ ମାସରେ ଏଗ୍ରନ୍ଥ ଶେଷ କରିବା ପାଇଁ ପ୍ରଣୋଦିତ କରିଅଛି । ସେଥିପାଇଁ ସେ ଲେଖିଛନ୍ତି—"ମାସକେ ସଂପୂର୍ଣ୍ଣ କଲା ଉଦ୍‌ବେଗ ମନରେ ।" ଗ୍ରନ୍ଥଟି ବୈଷ୍ଣବମାନଙ୍କର ଗଳାର ହାର ସ୍ୱରୂପ ହୋଇଛି । ରାଧା ଓ କୃଷ୍ଣ ଲୀଳା ପ୍ରତି ପାଠକ ସାଧାରଣଙ୍କ ଦୃଷ୍ଟି ଆକର୍ଷଣ କରି ସେମାନଙ୍କ ମନରେ ଭକ୍ତିଭାବର ଉଦ୍ରେକ କରିବା ଗ୍ରନ୍ଥଟିର ଏକମାତ୍ର ଉଦ୍ଦେଶ୍ୟ ଏବଂ ତାହା ସମ୍ପାଦନ କରିବାରେ ଏହା ଗୋଟିଏ ସଫଳ କୃତି । ଏହି ଗ୍ରନ୍ଥର ଗୋଟିଏ ପାଣ୍ଡୁଲିପି ବାଣୀବିହାରସ୍ଥ ପୋଥିବିଭାଗରେ ସଂରକ୍ଷିତ ।

## ଶ୍ରୀମଦ୍ ଭଗବଦ୍‌ଗୀତାନୁବାଦ

ବାଣୀବିହାରସ୍ଥ ପୋଥି ବିଭାଗରେ ଏହାର ଗୋଟିଏ ପାଣ୍ଡୁଲିପି ସଂରକ୍ଷିତ ହୋଇଅଛି । କବି ଉତ୍କଳଭାଷାରେ ଶ୍ରୀମଦ୍ ଭଗବଦ୍ ଗୀତାର ଅନୁବାଦ

କରିଛନ୍ତି । କବି ନିଜର ଜାତି ଗୋତ୍ର, ବଂଶ ପିତୃପିତାମହ ଇତ୍ୟାଦିଙ୍କ ନାମ ଉଲ୍ଲେଖ କରି ଅନୁବାଦ ଆରମ୍ଭ କରିଛନ୍ତି । ଭାଷାର ସ୍ୱାଭାବିକତା ଓ ଭାବର ସ୍ୱଚ୍ଛନ୍ଦ ପରିପ୍ରକାଶ ଗ୍ରନ୍ଥଟିର ଏକକ ବୈଶିଷ୍ଟ୍ୟ । ଗୀତାର ଭାବ ସମ୍ଭାରକୁ ଯଥା ସମ୍ଭବ ସରଳ ଭାବରେ ବ୍ୟକ୍ତ କରିବା ଲେଖକଙ୍କର ଉଦ୍ଦେଶ୍ୟ ହୋଇଥିବାରୁ ଏଥିରେ ସ୍ୱକୀୟ କବିତ୍ୱ ବ୍ୟଞ୍ଜନାର କୌଣସି ସୁଯୋଗ କବି ପାଇନାହାନ୍ତି । ସେ ସମୟରେ ସଂସ୍କୃତ ଅନଭିଜ୍ଞ ଧାର୍ମିକ ଓଡ଼ିଆ ପାଠକମାନଙ୍କର ଜିଜ୍ଞାସାକୁ ଚରିତାର୍ଥ କରିବାରେ ଏ ଗ୍ରନ୍ଥର ଉପାଦେୟତା ଅବଶ୍ୟ ସ୍ୱୀକାର୍ଯ୍ୟ ।

## ସଙ୍ଗୀତ ସଦାନନ୍ଦ

ସଙ୍ଗୀତ ସଦାନନ୍ଦ ଗ୍ରନ୍ଥଟି ଦଶଟି ଛାନ୍ଦରେ ବିଭକ୍ତ । କବି ସଂସ୍କୃତ ଗ୍ରନ୍ଥମାନଙ୍କରୁ ବିଷୟ ସଂଗ୍ରହ କରି ତୁଳନା ମୂଳକ ଭାବରେ ଏଠାରେ ସେ ସବୁ କଥା ଆଲୋଚନା କରୁଛନ୍ତି । ବୋଲି ନିଜେ ଗ୍ରନ୍ଥ ପରିଚୟ ପ୍ରସଙ୍ଗରେ ଉଲ୍ଲେଖ କରିଛନ୍ତି —

ବହୁତ ଗ୍ରନ୍ଥରୁ ଆଣି ତୋଳା କରି ଧୀରେ
ସଙ୍ଗୀତ ସଦାନନ୍ଦ କହିଲେ ଯେ ଛାନ୍ଦରେ
ଗୀତ, ବାଦ୍ୟ, ତାଳ, ନୃତ୍ୟ ଇତ୍ୟାଦି ଲକ୍ଷଣ
ଦଶ ଛାନ୍ଦରେ ବର୍ଣ୍ଣିଲ ପୁରାଣ ପ୍ରମାଣ ।

—ମୋହନ କଳ୍ପଲତା ୪୭ପୃଷ୍ଠା

ଗ୍ରନ୍ଥର ଆଭିମୁଖ୍ୟ ଓ ଉପଯୋଗିତା ବିଷୟରେ ନିଜର ମତାମତ ଦେବାକୁ ଯାଇ କବି କହିଛନ୍ତି—

"ଗ୍ରନ୍ଥ ଥିଲେ ସର୍ବେ କେହି (କପରି) ବୁଝିବେ ସଂସ୍କୃତ
ଏଣୁ ପରାକୃତେ କହିବାକୁ ହୋଏ ଚିତ୍ତ ।"

ଉଲ୍ଲିଖିତ କବି ବାଣୀରୁ ଜଣାଯାଏ ଯେ ସଦାନନ୍ଦ ସଙ୍ଗୀତ ବିଷୟରେ ଏଠାରେ କିଛି ମୌଳିକ ତତ୍ତ୍ୱ ବା ତଥ୍ୟ ପରିବେଷଣ କରିନାହାନ୍ତି । କିନ୍ତୁ ସଂସ୍କୃତ ଶାସ୍ତ୍ର ବିଷୟରେ ଜନସାଧାରଣଙ୍କର ଅଜ୍ଞତା ହିଁ ସଙ୍ଗୀତ ପରି ଗୋଟିଏ ସୁକୁମାର ଲଳିତ କଳାଠାରୁ ସେମାନଙ୍କୁ ଦୂରରେ ରଖିଛି । ଏଣୁ କବିଙ୍କର ଏହି ବିନମ୍ର ପ୍ରୟାସ । ଓଡ଼ିଆରେ ଛାନ୍ଦୋବଦ୍ଧ ପଦ୍ଧତିରେ ଲେଖା ହୋଇଥିବା ପ୍ରକାଣ୍ଡ ସଂସ୍କୃତ ଗ୍ରନ୍ଥମାନଙ୍କର ସଂକ୍ଷିପ୍ତ ସାର ପଢି ରସିକ ଭାବୁକମାନେ ସଙ୍ଗୀତର

ମାଧୁର୍ଯ୍ୟ ଉପଭୋଗ କରନ୍ତୁ ଏହାହିଁ ବୈଷ୍ଣବ କବି ସଦାନନ୍ଦଙ୍କ ଏକାନ୍ତ କାମନା । ପ୍ରଥମ ଛାନ୍ଦରେ କବି ସଙ୍ଗୀତସାର, ସଙ୍ଗୀତ ପ୍ରକାଶ ଓ ନାରଦ ସଂହିତା ପ୍ରଭୃତି ଗ୍ରନ୍ଥ ଅବଲମ୍ବନରେ ସ୍ୱରନିରୂପଣ ଓ ସଙ୍ଗୀତର ଲକ୍ଷଣ ପର୍ଯ୍ୟାଲୋଚନା କରିଛନ୍ତି । ଦ୍ୱିତୀୟ ଛାନ୍ଦରେ ରାଗରାଗିଣୀ ବିଷୟ ଚର୍ଚ୍ଚା କରାଯାଇ ଛଅ ଗୋଟି ରାଗ ଓ ସେମାନଙ୍କର ୩୬ ନାୟିକାଙ୍କୁ ରାଗିଣୀ ରୂପରେ ବର୍ଣ୍ଣନା କରାଯାଇଛି । କର୍ଣ୍ଣାଟ, ନାଟ, ମହ୍ଲାର, ଦେଶାକ୍ଷ, ମାଳବ ଓ ବସନ୍ତ ହେଲେ ରାଗ । ରାଗିଣୀମାନେ ହେଲେ — ଚନ୍ଦନା, ମାଳଶ୍ରୀ, ସିନ୍ଧୁରା, 'ବେଲ୍ହାବଳୀ, ପ୍ରଭାତ, କାମ୍ବୋଜ, ନାଟ ଭଷା, ନାଟିକା, ଗୁଣୋତ୍ତରୀ, କେଦାରୀ, ମୁଖରୀ, ମହ୍ଲାରି, ଲଳିତା, ପାଠିନ ମଞ୍ଜରୀ, ମଧୁକରୀ, ଦୁର୍ଦ୍ଧକାରୀ, ବେଣୀ, ଗୁର୍ଜ୍ଜରୀ, ରାମକେରୀ, ଗୁଣ୍ଡକରି, ସୁରହିତା, ଧନାଶ୍ରୀ, କରଡ଼ା, ଶ୍ରୀକେଦାର, ସଞ୍ଜା, ମେଘମାଳିନୀ, ବଧୂକେଶ୍ରୀ, ଭୈରବୀ, ବଙ୍ଗରୀ, ମେଘ, ପଞ୍ଚମୀ, ଚତୁର୍ଥୀ, ଅମର ତୋଡ଼ି ଇତ୍ୟାଦି ପରବର୍ତ୍ତୀ ଛାନ୍ଦ ମାନଙ୍କରେ ରାଗମାନଙ୍କର ମୂର୍ତ୍ତି, ଗାୟନ କାଳ, ଏକାଦଶ ତାଳ ଲକ୍ଷଣ, ଗ୍ରହ, ଲଘୁ, ମାନ, ଆଳାପ, ଅନିବନ୍ଧ, ନିବନ୍ଧ, ତନ୍ତ୍ରୀ, ବୀଣା, ମୁରଜ, ଆନନ୍ଦ, ବଂଶୀ, ନାଟ, ନାଟ୍ୟ ଓ ନୃତ୍ୟ ଇତ୍ୟାଦି ବର୍ଣ୍ଣନା କରି ସ୍ଥାନେ ସ୍ଥାନେ ସଂସ୍କୃତ, ବଙ୍ଗଳା ଓ ଓଡ଼ିଆ ଉଦାହରଣ ଦେଇ ବୁଝାଇଛନ୍ତି ।

ଏ ସବୁ କଥା ଲେଖିବା ପାଇଁ ସେ ସଂଗୀତ ନାରାୟଣ, ସଙ୍ଗୀତ ଦାମୋଦର, ସଙ୍ଗୀତ କଳାଙ୍କୁର, ସଙ୍ଗୀତ ଚନ୍ଦ୍ରିକା, ସଙ୍ଗୀତ ରତ୍ନମାଳା, ନାରଦ ସଂହିତା, ଭରତମୁନିଙ୍କ ନାଟ୍ୟଶାସ୍ତ୍ର, ସଂଗୀତ କୌମୁଦୀ ଇତ୍ୟାଦି ଗ୍ରନ୍ଥର ସାହାଯ୍ୟ ଗ୍ରହଣ କରିଛନ୍ତି । ଉଦ୍ଦେଶ୍ୟ —

"କେବଳ ଗ୍ରାମ୍ୟ ଭାଷାରେ ପ୍ରକାଶିତ ଅଙ୍ଗ ବୁଝିବା ହେତୁରେ ।"

ଭାରତୀୟ ତଥା ଉତ୍କଳୀୟ ବହୁ ଦୁର୍ଲ୍ଲଭ ସଂଗୀତ ଶାସ୍ତ୍ରର ସଂକ୍ଷିପ୍ତ ସାର ଏଥିରେ ସୁରକ୍ଷିତ ହୋଇ ରହିଥିବାରୁ ଗ୍ରନ୍ଥଟି ବେଶ୍ ଉପାଦେୟ ।

## ବାଳବୋଧିନୀ

ଏହା ଗୋଟିଏ କ୍ଷୁଦ୍ରକାୟ ସଙ୍ଗୀତ ପୁସ୍ତକ । ଏକମାତ୍ର ଭୁର୍ଜ୍ଜ ବର୍ଣ୍ଣିତ ଗୋଟିଏ ପୋଥି ଓଡ଼ିଶା ଷ୍ଟେଟ୍ ମ୍ୟୁଜିଅମ୍‌ରେ ସୁରକ୍ଷିତ ଅବସ୍ଥାରେ ରହିଅଛି । ବାଳକମାନଙ୍କୁ 'ରାଗ' ଚହ୍ନାଇବା ପାଇଁ କବି ଏଥିରେ ପ୍ରୟାସ କରିଛନ୍ତି । ଗୀତମାନଙ୍କର ଅକ୍ଷରବୃତ୍ତ ବା ରାଗ କିପରି ଜଣାଯିବ ସେଥିପାଇଁ ଏଥିରେ ପନ୍ଥା ନିର୍ଦ୍ଦେଶିତ ହୋଇଛି । ବାସ୍ତବରେ ଅକ୍ଷର ଗଣନାନୁସାରେ କିପରି ରାଗ ମନେ ରଖିବାକୁ ହେବ ସେ କଥା ଅତି ସହଜ ଭାବରେ ଉଦାହରଣ ସହିତ

ଗୋଟିଏ ଗୋଟିଏ ରାଗର ପଦ ମାଧ୍ୟମରେ ବୁଝାଇ ଦିଆଯାଇଛି । ବାଳକମାନଙ୍କର ମନେ ରଖିବା ପାଇଁ ପଦଗୁଡ଼ିକ ଏକାନ୍ତ ଉପଯୋଗୀ ହୋଇଥିବାରୁ ଏହାର ନାମ ବାଳବୋଧିନୀ ରଖା ଯାଇଛି ।

ଉଦାହରଣ ସହ ରାଗର ଲକ୍ଷଣ —

ରାଗ ମୁଖାରୀ ଦଶାକ୍ଷରେ । କୃଷ୍ଣ କହନ୍ତି ମଧୁର ସ୍ୱରେ ॥
ମୁଁ କାଳିଆ ଅଟି ଅସୁନ୍ଦର । ମୋତେ ରସୁ ବନ୍ଧୁଙ୍କ ବସ୍ତ୍ର ॥

ପୁଣି କେଦାର ଚନ୍ଦ୍ରକେଳି ବାଣୀ,
ଗୋପୀ ଭାଷାସେ ଶ୍ରୀ ରାଧିକା ଭଣି ॥

ଅହେ ମୋହନ ଏ ଚନ୍ଦ୍ର ବଦନ,
ଦେଖି ମୋହ ନୋହିବ କେଉଁ ଜନ ॥

କାମୋଦୀ ଅଷ୍ଟାକ୍ଷ ବାଣୀରେ ଗୋବିନ୍ଦ,
କହନ୍ତି ରାଧାଙ୍କୁ ହସି ମନ୍ଦ ମନ୍ଦ ॥

କେଦାର କାମୋଦୀ ଯେ ବାର ଅକ୍ଷର,
ଦୁଇ ପାଦ ପ୍ରାନ୍ତେ ହେ, ଯେ, ଲାଗେ ତାହାର ॥

ଶ୍ରୀ ରାଧିକା କହେ ଅହେ ଗିରିଧର,
ତୁମ୍ଭଙ୍କୁ ଜିଣିବ କେଉଁ ପ୍ରକାର ହେ ॥

ଏହିପରି ଭାବେ ରାଗମାନଙ୍କର ଉଦାହରଣ ସହିତ ଲକ୍ଷଣ ନିର୍ଦ୍ଦେଶ କରି କବି ଗ୍ରନ୍ଥଟି ଶେଷ କରିଛନ୍ତି । ଏ ପୁସ୍ତକଟି ଅତ୍ୟନ୍ତ କ୍ଷୁଦ୍ର ହେଲେ ମଧ୍ୟ ଛାତ୍ରାର୍ଥୀ ବାଳକମାନଙ୍କ ପାଇଁ ବେଶ୍ ଉପଯୋଗୀ । କବି ପିଲାମାନଙ୍କୁ ରାଗ ଚିହ୍ନାଇବା ପାଇଁ କଳ୍ପତରୁକରେ ଏହା ଲେଖିବା କଥା ନିଜେ ସ୍ୱୀକାର କରିଛନ୍ତି—

ବାଳକେ ରଖିବ ମନେ. ବାଳବୋଧିନୀ ଗୀତ,
କବିସୂର୍ଯ୍ୟ ବ୍ରହ୍ମାର ସେ କଳ୍ପତରୁକ କଥିତ ॥

## ସ୍ୱର ଦୀପିକା

ସ୍ୱର ଦୀପିକା ଗ୍ରନ୍ଥଟି ବାର ଛାନ୍ଦ ବିଶିଷ୍ଟ । ଏହାର ଗୋଟିଏ ପୋଥି ବାଣୀବିହାରସ୍ଥ ପୋଥି ବିଭାଗରେ ସୁରକ୍ଷିତ ଭାବେ ରହିଅଛି । କବିଙ୍କର ଏହା ନିଜସ୍ୱ ରଚନା ନୁହେଁ । ସେ ବାତ୍ସ୍ୟାୟନଙ୍କ କାମଶାସ୍ତ୍ର ସହିତ ଅନେକ କାମଶାସ୍ତ୍ର ବିଷୟକ ଗ୍ରନ୍ଥରୁ ସାର ସଂଗ୍ରହ କରି ଓଡ଼ିଆ ଛନ୍ଦୋବଦ୍ଧ ରୀତିରେ ଲେଖିଛନ୍ତି—

ସୁରଦୀପିକା ନାମତାର, ପରକୃତେ କଣ ପସ୍ତାର ॥
ଅନେକ ଶାସ୍ତ୍ରମାନଙ୍କର, ଆଣି କହିବା ତହୁଁ ସାର ॥

ଏହି ଗ୍ରନ୍ଥଟି ଲେଖିବାରେ କବି ବିଶେଷ ଭାବେ ଉପେନ୍ଦ୍ର ଭଞ୍ଜଙ୍କ 'ପଞ୍ଚ ଶାୟକ' କୁ ଅନୁକରଣ କରିଥିବା ମନେ ହୁଏ । ଏଥିରେ ପୁରୁଷ, ଲିଙ୍ଗ, ନାରୀ, କନ୍ୟା,ଭଗ ଅସମରତ, ସମରତ, ଇତ୍ୟାଦିର ଲକ୍ଷଣ ନିର୍ଦ୍ଦେଶ କରିବା ସଙ୍ଗେ ସଙ୍ଗେ କାମକଳାର ବିଶେଷ ବିବରଣୀ ପ୍ରଦାନ କରିଛନ୍ତି । କବି ବିଭିନ୍ନ କାବ୍ୟରେ ରାଧାକୃଷ୍ଣ ପ୍ରେମଲୀଳାର ବହୁ ବିଚିତ୍ର ଅବସ୍ଥା ବର୍ଣ୍ଣନା ପ୍ରସଙ୍ଗରେ ଏହିସବୁ ସମ୍ଭୋଗ କଳାର ସମସ୍ତ କୌଶଳ ସୁନ୍ଦରରୂପେ ପ୍ରୟୋଗ କରିଛନ୍ତି । ତାଙ୍କ କାବ୍ୟମାନଙ୍କୁ ବୁଝିବା ପାଇଁ ଏହା ବୋଧହୁଏ ଉପଯୋଗୀ ହେବ ବୋଲି ଭାବି କବି ବ୍ରହ୍ମଚର୍ଯ୍ୟାଶ୍ରମରେ ଥାଇ ମଧ୍ୟ ଏପରି ଗୋଟିଏ କାବ୍ୟର ପରିକଳ୍ପନା କରିଛନ୍ତି । ଏଥିରେ ସଦାନନ୍ଦଙ୍କ କବିତ୍ୱପୂର୍ଣ୍ଣ ଦକ୍ଷତାର କୌଣସି ସୂଚନା ମିଳେ ନାହିଁ ।

## ଜଣାଣ

### ନୂଆଁଗଡ ଲଡୁକେଶ୍ୱରଙ୍କ ଜଣାଣ

ଏହି ଜଣାଣଟି ୩୪ ପଦ ବିଶିଷ୍ଟ ଓ ପ୍ରତ୍ୟେକ ପଦ ଚାରିପାଦ ବିଶିଷ୍ଟ । ନିଜର ଇଷ୍ଟଦେବତା ଲଡୁକେଶ୍ୱରଙ୍କ ଉଦ୍ଦେଶ୍ୟରେ ଏହା ରଚିତ । ମନେହୁଏ ଲେଖକଙ୍କ 'ପୂର୍ବାଶ୍ରମ'ର ଏହା ଗୋଟିଏ ପ୍ରାରମ୍ଭିକ ଲେଖା । 'କ' ଠାରୁ 'କ୍ଷ' ଅକ୍ଷର ପର୍ଯ୍ୟନ୍ତ ଅକ୍ଷର କ୍ରମରେ ପ୍ରତ୍ୟେକ ଅକ୍ଷର ପାଇଁ ଗୋଟିଏ ଗୋଟିଏ ପଦ ରଚିତ ହୋଇଛି । 'କ୍ଷ' ପଦର ଶେଷ ଧାଡ଼ିରେ ଭଣିତାରେ ଲେଖକ ନିଜକୁ 'ଅକ୍ଷେତ୍ରିକ ସଦାନନ୍ଦ' ବୋଲି କହିଥିବାରୁ ବୈଷ୍ଣବ ସାଧୁଚରଣ ଦାସ ତଥା କବିସୂର୍ଯ୍ୟ ବ୍ରହ୍ମା ହେବା ପୂର୍ବରୁ କବିଙ୍କ ଲଡୁବାବା ଭକ୍ତବତ୍ସଳ ମନର ଏହା ଗୋଟିଏ ନିଖୁଣ ଅଭିବ୍ୟକ୍ତି । ସମଗ୍ର ଜଣାଣଟି ଅତ୍ୟନ୍ତ ମର୍ମସ୍ପର୍ଶୀ ହୋଇପାରିଛି । ଓଡ଼ିଆ ଜଣାଣ ସାହିତ୍ୟରେ ଏହା ଯେ ଗୋଟିଏ ଉନ୍ନତ ସ୍ଥାନ ଲାଭ କରିବ ଏଥିରେ ସନ୍ଦେହ ନାହିଁ । ଏହିପରି ନୀଳାଦ୍ରିନାଥ ମହିମା ଜଣାଣ ମଧ୍ୟ କବିଙ୍କର 'ପୂର୍ବାଶ୍ରମ'ର ଗୋଟିଏ ବହୁ ପ୍ରଚଳିତ ସୁପ୍ରସିଦ୍ଧ ଜଣାଣ । 'ମହିମା ଶୁଣିମା ହେଉ ମଣିବ ତାଙ୍କ' ଜଣାଣଟି ସଦାନନ୍ଦଙ୍କ ସହିତେ ଗାନ କଲେ ଭକ୍ତ ହୃଦୟ ବିଗଳିତ ହୋଇଯାଏ ।

ସେହିପରି ଚଉତିଶ ପଦ ବିଶିଷ୍ଟ 'ଶ୍ରୀଚୈତନ୍ୟ ବନ୍ଦଣା' କବିଙ୍କର ଶ୍ରୀଚୈତନ୍ୟଙ୍କ ପ୍ରତି ଅତ୍ୟନ୍ତ ଆନୁଗତ୍ୟ ପ୍ରକାଶ କରୁଅଛି । ଏ ବନ୍ଦଣାଗୁଡ଼ିକ ପାଣ୍ଡୁଲିପି ଆକାରରେ ଓଡ଼ିଶା ରାଜ୍ୟ ସଂଗ୍ରହାଳୟରେ ଦେଖିବାକୁ ମିଳେ ।

**ଚଉତିଶା**

ବାଣୀବିହାରସ୍ଥ ପୋଥି ସଂଗ୍ରହାଳୟ ଓ ରାଜ୍ୟ ପୋଥି ସଂଗ୍ରହାଳୟରେ କବିଙ୍କ କେତୋଟି ଚଉତିଶା ମଧ୍ୟ ପାଣ୍ଡୁଲିପି ଆକାରରେ ଦେଖିବାକୁ ମିଳେ । କୋଇଲି ଚଉତିଶା, ଦୂତୀ ଚଉତିଶା, ଯୋଗିନୀ ଚଉତିଶା କବିଙ୍କର ଗୋଟିଏ ଗୋଟିଏ କୃତି । ଏଗୁଡ଼ିକରେ ରାଧାକୃଷ୍ଣଙ୍କ ବିଭିନ୍ନ ଲୀଳା ବର୍ଣ୍ଣିତ ହୋଇଛି । ପ୍ରତ୍ୟେକଟି ୩୪ଟି ପଦ ବିଶିଷ୍ଟ ରଚନା । ରଚନା ଗୁଡ଼ିକରେ ସ୍ୱାଭାବିକ କବିତ୍ୱ ଓ ଭାବ ବିଳାସ ଦେଖିବାକୁ ମିଳେ । ଚଉତିଶାଗୁଡ଼ିକ ଗେୟ, ସୁପାଠ୍ୟ ଓ ଆମୋଦ ଦାୟକ । ଲେଖକଙ୍କର ଏହିପରି ଅନେକ ସୁନ୍ଦର ଚଉପଦୀ ମଧ୍ୟ ଯତ୍ରତତ୍ର ବିକ୍ଷିପ୍ତ ଭାବରେ ରହିଥିବାର ଜଣାଯାଏ ।

———

# ତୃତୀୟ ପରିଚ୍ଛେଦ

## କବି ପ୍ରସଙ୍ଗ

### କାବ୍ୟାଦର୍ଶ

ସଦାନନ୍ଦ କବିସୂର୍ଯ୍ୟ ବ୍ରହ୍ମା ସେ ସମୟର ଜଣେ ପ୍ରଖ୍ୟାତନାମା କବିଥିଲେ । ସେ ସଂସ୍କୃତ, ଓଡ଼ିଆ, ବଙ୍ଗଳା ଓ ଇଂରେଜୀ ଭାଷାରେ ରଚିତ କାବ୍ୟ ନିବିଡ଼ ଅଧ୍ୟୟନ କରିଥିଲେ । ସଦାନନ୍ଦଙ୍କ ସ୍ୱାଭାବିକ କବିତ୍ୱ ଶକ୍ତି ବ୍ୟୁତ୍ପତ୍ତି ଓ ଅଭ୍ୟାସ ବଳରେ ଅସାମାନ୍ୟ ପ୍ରତିଭାରେ ପରିଣତ ହୋଇଥିଲା । ସେତେବେଳର ଆଦର୍ଶ ସ୍ଥାନୀୟ ସୁପ୍ରସିଦ୍ଧ ସଂସ୍କୃତ କାବ୍ୟାଦର୍ଶରେ ଅନୁପ୍ରାଣୀତ ତଥା ସମୃଦ୍ଧ ଓଡ଼ିଆ ଗୀତକାବ୍ୟ ପାଠକ ମଣ୍ଡଳୀରେ ବେଶ୍ ଚମକ ସୃଷ୍ଟି କରିଥିଲା । ସଦାନନ୍ଦ ସେହି କାବ୍ୟଧାରାରେ ଅନୁପ୍ରାଣୀତ ହୋଇ ତାଙ୍କର କବି ଜୀବନ ଆରମ୍ଭ କରିଥିଲେ । ସେ ସ୍ୱରଚିତ 'ମୋହନ କଳ୍ପଲତା', 'ଯୁଗଳ ରସାମୃତ ଭଉଁରୀ'ରେ କେତେକ ପ୍ରସିଦ୍ଧ ଓଡ଼ିଆ କାବ୍ୟ ଓ କବିମାନଙ୍କର ଆଲୋଚନା କରିଛନ୍ତି । 'ସୁଦର୍ଶନ ବିହାର' । ହବାଙ୍ଗ ସୁନ୍ଦରୀ, କାଞ୍ଚନଲତା, ପ୍ରେମକଳ୍ପଲତା, ଲୀଳାବତୀ ଇତ୍ୟାଦି କାବ୍ୟମାନଙ୍କ ସହ, ଉପେନ୍ଦ୍ର ଭଞ୍ଜ, ଲୋକନାଥ ବିଦ୍ୟାଧର, ଦୀନକୃଷ୍ଣ ଦାସ, ଭୂପତି ପଣ୍ଡିତ, ଦୀନବନ୍ଧୁ ରାଜ ଇତ୍ୟାଦି କେତେକ ସୁନାମଧନ୍ୟ କବିମାନଙ୍କର ନାମୋଲ୍ଲେଖ କରିଛନ୍ତି । ଏହି ଆଲୋଚନାତ୍ମକ ଉଲ୍ଲେଖରୁ ସ୍ପଷ୍ଟ ସୂଚନା ମିଳେ ଯେ, କବି ତତ୍କାଳୀନ କବି ଗୋଷ୍ଠୀରେ ସୁପରିଚିତ ଥିଲେ ଏବଂ ସେ ସମୟର ଓଡ଼ିଆ ସାହିତ୍ୟରେ ବିବର୍ତ୍ତନର ଧାରା ସହିତ ତାଳଦେଇ ନିଜର କବି କର୍ମର ବ୍ୟାପୃତ ଥିଲେ । ଉପେନ୍ଦ୍ର ଭଞ୍ଜ ଇତ୍ୟାଦି କେତେକ ଶ୍ରେଷ୍ଠ କବିଙ୍କ ଆଲୋଚନା ପରେ ଅନ୍ୟ ସମସ୍ତ କବିଙ୍କୁ ଲକ୍ଷ୍ୟକରି ସଦାନନ୍ଦ କହିଛନ୍ତି—

ଅଛି ଯେ ଛନ୍ଦି ଅଛନ୍ତି ଯୋଡ଼ାଯୋଡ଼ି କରିଆନ୍ତି
ବ୍ରହ୍ମାସଙ୍ଗରେ କୁମ୍ଭାର ବାଦ ପ୍ରକାର ଯେ ।

( ଯୁ. ର. ଭ. ଶେଷଛାନ୍ଦ )

ଏଠାରେ ବେଶ ଚତୁରତାର ସହ ସେ କାବ୍ୟନିର୍ମାଣ କ୍ଷେତ୍ରରେ ନିଜକୁ ସୃଷ୍ଟିକର୍ତ୍ତା ବ୍ରହ୍ମାଙ୍କ ସହିତ ତୁଳନା କରି ଅନ୍ୟାନ୍ୟ କାବ୍ୟସ୍ରଷ୍ଟାମାନଙ୍କୁ ହୀନ

ତୁଳନାରେ ଅତ୍ୟନ୍ତ ନ୍ୟୂନସ୍ଥାନ ଦେଇ ସେମାନଙ୍କୁ କୁମ୍ଭକାର ସହିତ ତୁଳନା କରିଛନ୍ତି । ଅର୍ଥାତ୍ ଏ ବିରାଟ ବିଶ୍ୱର ସ୍ରଷ୍ଟା ବ୍ରହ୍ମାଙ୍କ ଆଗରେ କେବଳ ମାଟି ମାଠିଆର ସ୍ରଷ୍ଟା କୁମ୍ଭାରର ସ୍ଥାନ ଯାହା, ବିପୁଳକାବ୍ୟ ସମ୍ଭାରର ସ୍ରଷ୍ଟା କବିସୂର୍ଯ୍ୟ ବ୍ରହ୍ମାଙ୍କ ତୁଳନାରେ ଯୋଡ଼ାଯୋଡ଼ି କରି କବିତା ଲେଖୁଥିବା ପ୍ରତିଭାହୀନ ଅବର କବିଙ୍କ ସ୍ଥାନ ତାହା । କବି ଜୀବନର ପ୍ରାକ୍‌କାଳରେ କବିଙ୍କର ଏହି କାବ୍ୟାଦର୍ଶ-ମାନ ଭଞ୍ଜୀୟ କାବ୍ୟାଦର୍ଶର ସଫଳ ରୂପାୟନରେ ଗଢି ଉଠିଥିଲା । ଭଞ୍ଜୀୟ କାବ୍ୟାଦର୍ଶ ହିଁ କବିତ୍ୱପୂର୍ଣ୍ଣ ଦକ୍ଷତାର ଶ୍ରେଷ୍ଠ କଷଟି ରୂପେ ସେ ଗ୍ରହଣ କରି ନେଇଥିଲେ । ସଦାନନ୍ଦଙ୍କର ପ୍ରଥମ କାବ୍ୟ ଲଳିତଲୋଚନାର ଆଭିମୁଖ୍ୟ ଘୋଷଣା କରି ସେ ଲେଖିଛନ୍ତି—

ନାଗରୀ ନାୟୀ ପ୍ରକାରେ ଏ ଗୀତ ହୋଇବ
ଅଳଙ୍କାରେ ବନ୍ଧ ଭଙ୍ଗି ଯେଣୁଥିବ
ରସ ରୀତି କ୍ରିୟା ଗୁପ୍ତି ଉପମା ନହିବ
ଆଶ୍ରୟରେ କେଉଁଠାରେ ଧ୍ୱନି ପ୍ରକାଶିବ
ଦର୍ଶନେ ଶ୍ରବଣେ ନୈଣ କର୍ଣ୍ଣମାନସରେ
ଯାରସ ପରିଏ ବାସ କରିବ ହୃଦ୍ବରେ ।

( ୧ମ ଛାନ୍ଦ )

କବିଙ୍କର ଆଉ ଗୋଟିଏ ପ୍ରାଥମିକ କାଳୀନକ କାବ୍ୟ ମୋହିନୀ କଳ୍ପ-ଲତାରେ ରୀତିଯୁଗୀୟ କାବ୍ୟାଦର୍ଶଟି ଆତ୍ମପ୍ରକାଶ କରିଛି । ଏ କାବ୍ୟର ନାୟିକା ପ୍ରଥମ ଥର କୈଳାସର ପ୍ରବେଶର ଅବ୍ୟବହିତ ପୂର୍ବରୁ ମନରେ ଯେଉଁ ଦ୍ୱନ୍ଦ୍ୱାତ୍ମକ ପ୍ରତିକ୍ରିୟା ପ୍ରକାଶ କରିଛି, ସେହି ମାନସିକ ପ୍ରକ୍ରିୟା ସହିତ ତୁଳନା କରି କବି କାବ୍ୟ ସୃଷ୍ଟିରେ ନବୀନ ସ୍ରଷ୍ଟା ମାନସର ଗୋଟିଏ ନିଖୁଣ ଚିତ୍ର ଉପସ୍ଥାପିତ କରିଛନ୍ତି । ଯାହା ରୀତିଯୁଗୀୟ କାବ୍ୟାଦର୍ଶର ପୁନରୁକ୍ତି ମାତ୍ର ।

" କବି ପ୍ରାୟେ ପଦଶବଦ ଅନୁସନ୍ଧାନେ
ରୂପାଲଙ୍କାର ଲକ୍ଷଣ ଭାବୁଅଛି ମନେ ।"

ଏଠାରେ ପ୍ରଣୟୀ ସହିତ ପ୍ରଥମ ସମାଗମ ପୂର୍ବରୁ ପ୍ରତୀକ୍ଷମାଣା ମୁଗ୍ଧା ନାୟିକାର ଭାବନାର ଅନ୍ତନାହିଁ । ମନରେ ଇନ୍ଦ୍ରଧନୁର ରଙ୍ଗ ଓ ପ୍ରଜାପତିର ଡ଼େଣା ଲଗିଛି । ପ୍ରତ୍ୟେକ ମୁହୂର୍ତ୍ତଟି ଚିନ୍ତା ଶୃଙ୍ଖଳାରେ ଅସ୍ଥିର ଓ ଉଦ୍ବେଳିତ । ସାମାନ୍ୟ ଟିକିଏ ଶବ୍ଦ ଶୁଣିଲେ ପ୍ରାଣପ୍ରିୟର ପଦଶବ୍ଦ ଭାବି ସେ ଚମକି ଉଠୁଛି ।

ପ୍ରାଚୀପ୍ରିୟ ପ୍ରେୟସୀଙ୍କର ହାବ, ଭାବ, ରୂପ, ଅଳଙ୍କାର, ବେଶଭୂଷାର ଅଙ୍ଗଲାବଣ୍ୟ ବର୍ଣ୍ଣନାରେ କବି ଓ ବୈଚିତ୍ର୍ୟ ମୋହଗ୍ରସ୍ତ । ଏହା ସ୍ୱାଭାବିକ କଥା । କାରଣ ପଦ ରଚନାରେ ଶ୍ଳେଷାଳଙ୍କାରର ସ୍ୱତନ୍ତ୍ର ପୂର୍ଣ୍ଣ ପ୍ରୟୋଗ ଯୋଗୁଁ 'ପଦଭେଦ ଅନୁସନ୍ଧାନ' ଓ 'ଗୂଢ଼ ଅଳଙ୍କାର ଭାବନା' ପରି ଦୁଇଟି ଶବ୍ଦ ମଧ୍ୟରେ ରୀତି ଯୁଗୀୟ କବିକର୍ମର ଆଦର୍ଶଟି ସୁସ୍ପଷ୍ଟରୂପେ ଅଭିବ୍ୟଞ୍ଜିତ ହୋଇ ଉଠିଛି । ପୁଣି 'ହେବ ଚାରୁ ଅଳଙ୍କାର—ଚନ୍ଦନେ ଭୂଷଣ' ପରି ଅନେକ ଉଦ୍‌ଘୋଷଣାଦ୍ୱାରା କାବ୍ୟରେ ଅଳଙ୍କାର ଯୋଜନା ପ୍ରତି ଯଥେଷ୍ଟ ଗୁରୁତ୍ୱ ଆରୋପ କରାଯାଇଛି । ଶୃଙ୍ଗାରିକତା ଓ ସମ୍ଭୋଗପ୍ରବଣତା ରୀତିଯୁଗୀୟ କାବ୍ୟର ଆଉ ଗୋଟିଏ ବିଶିଷ୍ଟ ଲକ୍ଷଣ । ସେଥିପାଇଁ ରୀତିକବି ମନେ ସଙ୍ଗୀତ ଶାସ୍ତ୍ର ଓ ରତିଶାସ୍ତ୍ରରେ ଦକ୍ଷତା ଅର୍ଜନ କରିବା ପରମ୍ପରା ପ୍ରଚଳିତ ଗୋଟିଏ ବହୁ ସମ୍ମାନିତ ଆଦର୍ଶ । ଲଳିତଲୋଚନାର ଦ୍ୱିତୀୟ ଛାନ୍ଦରେ କବି ଏହି ଆଦର୍ଶକୁ ସ୍ମରଣ କରି ଲେଖିଛନ୍ତି—

ସଙ୍ଗୀତାଦି ସାହିତ୍ୟ ବିଧ୍ୟେଯେତେ
ରତିଶାସ୍ତ୍ର ସହିତେ ଶିଖିଥିବେ ।

ଦେଖିବାର କଥା ଯେ, କବି ତାଙ୍କ କାବ୍ୟର ନାୟକ ଓ ନାୟିକାମାନଙ୍କୁ ସର୍ବତ୍ର ନାଗର ଓ ନାଗରୀରୂପରେ ଉଲ୍ଲେଖ କରିଛନ୍ତି (୧) । ଏହି ଓ ନାଗର ଶବ୍ଦ ଦୁଇଟି କାମ ଶାସ୍ତ୍ରରେ ବର୍ଣ୍ଣିତ ଅସାଧାରଣ କଳାବିଳାସୀ ପ୍ରେମିକ ଓ ନାଗରୀ ପ୍ରେମିକାଙ୍କ ଉଦ୍ଦେଶ୍ୟରେ ବ୍ୟବହୃତ ଦୁଇଟି ବୈଷୟିକ ଶବ୍ଦ । ଏ 'ନାଗର' ଶବ୍ଦଟି ପ୍ରାଚୀନ କାବ୍ୟମାନଙ୍କରେ ତାର ରତିଶାସ୍ତ୍ରସମ୍ମତ ଅର୍ଥରେ ସୁ-ପ୍ରଚଳିତ । ଡକ୍ଟର ସୁଶୀଲ କୁମାର ଦେ ତାଙ୍କର Ancient Indian Erotics ଗ୍ରନ୍ଥରେ ଏ ଶବ୍ଦର ବିବରଣୀ ଦେଇ ଲେଖିଛନ୍ତି—"We have a vivid sketch of

---

୧ । (କ) ଯୁଗଳ ରସାମୃତ ଲହରୀ ୫୪।୨୮ ଓ ୫୭।୨୦
ଆରତେ କର୍ଣ୍ଣ ଫୁଙ୍କି ନବ ନାଗର କରାଇଣ ସଚେତନ
× × ×
ସମାଜ ଗୁଣବନ୍ତ ନାଗର

(ଖ) ନାମଚିନ୍ତାମଣି, ୭ମ ଛାନ୍ଦ ପ୍ରଥମ ପଦ
ହେ ବ୍ରଜ ନାଗର, ନାଗରୀ ଚିତ୍ତ ଚୋର

(ଗ) ଲଳିତଲୋଚନା ପ୍ରଥମ ଛାନ୍ଦ
ନାଗରୀ ନାରୀ ପ୍ରକାରେ ଏ ଗୀତ ହୋଇବ ।

an ancient proto type of the 'Nagaraka' in the kamasutra or the Sciance of Erotics attributed to Vatsyayana. The well-planned house of the Nagaraka, situated near a river or a tank, is surrounded by a lovely garden; in the garden there is for amusement and repose, a summer house, a bower of creepers with raised parterre and carpeted swing in a shady spot. His living room, balmy witn rich perfume, contains, a bed soft, white fragrant and luxuriously furnished with pillows or cushions. There is also a couch, with a kind of stool at the head, on which are placed pigments, perfumes, garland, bark of citron, canvas and a box of paint. A lute hanging from an ivory peg and some books to read are also not forgotten. On the ground there is a spittoon, and not far from the couch a round seat with raised back and a board for dice. The Nagaraka spends his morning in bathing and elaborate toilet, applying ointments and perfumes to his body, collyrium to his eyes, and red paints to his lips, chews betel leaves and bark of ciacn to add fragrance to his mouth and looks at himself in the glass. After breakfast he listens to his parrots, which are kept in a cage outside his room and teaches them new phrases. He delights in ram and cock fights and other diversions which he enjoys with is friends and companions, the usual hangers on, high or low. After a brief midday sleep he dresses again and joins the assembly friends. In the evening there is music followed by joys of love in company with his lady friends. These are the everyday duties or pleasures of the Nagaraka.

ବାତ୍ସ୍ୟାୟନଙ୍କ ଏ କାମଶାସ୍ତ୍ରୀୟ ଦୃଷ୍ଟିକୋଣରୁ ସଦାନନ୍ଦଙ୍କ କାବ୍ୟ ନାୟକ ଓ କାବ୍ୟନାୟିକାଙ୍କ ନାଗର ଓ ନାଗରୀ ଭାବରେ ପ୍ରେମମୟ ବିଳାସୀ ଜୀବନର ଗୋଟିଏ ନିଖୁଣ ଚିତ୍ର ଫୁଟି ଉଠେ । ଯାହା ଫଳରେ ଆମେ କବିସୃଷ୍ଟିରେ କେବଳ ପ୍ରେମ ଓ ପ୍ରଣୟର ପ୍ରାଚୁର୍ଯ୍ୟ ଓ ଉଦ୍ଦାମ ଯୌବନର ଅନନ୍ତ ବିଳାସ ହିଁ ଦେଖିବାକୁ ପାଉ । ପ୍ରେମ ହିଁ ଜୀବନର ସର୍ବସ୍ୱ । ପ୍ରେମ ବ୍ୟତୀତ ଜୀବନ ବୃଥା । ଏଣୁ ଆଦର୍ଶ ମଣିଷ ଜୀବନର ଚିତ୍ର ଦେବାକୁ ଯାଇ ସଦାନନ୍ଦ କଣ୍ଠରେ କବି ଗାଇଛନ୍ତି—

ନାରୀ ଅଙ୍ଗ ସଙ୍ଗ ବିନା ଯେ କରେ ଶୟନ
ତାକୁ କି ମନୁଷ୍ୟ କରି ଗୁଣନ୍ତି ମନେ ଯେଉ ଜନେ ।

× × ×

ନୟନ ବନ୍ଧୁ ବାଳା ବିବସନ ଯେ ନ ଦେଖେ
ଅନ୍ଧ ବୋଲି ତାହାକୁ ଶୃଙ୍ଗାର ଶାସ୍ତ୍ର ଲେଖେ ।

× × ×

ସମ୍ଭୋଗରୁ ବଡ଼ ଦ୍ରବ୍ୟ ସଂସାରେ କାହିଁଛୁ
ବ୍ରହ୍ମାଦି ଦେବଙ୍କର ଯହିଁରେ ଲୋଭ ଅଛୁ ।

× × ×

ପ୍ରେମତ ସଂସାର ସାର ବୋଲନ୍ତି ସଜ୍ଜନ
ସେ ପୁଣି ନାଗରୀ ନାରୀ ସଙ୍ଗେଟି ପ୍ରଧାନ ।

( ମୋହନ କଳ୍ପଲତା, ଦ୍ୱାଦଶଚ୍ଛନ୍ଦ )

ପୁଣି ନାଗରୀ ନାରୀର ନିବିଡ଼ ଆଶ୍ଳେଷରେ ହିଁ ଜୀବନର ଚରମ ସାର୍ଥକତା ନିହିତ—

ନାରୀ ହୋଇଥିବ ନବବୟସୀ ସହିତେ
କରୁଥିବ ତା ଅଧର ପାନ ଭିଡ଼ି ବକ୍ଷେ ॥
ଭଙ୍ଗୀରେ ସେ ଭାଷୁଥିବ ଛାଡ଼ ନାହିଁ ନାହିଁ
କୋଟି ବ୍ରହ୍ମାପଦ ତେତେବେଳେ ସମ କାହିଁହେ ॥

( ମୋ. କ. ୧୨/୨୨-୨୩ )

ଏସବୁ ଆଲୋଚନାରୁ ଏ କଥା ସ୍ପଷ୍ଟ ଯେ, ସଦାନନ୍ଦଙ୍କ ପୂର୍ବବର୍ତ୍ତୀ ଉପେନ୍ଦ୍ର ଭଞ୍ଜ ଆଦି ରୀତି କବିମାନଙ୍କର କାବ୍ୟାଦର୍ଶ ଯାହାଥିଲା ସଦାନନ୍ଦ ପ୍ରଥମେ ସେଥିରେ ଅନୁପ୍ରାଣିତ ହୋଇ ସେହି ଧାରାରେ ଦୁଇଟି କାଳ୍ପନିକ କାବ୍ୟ ରଚନା

କରିଥିଲେ । ସେଥିରେ ପାଣ୍ଡିତ୍ୟ ପ୍ରକର୍ଷ ପ୍ରଦର୍ଶନ ପାଇଁ ଚେଷ୍ଟା, ବହୁପଦରେ ଗୋଟିଏ କଥାର ବିଭିନ୍ନ ଶବ୍ଦ ମାଧ୍ୟମରେ ପୁନରାବୃତ୍ତି, ନାନା ଶବ୍ଦାଳଙ୍କାର ଓ ଅର୍ଥାଳଙ୍କାରର ବୁଦ୍ଧିଦୀପ୍ତ ପରିକଳ୍ପନା । ମିଥ୍ୟା ହେଲେ ମଧ୍ୟ ପାଣ୍ଡିତ୍ୟପୂର୍ଣ୍ଣ କୁଟିଳ କଳ୍ପନା ଦ୍ୱାରା ସତ୍ୟପର ପ୍ରକାଶ କରିବା (୧) ଧ୍ୱନ୍ୟାତ୍ମକ ଦ୍ୱ୍ୟର୍ଥକ ଶବ୍ଦ ପ୍ରୟୋଗ, ସମ୍ଭୋଗ ଓ ବିପ୍ରଲମ୍ଭ ଶୃଙ୍ଗାର ର ପ୍ରାଞ୍ଜଳ ବର୍ଣ୍ଣନା, କାମ ଶାସ୍ତ୍ର ସମ୍ମତ ବନ୍ଧ ବିନ୍ୟାସ, ସହଜ ସ୍ୱାଭାବିକ ବସ୍ତୁର ଅସ୍ୱାଭାବିକ ପାଣ୍ଡିତ୍ୟ ପୂର୍ଣ୍ଣ ବର୍ଣ୍ଣନା, ଅକ୍ଷର ନିୟମରେ ସମଗ୍ର କାବ୍ୟ ରଚନା, ସାଙ୍ଗୀତିକଳା ଇତ୍ୟାଦିର ସୁନିପୁଣ ପ୍ରୟୋଗରେ କବି ବେଶ୍ କୃତିତ୍ୱ ଲାଭ କରିଛନ୍ତି । ବୋଧହୁଏ ଏଥିରେ ତାଙ୍କର ଚରମ ପରାକାଷ୍ଠା ପ୍ରଦର୍ଶନ ଯୋଗୁଁ ସେ ରାଜଦତ୍ତ 'କବିସୂର୍ଯ୍ୟ' ଉପାଧିରେ ମଧ୍ୟ ଭୂଷିତ ହୋଇଛନ୍ତି । କିନ୍ତୁ ଅନ୍ତେଟେ ଦୁଇଟି କାବ୍ୟ ରଚନା ପରେ କବିଙ୍କ ଜୀବନର ଧାରା ପରିବର୍ତ୍ତିତ ହୋଇଛି । ସେ ଗୃହତ୍ୟାଗୀ ହୋଇ ସନ୍ୟାସ ଗ୍ରହଣ କରି ରାଧାକୃଷ୍ଣଙ୍କର ବ୍ରଜଲୀଳା ଉପାସନାକୁ ଜୀବନର ଏକମାତ୍ର ଲକ୍ଷ୍ୟ ଭାବରେ ଗ୍ରହଣ କରିନେଇଛନ୍ତି । ଏଣୁ ତାଙ୍କର ଅନ୍ୟ ରଚନା ମାନଙ୍କରେ କାବ୍ୟର ଆଭିମୁଖ୍ୟ ମଧ୍ୟ ବଦଳି ଯାଇଛି । କବି ବର୍ତ୍ତମାନ ସମ୍ପୂର୍ଣ୍ଣ ସ୍ୱତନ୍ତ୍ର । ସଂସାରର ଭୋଗ ତୃଷ୍ଣା ସମ୍ପୂର୍ଣ୍ଣ ନିର୍ବାପିତ । ରାଧାକୃଷ୍ଣଙ୍କ ଲୀଳାଗାନ ଓ ସେ ଲୀଳାର ମାନସ ସାକ୍ଷାତକାରହିଁ ତାଙ୍କର ଏକମାତ୍ର ଧ୍ୟେୟ । ଏଣୁ କବି ଆନ୍ତରିକ କାମନା ବ୍ୟକ୍ତ କରି ଗାଇଛନ୍ତି —

କରେ ଅବା ଝୋଲି ଧରି ଭିକ୍ଷାଟନ କରି
ମୁଖେ ଷ୍ଟୁରୁ ରାଧା ପ୍ରାଣେଶ୍ୱର,
ସ୍ୱତନ୍ତ୍ରତା ଥିବ ତହିଁ ପରବଶ ନୋହି
କେ ଦେଉ ନଦେଉ କି ବିସ୍ମର
(ନ . ନ . ୬/୧)

ପରମାରାଧ୍ୟା ରାଧାକୃଷ୍ଣଙ୍କ ଠାରେ ଅଖଣ୍ଡ ଆସ୍ଥା ସ୍ଥାପନ କରି ସେ କହିଛନ୍ତି—
ରମେଶ୍ୱରୀ ଦର୍ଶକରି ଶରଣ ମୋହର
କବି ସ୍ୱଭାବରୁ କହି ସମସ୍ତ ପ୍ରକାରଯେ

୧ । ସରସ ଯେବେ ମିଥ୍ୟା ହେଲେ, ତା ତେବେ ସତ୍ୟ ମାନନ୍ତି ରସିକେ
ପ୍ରେମତରଙ୍ଗିଣୀ ୧୦ଶ ଛାନ୍ଦ ।

କବି ସୂର୍ଯ୍ୟ ବ୍ରହ୍ମା ବିଜ ହୋଇଅଛୁ ଦାସ
ରାଧାକୃଷ୍ଣ ମିଳନ ମୋ ପ୍ରକୃଷ୍ଟ ଲାଳସ
( ମୋ . କ. ୩୮/୭୫

ଏହି ରାଧାକୃଷ୍ଣ ମିଳନ ବର୍ଣ୍ଣନ, ଶ୍ରବଣ, କୀର୍ତ୍ତନ ଓ ଚିନ୍ତନ ହିଁ କବି ଜୀବନର ଶ୍ରେଷ୍ଠକାମନା, ଏପରିକି ଭୁକ୍ତି ଇପ୍ସିତ ନାହିଁ, ମୁକ୍ତି ଇଚ୍ଛା ମଧ୍ୟ ନାହିଁ । କବି ଚିନି ହେବାକୁ ଚାହାନ୍ତି ନାହିଁ, ଚିନି ଖାଇବାକୁ ଚାହାନ୍ତି । ମୁକ୍ତି ହେବାପରେ ଲୀଳାରସ ଆସ୍ୱାଦନର ସୁବିଧା ନଥିବାରୁ ମୁକ୍ତି ମଧ୍ୟ କବିଙ୍କ କାମନା ନୁହେଁ । ସେଥିପାଇଁ ସଦାନନ୍ଦ ପୂର୍ବସୂରି ମାନଙ୍କ ବିଷୟରେ ସ୍ୱୀୟ ମତାମତ ପ୍ରକାଶ କରିବାକୁ ଯାଇ କୃଷ୍ଣ ଚରିତକୁ ମୁଖ୍ୟ କାବ୍ୟବସ୍ତୁ ରୂପେ ଗ୍ରହଣ କରି ନଥିବା କବିମାନଙ୍କ ପ୍ରତି କଟାକ୍ଷ ପାତ କରି ଲେଖିଛନ୍ତି—

ଉପେନ୍ଦ୍ର ସୁକବି ନାଟ୍ୟରସ ଅନୁଭବୀ
କୃଷ୍ଣ ଉପାସକ ନୋହି କି କାର୍ଯ୍ୟ ଏହି ସେ ॥ ୫୪
କୁଞ୍ଜବନ ଆଦି ଠିକ ଦେଖି ଦେବ ଉପାସକ
ଲୋକନାଥ ବିଦ୍ୟାଧର ସଂସ୍କୃତ ସ୍ୱେତ ସେ ॥ ୫୫
କବି ଭଲ କୃଷ୍ଣଦାସ ନଜାଣଇ କୃଷ୍ଣରସ
ଭୂପତି ରସ ଆଦର ମାତ୍ର ଭ୍ରମର ସେ ॥ ୫୬
ସୁକବି ଗୁଣ ରତନ ଦୀନବନ୍ଧୁ ରାଜ ଧନ୍ୟ
ବ୍ରଜେନ୍ଦ୍ର କୁମାର ରାଗ ଯା ହୃଦେ ଦାଗ ସେ ॥ ୫୭
( ଯୁ . ର . ଭ ଶେଷ ଛାନ୍ଦ )

ଅନ୍ୟମାନେ ଯେତେ ଭଲ କବି ହେଲେ ମଧ୍ୟ ଯେଉଁମାନେ ରାଧାକୃଷ୍ଣ ପ୍ରେମ ବର୍ଣ୍ଣନା କରି ନାହାନ୍ତି, କବିଙ୍କ ମତରେ, ସେମାନଙ୍କ ସମସ୍ତ କବି କର୍ମ ସମ୍ପୂର୍ଣ୍ଣ ନିଷ୍ଫଳ ଓ ବୃଥା ।

ଦିବାନିଶି କେବଳ ଅପ୍ରାକୃତ ରାଧାକୃଷ୍ଣ ପ୍ରେମରେ ମଜ୍ଜି ରହିବା ତାଙ୍କର ଏକମାତ୍ର ଇଚ୍ଛା । ସେଥିପାଇଁ ସେ କହିଛନ୍ତି—

ଜନ୍ମ ମରଣ ଅଛି ଯେତେକାଳ ସୁଖ ଦୁଃଖ ଦୁଇ ଏହାର ମୂଳ
କୃଷ୍ଣ ପ୍ରାପ୍ତି ହେଲେ ଏସିନା ଜୀବ ପରମାନନ୍ଦେ ପୂର୍ଣ୍ଣ ହୋଇଥିବ
ଦେହ ଚିର ଅଟେ । ସୁଖ ସାର ଯହିଁ ଚରଣେ ଲୁଟେ
( ନ . ନ. ୭/୩ )

ଦେଖିବାର କଥା ଯେଉଁ କବି ନାରୀ ଅଙ୍ଗ ସଙ୍ଗ ବିନା ମାନବ ଜନ୍ମକୁ ବୃଥା ମଣୁଥିଲେ, ବାଳା ବଦନ ଦେଖିନଥିବା ଲୋକଙ୍କୁ ଆଖି ଥାଉ ଥାଉ ଅନ୍ଧ ମନେ କରୁଥିଲେ, ରମଣୀ ପ୍ରେମକୁ ସଂସାର ସାର ବସ୍ତୁ ବୋଲି ଧରି ନେଇଥିଲେ ନବ ବୟସୀ ବାଳାର ନିବିଡ ଆଶ୍ଳେଷ ମଧ୍ୟରେ ତାହା ଅଧର ପାନ କରିବାକୁ ପରମ ପୁରୁଷାର୍ଥ ମନେ କରୁଥିଲେ, ସେହି କବି ଏ ସମସ୍ତ ଭୋଗ ତୃଷ୍ଣାରୁ ସମ୍ପୂର୍ଣ୍ଣ ମୁକ୍ତ ହୋଇ ଶ୍ରୀକୃଷ୍ଣ ଚୈତନ୍ୟଙ୍କ ଚରଣରେ ଆଶ୍ରୟ ଗ୍ରହଣ କରିଛନ୍ତି ।

ଗୌରର ଚନ୍ଦ୍ର ଶ୍ରୀଚରଣ ଆମ୍ଭର ଓଢ଼ିରେ ଶରଣ
ମଧୁର ଦେହର ଅଗ୍ରେ ଐଶ୍ୱର୍ଯ୍ୟ ଦେଖି ପାଇଭୟ
( ପାଟରତ୍ନାବଳୀ, ୩୯ ଅଧ୍ୟାୟ )

ଏ ମଧୁର ରସଟି କେମନ୍ତ—

ପର ବଧୂ ପର ପୁଅ ରାଧାକୃଷ୍ଣ ପ୍ରୀତି
ଅନ୍ୟୋନ୍ୟରେ ପ୍ରାପ୍ତି ଲୋଭେ ଝୁରି ଝୁରି ନିତି
( ପ୍ରେ. ତ. ୮/୨୦ )

ପ୍ରେମସାର ପୂର୍ଣ୍ଣରସ ସଂଯୋଗ, ଯହିଁରେ
ନାହିଁ ନାହିଁ ନାହିଁ ଏ ସ୍ୱଭାବ ବ୍ରହ୍ମାଣ୍ଡରେ
ଯେଉଁ ପ୍ରେମ କୃଷ୍ଣ ବୋଲେ ପୂରି ନ ପାରିଲେ
ସେ ଭବରେ ଆଜଠାରୁ ବନ୍ଦୀତ ହୋଇଲ
( ନ . ନ. ୩୯ ଛାନ୍ଦ )

ରସିକ କବି ପରବର୍ତ୍ତୀ ପରିସ୍ଥିତିରେ ଭକ୍ତ ପାଲଟି ଛନ୍ତି । ଉଦ୍ଦାମ ଯୌବନର ଦେହ ସର୍ବସ୍ୱ ଦୁର୍ବାର ଭୋଗ ତୃଷ୍ଣା ନିର୍ବାପିତ ହୋଇ ଚୈତନ୍ୟ ମନନରେ ସେ ଭଗବତ୍ ପ୍ରେମ ଜଳରେ ନିତ୍ୟ ନିମଜ୍ଜମାନ । ପ୍ରେମ ଅଛି, ତାହା ଆଉ ପାର୍ଥିବ ନୁହେଁ, ଅପାର୍ଥିବ । ପ୍ରାକୃତ ନୁହେଁ ଅପ୍ରାକୃତ, କ୍ଷଣିକ ନୁହେଁ ନିତ୍ୟ, ଭୋଗ ସର୍ବସ୍ୱ ନୁହେଁ, ତ୍ୟାଗ ସର୍ବସ୍ୱ । ଏଣୁ ରସିକ କବିଙ୍କ କବିତାର ଆଭିମୁଖ୍ୟ ବଦଳି ଯାଇଛି । ସ୍ୱଳ୍ପ ସମୟ ମଧ୍ୟରେ ରାଧାକୃଷ୍ଣ ଲୀଳାର ବିଭିନ୍ନ ଦିଗର ବର୍ଣ୍ଣନା କରି ସେ ଯଥାସମ୍ଭବ ବହୁ କାବ୍ୟ କବିତା ଲେଖିବା ପାଇଁ ମନସ୍ଥ କରିଛନ୍ତି । ଯଥା ସମ୍ଭବ ସରଳ ତରଳ ଭାଷାରେ ସଂକ୍ଷିପ୍ତ ଛାନ୍ଦ ମାଧ୍ୟମରେ ବ୍ରଜଲୀଳାର ଅନନ୍ତ ମାଧୁର୍ଯ୍ୟ ପ୍ରକାଶ କରିବା ପାଇଁ ଚେଷ୍ଟିତ ହୋଇଛନ୍ତି । ଅଳ୍ପ ସମୟ ମଧ୍ୟରେ ବହୁ କାବ୍ୟ ଲେଖି ସ୍ୱକୀୟ ମତବାଦ ପ୍ରତି ଜନତାର ଦୃଷ୍ଟି ଆକର୍ଷଣ କରିବା ପାଇଁ

ସେ ବିଶେଷ କରି ତିନୋଟି ନୂତନ ଆଭିମୁଖ୍ୟ ଗ୍ରହଣ କରିଛନ୍ତି । ସେଗୁଡ଼ିକ ମଧ୍ୟରେ ପ୍ରଥମ ହେଉଛି ବୃନ୍ଦାବନର ଗୋସ୍ୱାମୀମାନଙ୍କର ବିପୁଳ ସାମ୍ପ୍ରଦାୟିକ ସଂସ୍କୃତ ସାହିତ୍ୟ ସମ୍ଭାରରୁ ସାର ଗ୍ରହଣ କରି ଯଥା ସମ୍ଭବ ସ୍ୱଳ୍ପ ସମୟ ମଧ୍ୟରେ ତାହା ଓଡ଼ିଆରେ ରୂପାନ୍ତରିତ କରିବା ଦ୍ୱିତୀୟରେ ଓଡ଼ିଆ ରୀତିକାବ୍ୟର ଆତ୍ମା-ସହାୟ କଷ୍ଟ କଳ୍ପନାଗୁଡ଼ିକ ଯଥାସମ୍ଭବ ବର୍ଜନ ଓ ସରଳ ଭାଷାରେ କୃଷ୍ଣଲୀଳାର ବିବିଧ ବୈଚିତ୍ର୍ୟ ଉପସ୍ଥାପନ କରିବା, ତୃତୀୟତଃ ଜୟଦେବଙ୍କ ପନ୍ଥା ଅନୁସରଣ କରି କାବ୍ୟ ଗୁଡ଼ିକ ଏକାଧାରରେ ରସିକ ଓ ଭକ୍ତ ମାନଙ୍କର ମନୋଗ୍ରାହୀ କରି ଉପସ୍ଥାପିତ କରିବା । ଏହି ଯୋଜନାର ସଫଳ ରୂପାୟନ ମାଧ୍ୟମରେ ସେ ନିଜ ଜୀବନକୁ ସାର୍ଥକ କରିବା ସଙ୍ଗେ ସଙ୍ଗେ ତାହାର ମାଧ୍ୟମରେ ଅଗଣିତ ମଣିଷ ଜୀବନର ସାର୍ଥକତା ଖୋଜି ପାଇଛନ୍ତି । ପରିବର୍ତ୍ତିତ କାବ୍ୟିକ ଆଭିମୁଖ୍ୟର ପ୍ରଧାନ ଉପଜୀବ୍ୟ ହେଉଛନ୍ତି ଚୈତନ୍ୟଙ୍କ ପଟ୍ଟଶିଷ୍ୟ ବୃନ୍ଦାବନର ଶ୍ରୀ ରୂପଗୋସ୍ୱାମୀ

ଶ୍ରୀରୂପ ଗୋସ୍ୱାମୀ ଆଦଙ୍କର ମତ ଯେହି
ବେଦ ବଚନ ଅଧିକ ଆମ୍ଭେ ମାନୁ ତହିଁ

( ନ ନ ଗଧୁ ଛାନ୍ଦ )

ଶ୍ରୀରୂପ ଗୋସ୍ୱାମୀ ପାଦପଦ୍ମ ରେଣୁଗଣ
ଶିରେ ଧରି ଗାଇ ଛାନ୍ଦେ କୃଷ୍ଣଲୀଳା ଗୁଣ
ଅନନ୍ତ ସହସ୍ର ମୁଖେ ଗାଏ ନିରବଧି
ତଥାପି ସେ ଲୀଳାଗୁଣ ନ ପାଏ ଅବଧି
ମୁଁ ଛାର କି କହିବ ମୋହର ବୁଦ୍ଧି କିସ
ହୋଇ ନୋହୁ ଦୋଷ କରି ଆପଣା ମାନସ

( ବ୍ରଜଲୀଳାମୃତସମୁଦ୍ର ୪୧ ଛାନ୍ଦ )

ଛନ୍ଦୋବଦ୍ଧ କୃଷ୍ଣଲୀଳା ଗାନ କରିବାରେ 'ହୋଇ ନୋହୁ' ବୋଲି ଉଲ୍ଲେଖ କରି କବି କେବଳ ନିଜର ବୈଷ୍ଣବୀୟ ନମ୍ରତା ପ୍ରକାଶ କରିଛନ୍ତି । ସେ ନିରୋଳା ଭାବରେ ଗୋଟିଏ ପରେ ଗୋଟିଏ କାବ୍ୟ ନିର୍ମାଣ କରି ଚାଲିଛନ୍ତି । ସେହି ମଧୁମୟ କାବ୍ୟ ସମ୍ଭାର ସର୍ଜନାରେ କବି ମଧୁମକ୍ଷିକାର ଭୂମିକା ଗ୍ରହଣ କରି-ଛନ୍ତି—

" କଟେପୂର୍ଣ୍ଣି ବ୍ରହ୍ମା ଭଣି କହିଲୁ ଜାଣି ନ ଜାଣି
ମଧୁମକ୍ଷି ଯେହ୍ନେ ସର୍ବ ପୁଷ୍ପ ମଧୁ ଏକତ୍ର କରଇ ଆଣି "

( ମୋ କ ୨୮ ଶ ଛାନ୍ଦ )

ଏ ସମ୍ପ୍ରକ୍ଷି ବୃତ୍ତି ଯୋଗୁଁ ସେ ଅଳ୍ପ ସମୟ ମଧ୍ୟରେ ବହୁ କୃଷ୍ଣଲୀଳାତ୍ମକ କାବ୍ୟ ରଚନା କରିପାରିଛନ୍ତି । ୫୮ ଛାନ୍ଦ ବିଶିଷ୍ଟ ଯୁଗଳ ରସାମୃତ ଲହରୀ ପରି ଗୋଟିଏ କାବ୍ୟର ପରିକଳ୍ପନା ଓ ରଚନା ଗୋଟିଏ ମାସରେ ହୋଇପାରିଛି । ତାହାର ଚନ୍ଦ୍ରୋଦୟର ରଚନା ଷୋହଳ ଦିନରେ ସରିଛି । ବିଭିନ୍ନ ପ୍ରସଙ୍ଗରେ ତାଙ୍କର ଅନେକ କଥା କହିବାର ଥିଲେ ମଧ୍ୟ ସମୟାଭାବରୁ ସେ ସେହି ଲୋଭ ସମ୍ବରଣ କରି ଯଥା ସମ୍ଭବ ସଂକ୍ଷିପ୍ତ ପରିସର ମଧ୍ୟରେ କାବ୍ୟାନ୍ତର୍ଗତ ଛାନ୍ଦଗୁଡ଼ିକର ସମାପ୍ତି ଘୋଷଣା କରିଛନ୍ତି—

ତାଙ୍କ ସଖୀଗଣ ପାଞ୍ଚ ପ୍ରକାର
କହିବାକୁ ସମୟ ନାହିଁ ମୋର

× × ×

ଏ କଥା ଶ୍ରୀକାନ୍ତ ପାଇଁ ଏଠାରେ ସମୟ ନାହିଁ
ନ ବୁଝିବେ ଗୀତ କେହି ହେବେ ନିଷ୍ଠୁର
( ନ . ନ . ୧୨ଶ ଛାନ୍ଦ )

× × ×

ଦୁର୍ଗତ ପାଏ ସୁଜବାର କଷ୍ଟଳ
ବହୁତ କହିବାକୁ ନାହିଁତ କାଳସେ
( ନ୍ନ . ମା . ୩ୟ ଛାନ୍ଦ )

ବହୁ ମୂର୍ଦ୍ଧନ୍ୟ ବୈଷ୍ଣବ୍ୟ କାବ୍ୟ କବିତାରୁ ସାରସଂଗ୍ରହ କରି ଯଥାସମ୍ଭବ ସଂକ୍ଷିପ୍ତ ପରିସର ମଧ୍ୟରେ ଓ ଅଳ୍ପ ସମୟରେ ଓଡ଼ିଆରେ ରୂପାୟିତ କରିବାରେ ଭକ୍ତ କବି ଜୀବନର ଶ୍ରେଷ୍ଠ ସାର୍ଥକତା ସେ ଉପଲବ୍ଧି କରିଛନ୍ତି । ଏଣୁ କବି ଜୀବନର ପ୍ରାକ୍ କାଳରେ ଯେଉଁ ମଧ୍ୟଯୁଗୀୟ କାବ୍ୟାଭିମୁଖ୍ୟ ଗୁଡ଼ିକ କବିଙ୍କୁ ଅନୁପ୍ରାଣିତ କରିଥିଲା ସେହି ଶବ୍ଦ ଗୂଢ଼ ଓ ଅର୍ଥଗୂଢ଼ ପରିକଳ୍ପନା ପ୍ରତି ବର୍ତ୍ତମାନ କବି ସମ୍ପୂର୍ଣ୍ଣ ଉଦାସୀନ, ଜୀବନର ଲକ୍ଷ୍ୟ ପରିବର୍ତ୍ତିତ ହୋଇଥିବାରୁ ତାହାର ସାଧନରେ ମଧ୍ୟ ଦ୍ରୁତ ପରିବର୍ତ୍ତନ ସାଧିତ ହୋଇଛି । ମନା କହିବ ଗୌରବ ଓ ଯଶ ପ୍ରତି ନିସ୍ପୃହ କବି ନିର୍ଲିପ୍ତ ଭାବରେ ଗାଇ ଉଠିଛନ୍ତି—

ବହୁ ଛନ୍ଦ ବନ୍ଧ କାବ୍ୟ ପରିଷ୍କୃତ ମତେ
ମୋ ମୁଖେ ପ୍ରକାଶିଲ ସଂସ୍କୃତ ସମ୍ମିଳିତେ ॥
ଅପହ୍ନୁତ୍ୟାଲଂକାରାଦି ସାମଗ୍ରୀ ବହୁଳ
କବି ସାମର୍ଥ୍ୟ ଯଦ୍ୟପି ତହିଁରେ ପ୍ରଗାଢ ॥
ମହା କବି ନାମଖ୍ୟାତ ପ୍ରତିଷ୍ଠାଦି ଯହିଁ ।
ତେବେ ହେଲେ ତହିଁରୁ ମୋ ପ୍ରୟୋଜନ ନାହିଁ ॥
ତହିଁରୁ ନିବୃତ୍ତ ହେଲା ମାନସ ଏଥର ।
ମୋହିତ ହେଲେହେଁ ତହିଁ ବିଦ୍ୟାବିନ୍ୟନର ॥
କୃଷ୍ଣ ଭକ୍ତ ବୁଝିବେ ମୋ ଶ୍ରମ ସାର୍ଥ ଏହି ।
ଶବ୍ଦ ଗୂଢ଼େ ଅର୍ଥ ଗୂଢ଼େ ପ୍ରୟୋଜନ ନାହିଁ ॥

( ନି . ଗୀ . ୧ମ ଛାନ୍ଦ )

ଶବ୍ଦଗୂଢ଼ ଅର୍ଥଗୂଢ଼ ପରିକଳ୍ପନାରେ କବିଙ୍କର ଆଗ ଅଭିରୁଚି ଥିଲା । କିନ୍ତୁ ଏବେ ମନ ସେଥିରୁ ସମ୍ପୂର୍ଣ୍ଣ ନିବୃତ୍ତ । ସ୍ୱତ ମୂଗୀୟ କଷ୍ଟ କଳ୍ପନାରୁ ସମ୍ପୂର୍ଣ୍ଣ ବିରତ କବି ମାନସ ଏବେ " ମିତଂଚ ସାରଂଚ ବଚୋହି ବାଗ୍ମିତା " କୁ କାବ୍ୟ ରଚନାର ଅଭିମୁଖ୍ୟ ଭାବେ ବାଛି ନେଇଛି । କବିଙ୍କର ଏହି ଚିନ୍ତା ଧାରାଟି ବହୁ ବୈଷ୍ଣବୀୟ କାବ୍ୟ କବିତାରେ ଆତ୍ମ ପ୍ରକାଶ କରିଛି ।

ଶୁଣ ସୁବୁଦ୍ଧି ନିୟମାବଧି କଳ୍ପନା ଛାଡ଼ିଲା ମନ
କ୍ଲିଷ୍ଟ ହୋଇବ ବୁଝି ନୋହିବ ନଘେନିବେ ସର୍ବଜନ ।୧।
ଯହିଁ ଯେପରି ରସ ବସ୍ତୁର ନାନା ଜାତିରେ କହିବା
ଯାର ଯେମନ୍ତ ସ୍ୱଭାବ ମତେ ସେ ରଙ୍ଗେ ମନ ହରିବା ।୨।

ପୁ . ର . କ . ୩ୟ ଛାନ୍ଦ

କେବଳ କ୍ଲିଷ୍ଟତା ଓ ଶାବ୍ଦିକତା ଗୁରୁହେଲେ କବିଙ୍କ କବିତା ସର୍ବ-ଜନାଦୃତ ହେବ ନାହିଁ । ସେଥିପାଇଁ ଲୋଡ଼ା ସରଳତା ଓ ସ୍ୱଳ୍ପତା । ଏଣୁ ସେ ବିଶୁଦ୍ଧ କବିତ୍ୱର ନିୟାମକ ଉପାଦ୍ୟ ନିର୍ଣ୍ଣୟ କରି ସ୍ୱୀୟ କାବ୍ୟ କବିତାରେ ତାହା ପ୍ରୟୋଗ କରିଛନ୍ତି—

ଅଳପ ହୋଇ ରୁଚିର ଭକ୍ତି ତତ୍ତ୍ୱ ବୋଧ
କେମନ୍ତ ପ୍ରକାର ହେଲେ କବାନ୍ଧ ବିଶୁଦ୍ଧ

× × ×

ସରଳ ଅଳପ ହେଲେ ହୁଅଇ ରୁଚିର
ଏ ହେତୁ ଏ ଛାନ୍ଦ ପୂର୍ଣ୍ଣ କଲିଁ ଏଥର

( ବ୍ର . ଲୀ . ପ . ୨୧ମ ଛାନ୍ଦ )

ଏହା ବ୍ୟତୀତ କାବ୍ୟ ରଚନାର ଆଭିମୁଖ୍ୟରେ ଆଉ ଗୋଟିଏ ସର୍ବ-ପ୍ରଧାନ ଉଲ୍ଲେଖ ଯୋଗ୍ୟ ପରିବର୍ତ୍ତନ ମଧ୍ୟ କବି ଆନୟନ କରିଛନ୍ତି । ଆଗରୁ ଆଲୋଚନା କରାଯାଇଛି ଯେ, କାଳ୍ପନିକ କାବ୍ୟମାନଙ୍କରେ କବି ପ୍ରାକୃତ ପ୍ରେମର ଶତ ବର୍ଣ୍ଣାଢ୍ୟ ବିଭବ ପ୍ରକାଶ କରିଛନ୍ତି । କିନ୍ତୁ ଏବେ ତାହା ସମ୍ପୂର୍ଣ୍ଣ ଭାବରେ ଚନ୍ଦ୍ରାବଳୀ - କୃଷ୍ଣ ଓ ରାଧା - କୃଷ୍ଣ ପ୍ରେମଲୀଳା ବର୍ଣ୍ଣନାରେ ନିୟୋଜିତ । ରାଧାକୃଷ୍ଣ ପ୍ରେମ ବର୍ଣ୍ଣନାରେ ସମ୍ପୂର୍ଣ୍ଣ ପ୍ରାକୃତତା ଥିଲେ ମଧ୍ୟ ତାହାକୁ ଅପ୍ରାକୃତ ପ୍ରେମ ଆଖ୍ୟା ଦିଆଯାଇଛି । କାଳ୍ପନିକ କାବ୍ୟରେ ପ୍ରେମଶୀଳା ନାରୀ ସମ୍ଭୋଗ, ଜୀବନର ଚରମ ପୁରୁଷାର୍ଥ ବୋଲି ବିବେଚିତ ହେଉଥିବା ବେଳେ ଏବେ କେବଳ ରାଧାକୃଷ୍ଣଙ୍କ ସମ୍ଭୋଗଲୀଳାର ମାନସ ସାକ୍ଷାତ୍କାର ଜୀବନର ଲକ୍ଷ୍ୟ ହୋଇଛି । ସମ୍ଭୋଗ ଲୀଳାର ବର୍ଣ୍ଣନାରେ କୌଣସି ପରିବର୍ତ୍ତନ ହୋଇନି, ହୋଇଛି କେବଳ ପ୍ରାକୃତ, ଅପ୍ରାକୃତ ନାମକରଣରେ । ସାଧାରଣ ନାୟକ ନାୟିକା ସ୍ଥାନରେ ଆସିଛନ୍ତି ରାଧାକୃଷ୍ଣ । ପ୍ରେମଲୀଳା ପ୍ରତି କବିଙ୍କ ପରିବର୍ତ୍ତିତ ଆଭିମୁଖ୍ୟରେ ପାଠକମାନେ ଅନୁପ୍ରାଣିତ ହୁଅନ୍ତୁ, ଏହା କବିଙ୍କ ଏକାନ୍ତ କାମନା । ବିଶ୍ୱ ବିଶ୍ରୁତ ସଂସ୍କୃତ କବି ଜୟଦେବ ରାଧାକୃଷ୍ଣ ଲୀଳାତ୍ମକ ସ୍ୱୀୟ କାବ୍ୟ ଗୀତଗୋବିନ୍ଦର ଆଭିମୁଖ୍ୟ ବର୍ଣ୍ଣନା କରିବାକୁ ଯାଇ ଲେଖିଛନ୍ତି, " ହେ ମୋର ଅଗଣିତ ପାଠକ ! ହରିନାମ ଓ ପବିତ୍ର ଲୀଳା ସ୍ମରଣ କରି ଯଦି ଜୀବନର ସାର୍ଥକତା ସମ୍ପାଦନରେ ଇଚ୍ଛା ଥାଏ, କିମ୍ବା ଲଳିତ କଳାତ୍ମକ ସୌନ୍ଦର୍ଯ୍ୟ ଉପଲବ୍ଧି କରି-ବାରେ ଯଦି ଅଭିରୁଚି ଥାଏ, ତେବେ ଲଳିତ କୋମଳ କାନ୍ତ ପଦାବଳୀ ଜୟଦେବ କବି ଭାରତୀ ମନ ଦେଇ ଶୁଣ ।

“ ଯଦି ହରି ସ୍ମରଣେ ସରସଂ ମନୋ
ଯଦି ବିଳାସ କଳାସୁ କୁତୂହଳଂ
ମଧୁର କୋମଳ କାନ୍ତ ପଦାବଳୀଂ
ଶୃଣୁ ତଥା ଜୟଦେବ ସରସ୍ୱତୀମ୍ ”

ଜୟଦେବଙ୍କ ପ୍ରଦର୍ଶିତ ପନ୍ଥା ଅନୁସରଣ କରି କବି ତାଙ୍କର ପାଠକମାନଙ୍କୁ ଭକ୍ତ, ଗ୍ରାହକ, ରସିକ ଓ ଅନୁଭବୀ ବୋଲି ସମ୍ବୋଧନ କରି, ‘ ଯାହାର ଯେମନ୍ତ ସ୍ୱଭାବ ମତି ସେ ତେଙ୍ଗ ମନ ହେବା’ ପାଇଁ ସମସ୍ତ ଉପାଦାନ କାବ୍ୟମାନଙ୍କରେ ଖଞ୍ଜିଛନ୍ତି । ଭକ୍ତମାନଙ୍କ ପାଇଁ ରାଧାକୃଷ୍ଣ ଲୀଳାତ୍ମକ ଭକ୍ତି ଧାରା ଯେପରି ସ୍ୱଚ୍ଛନ୍ଦ ଗତିରେ ପ୍ରବାହିତ, କାବ୍ୟରସିକମାନଙ୍କ ପାଇଁ ସେପରି ଶୃଙ୍ଗାର ରସର ବିବିଧ ବୈଚିତ୍ର୍ୟ ଓ ସମ୍ଭୋଗ ବିଳାସ ରୂପାୟିତ । କିନ୍ତୁ ସମ୍ପ୍ରଦାୟକୁ ମୋହିତ ଧାର୍ମିକ ପ୍ରତିଷ୍ଠାରେ ପରିବେଷିତ ପରପୁରୁଷ ରାଧାକୃଷ୍ଣଙ୍କ ଅନ୍ୟୋନ୍ୟରେ ପ୍ରାପ୍ତି ଲୋଭ ନୀତି ଦୂର ଦୂର ହୋଇଥିବା ପରକୀୟା ପ୍ରୀତିର ବର୍ଣ୍ଣନା ସାମାଜିକ ଶିଷ୍ଟାଚାର ବର୍ଜିତ ବୋଲି ସ୍ମାର୍ତ୍ତବ୍ରାହ୍ମଣ ମାନେ ବହୁଳବାଦୀ ସ୍ୱର ଉତ୍ତୋଳନ କରିଛନ୍ତି । କବି ରାଧାକୃଷ୍ଣ ପ୍ରେମଲୀଳାକୁ ଅପ୍ରାକୃତ ବୋଲି କହି କାନ୍ତବ ଦେହସୁଧାର ଯେଉଁ ନିଚ୍ଛକ ବର୍ଣ୍ଣନା କରିଛନ୍ତି ତାହାକୁ ସ୍ୱର୍ଗୀୟ ଓ ନିତ୍ୟ ବୋଲି ଯେତେ ଯୁକ୍ତି ଦାଖିଲେ ମଧ୍ୟ ସେଥିରେ ବହୁ ପାଠକମାନଙ୍କର ମନଃପୂତ ହୋଇନାହିଁ । କିନ୍ତୁ କବି ସ୍ୱାନୁଭୂତ ସମ୍ପନ୍ନ ପ୍ରେମ ଭକ୍ତିତତ୍ତ୍ୱ ରେ ଅଟଳ । ନିଜ ମତରେ ତାଙ୍କର ଆତ୍ମବିଶ୍ୱାସ ଓ ଦୃଢ଼ ଆସ୍ଥା ସମସ୍ତ ସାମାଜିକ ବ୍ୟବହାରକୁ ଖାତିର କରିନାହିଁ । ସେ “ ଲୋକ ବେଦର ଭୟ ଛାଡ଼ି, ଆନନ୍ଦେ ପ୍ରେମଜଳେ ବୁଡ଼ି ” ରହି ରାଧାକୃଷ୍ଣ ଯୁଗଳ ଲୀଳା ବର୍ଣ୍ଣନା କରି ଗାଇଛନ୍ତି । ତଥାପି ବିରୋଧୀ ସ୍ୱରପ୍ରତି କବି ମନର ଭୟ ସ୍ୱାଭାବିକ ଭାବେ କେତେବେଳେ କାମିତ ଆତ୍ମପ୍ରକାଶ କରିଛି—

କହି ନୋହଇ ସମ୍ପୂର୍ଣ୍ଣରେ ଯାହା
କହିଲେ କେ ବୁଝି ନପାରେ ତାହା
ବୁଝିଲେ ନିନ୍ଦା କରନ୍ତି ପିଶୁନେ
ତାହାଙ୍କ ସମ୍ଭୋଗ ପଶୁ ସମାନେ
ଏହି ଶଙ୍କାରୁ ମୁଁ ଡରହେ
ତଥାପି ବର୍ଣ୍ଣନା ପରିପାଟୀ ଯେବେ କହିବା କାମ୍ପିତ କରହେ

( ମୋ . କ. ୪୧ ଛାନ୍ଦ

ନିଜେ ବୈରାଗୀ ହୋଇ ସମ୍ଭୋଗ ବର୍ଣ୍ଣନା କରୁଥିବାରୁ କବି ନିଜେ ନିଜର କବି ସ୍ୱଭାବକୁ ଦୋଷ ଦେଇଛନ୍ତି ।

ସ୍ୱଭାବ କେବେହେଁ ଛାଡ଼ି ନ ଯାଇ
ବୈରାଗୀ ହୋଇ ମୁଁ ଏହା ବର୍ଣ୍ଣଇ ଯେ
( ମୋ . କ , ୪୪ ଛାନ୍ଦ )

କବି ଯେ ବୈଷ୍ଣବ, ଏ ଅଭିମାନ ନେଇ ସେ କାବ୍ୟ ରଚନା କରିଛନ୍ତି । ମତାନ୍ତର ପ୍ରତି ତାଙ୍କର କୌଣସି ଭ୍ରୂକ୍ଷେପ ନାହିଁ—

ବୈଷ୍ଣବ ମତ ଆମ୍ଭର ଏ ଅଭିମାନେ ଯାଉଥାଉ ଦିନ
ମତାନ୍ତର ଲୋକ ସଙ୍ଗେ ବିବାଦରୁ ଅଛି କେଉଁ ପ୍ରୟୋଜନ
( ନି. ମା ୬୫ ଛାନ୍ଦ )

କବିଙ୍କ ଅନୁଭୂତ ଲବ୍ଧ କଥା ନବୁଝି ତାଙ୍କର ଲୀଳା ବର୍ଣ୍ଣନା ପ୍ରତି କେତେକ ଅସହନଶୀଳ ହୋଇଥିବାରୁ କବି ଦୁଃଖ ପ୍ରକାଶ କରି ସେମାନଙ୍କର ବ୍ୟବହାର ପ୍ରତି କଟାକ୍ଷ ପାତ କରିଛନ୍ତି—

ଏ କଥା ମାନ କହିବାକୁ ତ ଡରି
ଏବେ କିନ୍ନେ ସ୍ୱଭାବ ଭୁଦନେ ହେ ସୁଜନେ ॥
ଦିଗମ୍ବର ଗ୍ରାମରେ କି ପୀତାମ୍ବର
ସବେ ଦେଖି ବୋଲିବେ ବସନ-ଚୋର ଯେ ॥
ନି ମା ୩୬ ଛାନ୍ଦ

ଏଥିରୁ ସ୍ପଷ୍ଟ କବି ନିଜର ଅନୁଭୂତିଶୀଳ ପାଠକ ମାନଙ୍କ ଉପରେ ଦୃଢ଼ ଆସ୍ଥା ସ୍ଥାପନ କରି ସେମାନଙ୍କର ଗୁଣ କୀର୍ତ୍ତନ କରିବା ସଙ୍ଗେ ସଙ୍ଗେ ନିଜର କବିତ୍ୱ ମହିମାର ମର୍ଯ୍ୟାଦା ଉପଲବ୍ଧି କରିଛନ୍ତି—

ଶୁଣ ଏ ଛାନ୍ଦ ଅନୁଭବୀ ମାନେ
ଧଣ୍ଡି ପଚ୍ଛେ ନଶ୍ୱରୁ ଶୁଣାନେ
ଚନ୍ଦ୍ର କାନ୍ତ ଚନ୍ଦ୍ର କାରେ ତରଳେ
ସ୍ଫୁରଣେ ଦ୍ରବଇ ବର୍ଷୋପଳେ

ହେମନ୍ତ ହତ ରସିକର ହେ
ଆରାଧକ ଅବରମ ଶିଳାବତ
(ମୋ, କ. ୨୨/୧)

ଏସ୍ଥାନ ହୋଇଲ ଯେ
ଅନୁଭବ ବିନା କେଜାଣେ କହ ସେ
ଯେ ହୋଇ ନାହିଁ ସୁନ୍ଦରୀ ଦାସ, ସୁଜନ ହେ ।

କବି ରଚିତ ଦୁଇଟି କାଳ୍ପନିକ ଛାନ୍ଦୋକାବ୍ୟ ଓ ଅନ୍ୟ ସମସ୍ତ ରାଧାକୃଷ୍ଣ ପ୍ରେମାଖ୍ୟାନ କାବ୍ୟ ମାନଙ୍କର ରଚନାରେ ଶିଳ୍ପଧର୍ମୀ ଅଭିମୁଖ୍ୟର ସ୍ୱାତନ୍ତ୍ର୍ୟ ଥିବାରୁ ସେଗୁଡ଼ିକର ଯଥାର୍ଥ ଆଲୋଚନା ପାଇଁ ଯେଉଁ ପୂର୍ବୋଦ୍ଦୃଷ୍ଟି ଦରକାର ତାହାର ସଂକ୍ଷିପ୍ତ ସୂଚନା ମାତ୍ର ଏଠାରେ ଦିଆଯାଇଛି । କବି ଜୀବନର ବିଭିନ୍ନ ଧାରାରେ ପରିବର୍ତ୍ତିତ ହେବାରୁ ବିଭିନ୍ନ ସମୟରେ ରଚିତ କାବ୍ୟ ସମ୍ବନ୍ଧରେ ଜୀବନ ଦର୍ଶନ ଓ ଦୃଷ୍ଟିଭଙ୍ଗୀର ପାର୍ଥକ୍ୟ ରହିବା ସ୍ୱାଭାବିକ । ଏହି ଦୃଷ୍ଟିଭଙ୍ଗୀ ଦ୍ୱାରା କାବ୍ୟ ଗୁଡ଼ିକର ଆଙ୍ଗିକ ଓ ଆତ୍ମିକ ରଚନା ନୈପୁଣ୍ୟ ନିୟନ୍ତ୍ରିତ ହୋଇଥିବାରୁ ସେ ଦୃଷ୍ଟିରୁ ସମସ୍ତ କବି କର୍ମର ସୃଷ୍ଟି କୁଶଳତା ସର୍ବଥା ବିଚାର୍ଯ୍ୟ ।

## ପ୍ରେମାଦର୍ଶ

ବିପୁଳ ବୈଷ୍ଣବ ସାହିତ୍ୟ ଓ ଲୌକିକ ସାହିତ୍ୟରେ ରାଧା ଓ କୃଷ୍ଣଙ୍କ ପ୍ରଣୟ କାହାଣୀ ମୁଖ୍ୟ ଉପଜୀବ୍ୟ ବସ୍ତୁ ରୂପେ ସମଗ୍ର ଭାରତରେ ସଂସ୍କୃତ ଓ ପ୍ରାଦେଶିକ ଭାଷା ମାନଙ୍କରେ ଦୀର୍ଘ ପାଞ୍ଚଶହ ବର୍ଷ ଧରି ରୂପାୟିତ ହୋଇ ଆସୁଅଛି । ରାଧା ଓ କୃଷ୍ଣ ପ୍ରେମିକ ଓ ପ୍ରେମିକାର ଦୁଇଟି ମଧୁର ପରିକଳ୍ପନା । ଏହି ଚଞ୍ଚଳ କଳ୍ପନାର ଶତ ବର୍ଣ୍ଣାଢ୍ୟ ଛଟା ଅସଂଖ୍ୟ ବୈଷ୍ଣବ କବିଙ୍କ ସାରସ୍ୱତ ସାଧନାରେ ବହୁଳ ଭାବରେ ଆତ୍ମପ୍ରକାଶ କରିଅଛି । ଏହି ସୃଷ୍ଟିଧର୍ମୀ ଗୀତି ମୁଖର କବିତା ଗୁଡ଼ିକ ଇନ୍ଦ୍ରିୟ ଗ୍ରାହ୍ୟ ପ୍ରେମ ମାଧ୍ୟମରେ ଅତୀନ୍ଦ୍ରିୟ ଭାବର ଆନ୍ତରିକତା ପ୍ରକାଶ କରିବାରେ ସହାୟକ ହୋଇଅଛି । ମର ଦେହରେ ଅମୃତର ସଞ୍ଚାର କରାଯାଇଛି । ଦେହର ମିଳନ ମାଧ୍ୟମରେ ଆତ୍ମା ଓ ପରମାତ୍ମାର ମିଳନ ଅଭିବ୍ୟଞ୍ଜିତ ହୋଇଛି ।

ଅନ୍ୟ ପକ୍ଷରେ ମଣିଷ ମନର ଗୋଟିଏ ଅଦମ୍ୟ ସ୍ୱାଭାବିକ ପ୍ରବୃତ୍ତି ଓ ସୂକ୍ଷ୍ମତମ ଅନୁଭୂତି — ଇନ୍ଦ୍ରିୟ ଗ୍ରାହ୍ୟ ପ୍ରେମ' ର କ୍ରମିକ ବିକାଶ ସାଧନ କରି ପାଠକ ମାନଙ୍କୁ ଅତୀନ୍ଦ୍ରିୟ ରାଜ୍ୟରେ ନେଇ ପହଞ୍ଚାଇବା ପାଇଁ ଯେଉଁ ପ୍ରତିଭା ନିରୀକ୍ଷଣ ପଟୁ ଅନନ୍ୟ ସାଧାରଣ କବିପ୍ରତିଭା ଏକାନ୍ତ ଆବଶ୍ୟକ, ତାହାର ନିତାନ୍ତ ଅଭାବରେ ଅନେକ ଯଶଃ ପ୍ରାର୍ଥୀ ମନ୍ଦକବିଙ୍କ ହାତରେ ପଡ଼ି ଏହି ରାଧାକୃଷ୍ଣଙ୍କ ପ୍ରେମ କାହାଣୀଟି ନିତାନ୍ତ ଅଶ୍ଳୀଳ, ଅନୈତିକ ଓ ଅପାଙ୍‌କ୍ତେୟ ମଧ୍ୟ ହୋଇ ପଡ଼ିଛି । ଏହିପରି ଅନେକ ଅବର କବିଙ୍କ ଲେଖାରେ ଦେହାତୀତ ନାମରେ କେବଳ ଦେହର ବର୍ଣ୍ଣନା ଓ ଅତୀନ୍ଦ୍ରିୟ ନାମରେ କେବଳ ଇନ୍ଦ୍ରିୟର ବର୍ଣ୍ଣନା ଦେଖିବାକୁ ମିଳେ । ଏ ସବୁ ଭିଡ଼ ବିପୁଳ ବୈଷ୍ଣବ ସାହିତ୍ୟର ଉତ୍ତମ ସୃଷ୍ଟି ପରିପ୍ରେକ୍ଷୀରେ ବିଚାର କଲେ ସଦାନନ୍ଦ କବିସୂର୍ଯ୍ୟ ବ୍ରହ୍ମା ଯେଉଁ ସିଦ୍ଧିର ଅଧିକାରୀ ତାହା ଏକାଧାରରେ ବିମଳ ଆନନ୍ଦଦାୟକ ତଥା ମନୋମୁଗ୍ଧକର ।

ଜନପ୍ରିୟ ଓଡ଼ିଆ ବୈଷ୍ଣବ କବି ଦୀନକୃଷ୍ଣଙ୍କ କବିତାର ଲାଳିତ୍ୟ ସମଗ୍ର ଦେଶରେ ଆଦୃତ ହୋଇ ସାରିବାପରେ ସଦାନନ୍ଦଙ୍କ ପରି ଜଣେ ଅର୍ବାଚୀନ କବି ସେହି ଗୋପୀକୃଷ୍ଣ ପ୍ରସଙ୍ଗ ବର୍ଣ୍ଣନାରେ ନିଜର ଅସାଧାରଣ କବିପ୍ରତିଭାର ପରିଚୟ ଦେଇ ଏ ଦେଶରେ ଯେ ସର୍ବତ୍ର ଆଦୃତ ତଥା ପ୍ରଶଂସିତ ହୋଇ ପାରିଲେ ତାହାହିଁ ବିଶେଷ ଭାବରେ ପ୍ରଣିଧାନ ଯୋଗ୍ୟ । ସଦାନନ୍ଦଙ୍କ ବିଭିନ୍ନ କାବ୍ୟ କବିତାରେ ମାନବିକ ହୃଦ୍‌ସ୍ପନ୍ଦନର ଅଖଣ୍ଡ ଅଲୋକ୍ୟ ସହିତ ପ୍ରେମର ଯେଉଁ ବିକଚ ବିକାଶ ଦେଖିବାକୁ ମିଳେ ତାହା ଭାଷାର ସ୍ୱାଭାବିକ କବିତା ଓ ଅନୁଭୂତିର ଗଭୀରତାରେ ଏତେ ସ୍ୱଚ୍ଛନ୍ଦ, ସହଜ ତଥା ସାବଲୀଳ ଯେ ସହୃଦୟ ପାଠକ ମାନେ ସେଥିରେ ମଜ୍ଜିଯିବା ସ୍ୱାଭାବିକ କଥା । ମଣିଷ ମନର ସବୁ ଆନ୍ତରିକ ପ୍ରେମମୂଳକ ସୂକ୍ଷ୍ମ ଅନୁଭୂତି ରାଜିକୁ ରୂପ ଦେବା ପାଇଁ ସଦାନନ୍ଦ ଯେଉଁ ସହଜ ଭାଷା ଓ ଶାଶ୍ୱତ ଭାବର ସମନ୍ୱିତ ଯାଦୁକରୀ ସ୍ପର୍ଶରେ ରାଧାକୃଷ୍ଣଙ୍କ ପ୍ରେମାଖ୍ୟାନକୁ ଅପୂର୍ବ ମହିମା ବିମଣ୍ଡିତ କରିଛନ୍ତି ତାହା ବାସ୍ତବରେ ତାଙ୍କର କବିତ୍ୱ ପୂର୍ଣ୍ଣ ଦକ୍ଷତାର ଶ୍ରେଷ୍ଠ ପରିଚାୟକ । ରୀତିଯୁଗୀୟ ଆଙ୍ଗିକ ଆଭିମୁଖ୍ୟର ଆଭାସ ସଦାନନ୍ଦଙ୍କ କାବ୍ୟ କବିତାରେ କ୍ୱଚିତ୍ ପରିଦୃଷ୍ଟ ହେଉଥିଲେ ମଧ୍ୟ, ତାହା ପାଣ୍ଡିତ୍ୟର ବିଳାସ ଭୂମି ହୋଇ ନାହିଁ । ଅତିଶୟୋକ୍ତିର ବାହୁଲ୍ୟ, ଆଳଙ୍କାରିକତା ଓ ଶବ୍ଦ କସରତର ଅଯଥା ଆତିଶଯ୍ୟ ପ୍ରତି ସେ ଦୃଷ୍ଟି ଦେଇ ନାହାନ୍ତି । ଫଳରେ କବିଙ୍କ ରଚନା ସମୂହ ରବ ପ୍ରଧାନ ନ ହୋଇ ରସ ପ୍ରଧାନ ହୋଇ ପାରିଛି । କିନ୍ତୁ ଗୋଟିଏ ସାଂପ୍ରଦାୟିକ ଧର୍ମ ଚେତନା ପ୍ରତି ସଦାନନ୍ଦଙ୍କ ଏକାନ୍ତ ଆନ୍ତରିକ ଆନୁଗତ୍ୟ ତାଙ୍କର ଅଧିକାଂଶ ସୃଷ୍ଟିସମ୍ଭାରକୁ ଅଯଥା ଭାରାକ୍ରାନ୍ତ କରିଥିବାରୁ ସେଗୁଡ଼ିକର

ଗଣମାନସରୁ ସାହିତ୍ୟିକ ସୃଷ୍ଟି ସାର୍ଥକତା ଅନେକାଂଶରେ ବର୍ଣ୍ଣିତ ହୋଇଛି । ଏହାପରେ ସ୍ୱଳ୍ପ ସାଂପ୍ରଦାୟିକ ଧର୍ମଗ୍ରନ୍ଥର ତତ୍ତ୍ୱ କଥନିର୍ଦ୍ଦେଶ ସଙ୍କୁଳ କେତେକ କାବ୍ୟ କବିତାକୁ ବାଦ ଦେଇ ଚିନ୍ତା କଲେ, ଯେ କୌଣସି ରସିକ ପାଠକ ସଦାନନ୍ଦଙ୍କ ରଚନାରେ ଯେ, ସ୍ୱାଭାବିକ କବିତାର ଦୁର୍ବାର ଆକର୍ଷଣ ଅନୁଭବ କରିବେ, ଏଥିରେ ସନ୍ଦେହର ଲେଶମାତ୍ର ଅବକାଶ ନାହିଁ । ସାହିତ୍ୟାନୁରାଗୀ ବହୁବ୍ୟକ୍ତିଙ୍କ ପକ୍ଷରେ ନିରବଚ୍ଛିନ୍ନ ଭାବେ ଗୋଟିଏ ମାତ୍ର କାବ୍ୟ ବିଦଗ୍ଧଚିନ୍ତାମଣି କିମ୍ବା କୋଟୀବ୍ରହ୍ମାଣ୍ଡସୁନ୍ଦରୀ ଆମୂଳଚୂଳ ଅଧ୍ୟୟନ କରିବା ନିତାନ୍ତ କଷ୍ଟସାଧ୍ୟ ଓ ସାଧନା ସାପେକ୍ଷ । କିନ୍ତୁ ସଦାନନ୍ଦଙ୍କ କୃଷ୍ଣରସୋଦ୍ଦୀପିତ ଯେ କୌଣସି କାବ୍ୟର ଭାଗ୍ୟରେ ଏ ଦୁର୍ଦ୍ଦଶାର ସମ୍ମୁଖୀନ ହେବା କେବେ ଲେଖାନାହିଁ । ରୀତିଯୁଗୀୟ କାବ୍ୟ ପରମ୍ପରାରେ ଆତ୍ମିକ ସୌନ୍ଦର୍ଯ୍ୟ ଚେତନାକୁ ଗୌଣସ୍ଥାନ ଦେଇ ଶବ୍ଦ ଯୋଜନାରେ ଅପୂର୍ବ କଳାକୁଶଳତା ପ୍ରଦର୍ଶନ କରିବା ପାଇଁ ଚେଷ୍ଟା କରାଯାଇଥିବାରୁ ବିଭିନ୍ନ ଶବ୍ଦ ମାଧ୍ୟମରେ ଗୋଟିଏ ଚିନ୍ତା ବହୁ ବାର ଚର୍ବିତ ହୋଇ ଭାବଦାରିଦ୍ର୍ୟ ସୃଷ୍ଟି କରିଛି । କାବ୍ୟ ସୃଷ୍ଟିରେ ପାଣ୍ଡିତ୍ୟର ପ୍ରଚଣ୍ଡ ବିଳାସ କବିତାର ଜୀବନଧର୍ମୀ ଭାବ ସମ୍ପଦକୁ ନ୍ୟୂନ କରିଦେଇଛି । ଆଙ୍ଗିକରୂପ ସୃଷ୍ଟିରେ କବିଙ୍କ ଶକ୍ତିର ପୂର୍ଣ୍ଣ ବିନିଯୋଗ ହୋଇଥିବାରୁ ଆତ୍ମିକ ସୌନ୍ଦର୍ଯ୍ୟ ଫିକା ପଡ଼ିଯାଇଛି । ଯେଉଁଠି କବିଙ୍କର ଆକାଶୀ କଳ୍ପନାରେ ଆମେ ସ୍ତମ୍ଭୀଭୂତ, ସେଇଠି କବିହୃଦୟର ଲଳିତ କଳାତ୍ମକ ସୂକ୍ଷ୍ମ ଅନୁଭୂତି ସର୍ବଦା ବଞ୍ଚିତ । ହୁଏତ ମସ୍ତିଷ୍କର ଆମୋଦ ପାଇଁ ସେଠାରେ ପାଥେୟ ମିଳିପାରେ, କିନ୍ତୁ ସ୍ପର୍ଶକାତର ହୃଦୟର ପ୍ରସାରଣ ପାଇଁ ତାହା ନିଷିଦ୍ଧାଞ୍ଚଳ ହୋଇ ରହିଯାଏ । ଏସବୁ ରୀତି ଶୈଳୀର ପରିପ୍ରେକ୍ଷୀରେ ତୁଳନାତ୍ମକ ଭାବରେ ସଦାନନ୍ଦଙ୍କ ସୃଷ୍ଟି ସମ୍ଭାର ବିଚାର କଲେ ତାହାଙ୍କ ସୃଷ୍ଟି ଶୈଳୀର ମହତ୍ତ୍ୱ ଉପଲବ୍ଧି କରାହେବ ।

ସଦାନନ୍ଦୀ କବିତାରେ ନ୍ୟୂନତମ ପଦରେ ଅନନ୍ତ ଆତ୍ମିକ ପ୍ରେମାନୁଭୂତିର ଇଙ୍ଗିତ ନିହିତ ଥିବାରୁ ତାହା ସମସ୍ତଙ୍କପାଇଁ ହୃଦ୍ୟ, ଅନବଦ୍ୟ ତଥା ଆକର୍ଷଣୀୟ ହୋଇ ପାରିଛି । ବିଶେଷ ମଧ୍ୟ ଦେଇ ବିଶ୍ୱଜନୀନ ଅନୁଭୂତିର କଳାତ୍ମକ ପରିପ୍ରକାଶ କବିଙ୍କ କବି ସୂର୍ଯ୍ୟ ଉପାଧିର ଯଥାର୍ଥ ପରିଚାୟକ ।

ଏତଦ୍ ବ୍ୟତୀତ ସଦାନନ୍ଦଙ୍କ କାବ୍ୟ ସୃଷ୍ଟିର ଆଉ ଗୋଟିଏ ସ୍ୱାତନ୍ତ୍ର୍ୟ ଯେ କୌଣସି ପାଠକର ଦୃଷ୍ଟି ଆକର୍ଷଣ କରେ । ବୃନ୍ଦାବନବାସୀ ଗୋସ୍ୱାମୀ ମାନଙ୍କର ଚିନ୍ତା ଓ ଚେତନାର ବିଭିନ୍ନ ବର୍ଣ୍ଣାଢ଼୍ୟ ପରିପ୍ରକାଶ କାବ୍ୟ କବିତାରେ ସର୍ବତ୍ର ଦୃଷ୍ଟି ଗୋଚର ହେଉଥିଲେ ମଧ୍ୟ ସେଗୁଡ଼ିକର ଚୟନ ଓ ଉପସ୍ଥାପନାରେ ବହୁ ସ୍ୱାତନ୍ତ୍ର୍ୟ ପରିଲକ୍ଷିତ ହୁଏ । ଛନ୍ଦୋବଦ୍ଧ କାବ୍ୟ ଗୁଡ଼ିକର ପଠନ ପାଠନ ଓ

ଗାୟନ କଳାରେ ସମ୍ପୂର୍ଣ୍ଣ ଉତ୍କଳୀୟତା ସଂଶ୍ଳେଷିତ ହେବା ସଙ୍ଗେ ସଙ୍ଗେ ସେଗୁଡ଼ିକର ବର୍ଣ୍ଣନା ସ୍ତରରେ ଉତ୍କଳୀୟ ଭାବଭଙ୍ଗୀର ଯଥେଷ୍ଟ କଳାତ୍ମକ ପରିପ୍ରକାଶ ପାଠକ ମାନଙ୍କୁ ମୁଗ୍ଧ କରେ । କବିଙ୍କ ଲେଖନୀରେ ତାଙ୍କର ସମାରାଧ୍ୟ ରାଧାକୃଷ୍ଣ ଅତି ନିଜର ପ୍ରଦେଶୀୟ ବୃନ୍ଦାବନର କିଶୋର କିଶୋରୀ ହୋଇ ରହିନାହାନ୍ତି, ସେମାନଙ୍କର ଚାଲି ଚଳଣି, ବେଶଭୂଷା, ହାବଭାବ, କଥା ଓ କଳ୍ପନା, ଦୃଷ୍ଟି ଓ ସୃଷ୍ଟି, ଭାଷା ଓ ଭାବନା ମଧ୍ୟରେ ଓଡ଼ିଆ ପ୍ରାଣର ଶତ ଦର୍ଶ୍ରୀତ୍ୟ ନାଗର ମୂର୍ତ୍ତି ଉଠିଛି । ସଖୀମାନଙ୍କ ମୁଖରେ ଯଥୋଚିତ ଭାବେ ଓଡ଼ିଆଣୀ ପ୍ରାଣର 'ରାଣ' ଶବ୍ଦଟି ପ୍ରୟୋଗ କରି ସେମାନଙ୍କର ବକ୍ତବ୍ୟ ଆଳାପରେ ଅତ୍ୟନ୍ତ ଆନ୍ତରିକତା ଫୁଟାଇଛନ୍ତି । ସ୍ୱୀୟ ବକ୍ତବ୍ୟର ଗୁରୁତ୍ୱ ସତ୍ୟତା ଓ ଦୃଢ଼ତା ପ୍ରକାଶ କରିବା ପାଇଁ ଓଡ଼ିଆଣୀମାନେ 'ମୋ ରାଣ' ରୂପକ ଅମୋଘ ଅସ୍ତ୍ର ପ୍ରୟୋଗ କରିଥାନ୍ତି । ଏହିପରି ଅନେକ ଖାଣ୍ଟି ଓଡ଼ିଆ ଶବ୍ଦର ପ୍ରୟୋଗ କୁଶଳତା ସଦାନନ୍ଦଙ୍କ କାବ୍ୟ କଳ୍ପନାର ଗୋଟିଏ ଭିନ୍ନମଞ୍ଜି ଦାଗ । କାବ୍ୟବର୍ଣ୍ଣିତ ବିଭିନ୍ନ ପରିବେଶ ଓ ପରିସ୍ଥିତିକୁ ସହଜ ଓ ସ୍ୱାଭାବିକ ପ୍ରାଣପ୍ରାଚୁର୍ଯ୍ୟରେ ମହିମାନ୍ୱିତ କରିବାରେ ଏହିପରି ଭାଷା ପ୍ରୟୋଗର ଅବଦାନ ଯେ କେତେ ମର୍ମସ୍ପର୍ଶୀ ତାହା ପାଠକ ମାନଙ୍କର କେବଳ ଅନୁଭବଯୋଗ୍ୟ । ସୁପ୍ରଚଳିତ ଓଡ଼ିଆ ଢଗଢମାଳିର ଯଥୋଚିତ କାବ୍ୟିକ ପ୍ରୟୋଗ ମଧ୍ୟ ଏ କ୍ଷେତ୍ରରେ ଏକାନ୍ତ ଉଲ୍ଲେଖଯୋଗ୍ୟ । ଉଦାହରଣ ସ୍ୱରୂପ, କୃଷ୍ଣଙ୍କ ବିରହରେ ପ୍ରେମପାଗଳିନୀ ରାଧା ଯେତେବେଳେ ପ୍ରାଣାଧିକା ସଖୀ ମାନଙ୍କୁ ନିଜର ମନବେଦନା ଜଣାଇ ଓ ବିପତ୍ତିରୁ ରକ୍ଷାପାଇବାର ଉପାୟ ଖୋଜି ବାହାର କରିବାପାଇଁ ଆକୁଳ ନିବେଦନ କରିଛନ୍ତି ସେତେବେଳେ ପରିହାସ ପ୍ରବଣ ସଖୀମାନେ ରାଧାଙ୍କ ଧୈର୍ଯ୍ୟ ପରୀକ୍ଷା କରିବାକୁ ଯାଇ କହିଛନ୍ତି—

" ହାତର ଗୁଡ଼ ବୋହି ହେଲ କହୁଣୀ
ଏବେଭା ବିସ୍ମରିଲେ ଅଛୁକ ଚୁଣି ଯେ "
(ନ , ନ . ୪/୧୭)

ଲେଉଡ଼ି ଗୁଡ଼ କହୁଣୀକୁ ବୋହିଯିବା ପରେ ଆଉ ଚିନ୍ତା କରି ଲାଭ କ'ଣ ଏହା ଦୈନନ୍ଦିନ ଓଡ଼ିଆ ଚଳଣିର ଗୋଟିଏ ସୁପ୍ରଚଳିତ ପ୍ରବଚନ । ଏହି ପ୍ରଚଳିତ ପ୍ରବଚନର ଯଥାର୍ଥ କାବ୍ୟିକ ପ୍ରୟୋଗ ବିଷୟ ବାକ୍ୟ ସହିତ, ସହଜ ସ୍ୱାଭାବିକ ଓଡ଼ିଶୀ ପରିବେଶ ସୃଷ୍ଟିରେ ଏକାନ୍ତ ସହାୟକ ହୋଇ ପାରିଛି । ଚରିତ୍ର ଗୁଡ଼ିକର ଅଭ୍ରାନ୍ତ ମାନସିକ ଚିତ୍ର ଉପସ୍ଥାପନ ସହିତ ବିଷୟଗତ ମାଧୁର୍ଯ୍ୟ ପ୍ରତିଷ୍ଠାରେ ଏହିପରି ଭାଷାପ୍ରୟୋଗ ର କବିତ୍ୱପୂର୍ଣ୍ଣ କୌଶଳ ସଦାନନ୍ଦଙ୍କ

କାବ୍ୟକବିତା ଗୁଡ଼ିକୁ ହୃଦ୍ୟ ତଥା ଅନବଦ୍ୟ ରୂପ ଦେଇ ପାରିଛନ୍ତି । ଫଳରେ ସମସ୍ତ ଓଡ଼ିଆ ପାଠକ ଓ ପାଠିକା ନିଜ ଭିତରେ କୃଷ୍ଣ ଓ ରାଧାଙ୍କ ସକଳ ଭାବସ୍ପନ୍ଦନକୁ ପ୍ରତ୍ୟକ୍ଷ ଭାବରେ ଅନୁଭବ କରନ୍ତି । ଏହି ଅନ୍ତରଙ୍ଗ ଅନୁଭୂତିର ଆତ୍ୟନ୍ତିକ ପରିପ୍ରକାଶ ସମସ୍ତ ଓଡ଼ିଆ ପାଠକଙ୍କ ନିକଟରେ ଯେତେ ହୃଦ୍ୟ ଓ ସ୍ୱାଦ୍ୟ ହୋଇ ପାରିଛି, ସେପରି ହାର୍ଦ୍ଦିକତା ସଦାନନ୍ଦୀ କବିତାର ଗୋଟିଏ ଅବଶ୍ୟ ସ୍ୱୀକାର୍ଯ୍ୟ ଦିଗ । ଉତ୍କଳୀୟ କୃଷ୍ଟି ଓ ପରମ୍ପରାରେ ପରିବର୍ଦ୍ଧିତ ତଥା ପ୍ରସାରିତ ସୁପରିଚିତ ଭାବନୁସାରୀ ରାଗରାଗିଣୀର ସମୁଚିତ ଯୋଜନା ଫଳରେ ପ୍ରେମାଖ୍ୟାନ ମୂଳକ ପ୍ରତ୍ୟେକଟି କବିତା ଭାବବ୍ୟଞ୍ଜନାର ଗମ୍ଭୀରତା ପ୍ରକାଶ କରିବା ସଙ୍ଗେ ସଙ୍ଗେ ଅପୂର୍ବ ସାଙ୍ଗୀତିକ ସ୍ୱର ମୂର୍ଚ୍ଛନା ସୃଷ୍ଟିକରି ପାଠକର ମନ ଓ କର୍ଣ୍ଣକୁ ସମ୍ମୁଗ୍ଧ କରିଦିଏ । ଗୋଟିଏ କ୍ଷୁଦ୍ର ଓଡ଼ିଆ ଗ୍ରାମର କେତୋଟି ସରଳ ପଦମଧ୍ୟରେ ମଣିଷର ଚିର ସୁନ୍ଦର ଏହି ସହଜ ସୁଲଭ ସାମଗ୍ରିକ ଅନୁଭୂତିକି ଏକାଧାରରେ ପ୍ରେମର ପ୍ରତିଭାଦୀପ୍ତ ସେହିପରି ପ୍ରାଣପ୍ରାଚୁର୍ଯ୍ୟର ନିତ୍ୟ ନୂତନ ଉଷ୍ମତାରେ ଅନୁରଞ୍ଜିତ । ଏହାହିଁ କବିବର୍ଣ୍ଣିତ ସୃଷ୍ଟି-ଶିଳ୍ପର ଶ୍ରେଷ୍ଠ ସାର୍ଥକତା ।

ସଦାନନ୍ଦଙ୍କ ଅଧିକାଂଶ କାବ୍ୟାଂଶ ସରସତାର ଗୋଟିଏ ଗୋଟିଏ ଅସରନ୍ତି ଉତ୍ସ ରାଧାକୃଷ୍ଣଙ୍କ ପ୍ରଣୟ ଲୀଳାର ଅସଂଖ୍ୟ ବର୍ଣ୍ଣନାରେ ନିଜ ଜୀବନର ଜୀବନ୍ତ ଅନୁଭୂତ ପ୍ରତିଫଳିତ । ସ୍ୱୀୟ ହୃଦୟରେ ଲକ୍ଷିତହୋଇଥିବା ପ୍ରେମପ୍ରବଣ ମନର ଭାବୁ ଆଲେଖ୍ୟ ଗୁଡ଼ିକୁ ସେ ଯଥା ସ୍ଥାନରେ ରୂପ ଦେଇଥିବା କଥା ନିଜେ ସ୍ୱୀକାର କରି ଲେଖିଛନ୍ତି — ' ଅନୁଭବୀ ଜାଣୁକେ ଜାଣେ ଏହା ' । ଏଠାରେ ରାଧାକୃଷ୍ଣଙ୍କ ପ୍ରେମାନୁଭୂତି ନିତାନ୍ତ ଅବାସ୍ତବ ଭାବରେ ବର୍ଣ୍ଣିତ ହୋଇ ନାହିଁ । କୃଷ୍ଣ ପ୍ରେମ ବିମୋହିତା ରାଧା କଳାଶାଢ଼ୀ ପିନ୍ଧିବା, କଳା କାଇଁଚକୁ ପ୍ରଶଂସା କରିବା କିମ୍ବା କଜ୍ଜ୍ୱଳରେ ଚିହ୍ନକରି ଚୁମ୍ବିବାକୁ ମନବଳାଇ ନାହାନ୍ତି । କିନ୍ତୁ ଅନନ୍ତ ଲଜ୍ଜାବତୀ ଅନୂଢ଼ା ପ୍ରେମ କମ୍ପାନ୍ୱିତ ହୃଦୟା ମୁଗ୍‌ଧା କିଶୋରୀ ମାନଙ୍କର ମନୋବେଦନାର ଶାଶ୍ୱତ ଅନୁଭୂତି ଗୁଡ଼ିକୁ ଗୋଟି ଗୋଟି କରି ପ୍ରାଣାଧିକା ସଖୀ ଆଗରେ ବ୍ୟକ୍ତ କରିଛନ୍ତି । ଏ ରାଧାର ସ୍ତମ୍ଭ ସ୍ୱେଦ, ରୋମାଞ୍ଚ ଓ ବେପଥୁ ବାସ୍ତବ ଅନୁଭୂତି ବ୍ୟଞ୍ଜକ, କବିଙ୍କ କପୋଳ କଳ୍ପିତ କେବଳ କାବ୍ୟିକ କଳ୍ପନା ନୁହେଁ । ଏଠାରେ ପ୍ରଣୟାସକ୍ତ ଗୋଟିଏ ରାଧା ଓ ଗୋଟିଏ କୃଷ୍ଣର ହୃତ୍‌ସ୍ପନ୍ଦନ ମଧ୍ୟଦେଇ କୋଟିଏ କିଶୋର କିଶୋରୀଙ୍କ ଅନ୍ତର୍ବେଦନା ଜୀବନ୍ତ ରୂପ ପ୍ରକାଶ କରିଛି । ଏହାର କଳ୍ପନା, ଭାଷା, ଓ ବର୍ଣ୍ଣନା ଯେତିକି ଉଚ୍ଛଳ ଓ ଉଜ୍ଜ୍ୱଳ । ଏହାର ଗତି ଓ ପ୍ରକୃତି ସେତିକି ମର୍ମଜ୍ୱଳା ପ୍ରାଣ ପ୍ରାଚୁର୍ଯ୍ୟର ଏ ସହଜ ସମାହାର ଏ ନିବିଡ଼ ନିବେଦନ ଦେଖିବାର କଥା ଓ ଅନୁଭବ କରିବାର କଥା । ନିର୍ମଳ ପ୍ରେମାନୁଭବ

କୋଟି ବ୍ରହ୍ମାପଦ ସହିତ ସମାନ ନୁହେଁ । କବିଙ୍କ ଭାଷାରେ—

"ନାଙ୍ଗ ହୋଇଥିବ ନବବୟସୀ ସନ୍ତକେ ।
କରୁଥିବ ତା ଅଧର ପାନ ଭଙ୍ଗ ଭଙ୍ଗେ ॥
ଉଚ୍ଛୀରେ ସେ ଭାସୁଥିବ ଗ୍ରନ୍ଥି ନାହିଁ ନାହିଁ
କୋଟୀ ବ୍ରହ୍ମାପଦ ତେତେବେଳେ ସମ କାହିଁସେ" ॥
( ମୋହନ ଲତା )

ପଞ୍ଚସ୍ୱଚ୍ଛନ୍ଦର ପାରଦର୍ଶୀ କବି ଗୋପାଳକୃଷ୍ଣଙ୍କ ବାତ୍ସଲ୍ୟ ପ୍ରେମର ସୁମିଷ୍ଟ ସୃଷ୍ଟି ଅବହେଳାର ବିଷୟ ନୁହେଁ । ପ୍ରତିଭାଶାଳୀ କବିଙ୍କ କାବ୍ୟିକ ସ୍ପର୍ଶରେ ଜଗତର ଚିତନ୍ନ ଅବାଧ ଶିଶୁ - କୃଷ୍ଣ ଲାଗି କଲ୍ୟାଣମୟୀ ଚିନ୍ମୟୀ ଜନନୀ ଯଶୋଦାଙ୍କ ବଟକ୍ର, ସ୍ନେହ ଓ ଆଶଙ୍କା ଅମର ରୂପ ନେଇଛି । ଯାହାର ଅନାବିଲ ଜୀବନ ଧର୍ମୀ ମୂର୍ଚ୍ଛନାରେ ପ୍ରତ୍ୟେକ ବାତ୍ସଲ୍ୟ ଭାବନାବିଷ୍ଟ ହୃଦୟ ଭାବଗଦ୍‌ଗଦ୍ ଚିତ୍ତରେ ସ୍ପନ୍ଦିତ ହୁଏ । ଯୁଗଳରସାମୃତ ଲହରୀର ପଞ୍ଚମ ଛାନ୍ଦରେ ଯଶୋଦାଙ୍କ ମାତୃ ଲାଳସା ଅଭିବ୍ୟକ୍ତ । ଅଲଅଲ ଶିଶୁ ଶ୍ରୀକୃଷ୍ଣ ସନ୍ଧ୍ୟାବେଳେ ଗୋଗୋଷ୍ଠ ନେଇ ବନରୁ ଫେରୁଛନ୍ତି । ଦିନ ତମାମ୍ ଗୃହରେ କୃଷ୍ଣଙ୍କ ଅନୁପସ୍ଥିତି, ସ୍ନେହ କାଙ୍ଗାଳିନୀ ଯଶୋଦାଙ୍କୁ ପୁତ୍ର ମୁଖ ଦର୍ଶନ ପାଇଁ ଉଚ୍ଚାଟିତ କରିଛି ।

ମୋର ଚଳା କାହ୍ନୁର
ଦିଶୁଅଛି କେଡ଼େ ସଞ୍ଚ ଲୋ
ଲବଣୀ ମାଗଇ ଲଞ୍ଚ ଲୋ ।
ବନେ କଲା କେଉଁ ପାଞ୍ଚ ଲୋ ।
ଯଶୋଦା ଉଭା ଦୁଆରେ
ଦେଖନ୍ତି କୁମର ଗାଈ ପଛରେ, ସେ ଆସୁଅଛି ଧୀରେ ଧୀରେ ଲୋ ।
ବଦରୀ ଫଳ ଆକାର
ଗୋରୁ ଧୂଳି ପଡ଼ି ତନୁ ଧୂସର ସେ, ଝଲକ କାଳିଆ ସୁନ୍ଦର ଲୋ ।
ଯାଚଲେ ନଖାଇ ସର
ଭୁଞ୍ଜୁଥିବ ବନଫଳ ନିକର ସେ ବୋଲୁଥିବ ଅମଧୁର ଲୋ ।
କାହ୍ନୁଁ ଏ ଶିଖିଲା ନାଟ
ଲୋଟଣୀ ପାରୁଆ ପରି ଚହଟ ସେ, ନାଚ ଆପେ ଦାଣ୍ଡ ହାଟ ଲୋ

କୋଇଲି ପଶୁ ବୋବାଇ
କଉତୁକିଅ ମୋ କଳାକହ୍ନାଇ ସେ, ସଞ୍ଚାର କରୁଛୁ ବାଇନେ ॥

ସମଗ୍ର ଛାନ୍ଦଟିର ଏପରି ମଧୁର ପରିକଳ୍ପନା ବାସ୍ତବରେ ସଦାନନ୍ଦଙ୍କ ଅନନ୍ୟ ସାଧାରଣ କବିପ୍ରତିଭାର ଗୋଟିଏ ଜ୍ୱଳନ୍ତ ନିଦର୍ଶନ ।

ସଦାନନ୍ଦଙ୍କ କବିତାରେ କେବଳ ପ୍ରଗାସ୍ଥର ଚିତ୍ର ଯେ ଶତ ସ୍ୱାଭାବିକ ବର୍ଣ୍ଣନାତ୍ୟ ପରିବେଶ ମଧ୍ୟରେ ଚିତ୍ରିତ ହୋଇଅଛି । ତାହା ନୁହେଁ । ଏ ପ୍ରଣୟ ଚିତ୍ର ମଧ୍ୟରେ ଭକ୍ତ କବିଙ୍କ ଭକ୍ତିମନ୍ତ୍ରର ସ୍ୱାଭାବିକତା ଅଭିବ୍ୟକ୍ତି ହୋଇ ଉଠିଛି । ଯଶସ୍ୱୀ କବିଙ୍କ ଅଟଳ ଲେଖନୀ ଚମତ୍କାରିତାର ଚରମ ଦ୍ୟୋତନା ମଧ୍ୟରେ କାମ ଓ ପ୍ରେମର ସୀମା ରେଖା ସ୍ପଷ୍ଟ କରି ଦେଇଛି । ଜୈବ ପ୍ରବୃତ୍ତି ବିଶିଷ୍ଟ ମଣିଷ ମଧ୍ୟରେ । କାମବାସନା ଓ ଦେହ ଭୋଗର ଉଦ୍ଦାମ ଅଭିଳାଷ ଯୌବନର ପ୍ରଥମ ସମାଗମରେ ତରଙ୍ଗ ସୃଷ୍ଟି କରେ । କିନ୍ତୁ ସେହି କାମ ତରଙ୍ଗ ଯେତେବେଳେ ପ୍ରେମତରଙ୍ଗରେ ପରିଣତ ହୁଏ ସେତେବେଳେ ମାନବ ଜୀବନ ସାର୍ଥକ ହୁଏ । ମୁକ୍ତିହୁଏ ଏଣୁ ମଣିଷ ସମାଜକୁ ସ୍ୱାଭାବିକ କାମକଳାପର ଦୁଆର ଅଭିଳାଷ ମାଧ୍ୟମରେ ଶାଶ୍ୱତ ପ୍ରେମର ସନ୍ଧାନ ଦେବା ବୈଷ୍ଣବ କବିର ଯେଉଁ ମହତ୍ ଲକ୍ଷ୍ୟ ସେହି ଲକ୍ଷ୍ୟ ସାଧନାରେ ସଦାନନ୍ଦ ତାଙ୍କ ରଚନାରେ ଚରମ ସାର୍ଥକତା ଲଭି କରିଛନ୍ତି । ରୂପ ବ୍ୟତୀତ ଅପରୂପର ସନ୍ଧାନ ମିଳେ ନାହିଁ ଦେହ ବ୍ୟତୀତ ଦେହାତୀତ ସାକ୍ଷାତ୍କାର ଅସମ୍ଭବ, ଭକ୍ତି ଅଭାବରେ ଅତୀନ୍ଦ୍ରିୟର କଳ୍ପନା ନିରର୍ଥକ । ମିଥ୍ୟା ବ୍ୟତୀତ ସତ୍ୟକୁ ଜାଣିହେବ ନାହିଁ । ଏହାହିଁ ସତ୍ୟ ସନ୍ଧାନର ମୂଳ ଧାରଣ କଥା । ଏଣୁ କାମ ବ୍ୟତୀତ ପ୍ରେମର ସାଧନା ଅସମ୍ଭବ । କାମ ଉପାସନାର ଅନ୍ତିମ ପରିଣତି ପ୍ରେମରେ । ଏହାହିଁ ମାନବ ଦେହରେ ଅମରତ୍ୱ ପ୍ରାପ୍ତିର ଶ୍ରେଷ୍ଠ ପନ୍ଥା । ବୈଷ୍ଣବୀୟ ଦାର୍ଶନିକର ଏହି ବାସ୍ତବ କଳ୍ପନାଟିକୁ କବି ସଦାନନ୍ଦ ତାଙ୍କର କାବ୍ୟଶୈଳୀରେ ଯେଉଁ ଚମତ୍କାର ରୂପ ପ୍ରଦାନ କରିଛନ୍ତି, ତାହା ସମଗ୍ର ଓଡ଼ିଆ ସାହିତ୍ୟରେ ସମ୍ପୂର୍ଣ୍ଣ ନୂତନ ।

ରାଧାକୃଷ୍ଣଙ୍କ ପ୍ରେମଗାଥା ବୃନ୍ଦାବନର ଯୌବନ ସ୍ୱର୍ଣ୍ଣ କାଳର ଦୁଇଟି କିଶୋର କିଶୋରୀଙ୍କ କାମନାମୟ ପ୍ରେମର ସ୍ୱାଭାବିକ ଉନ୍ମେଷଠାରୁ ବାସନାହୀନ ପ୍ରେମର ପୂର୍ଣ୍ଣ ପରିପ୍ରକାଶ ପର୍ଯ୍ୟନ୍ତ ଯେଉଁ ସହଜ ସ୍ୱାଭାବିକ ବର୍ଣ୍ଣନା ବିକାଶ ହୋଇ ରହି ଯାଇଛି, ତାହା ସମସ୍ତ ମଣିଷର ପ୍ରେମାନୁଭୂତିକୁ ନିବିଡ଼ ଭାବରେ ଅନୁପ୍ରାଣିତ

କଲେ । ଦୁଇଟି ଅଂଶ ର ଏ ନାଟକୀୟ ଗତି ଓ ପରିବେଶ ପାଠକଙ୍କୁ ଅନୁପ୍ରାଣିତ କରି-ଥାଏ । ଜୀବନର ସ୍ୱାଭାବିକ କଳ୍ପନା ତଥା ଅତୀନ୍ଦ୍ରିୟ ପ୍ରେମାନୁଭୂତିର ଏହି ଆବେଗରେ, ହୃଦୟର ଶାଶ୍ୱତ ଭାବରାଜିର ଏହି ନିପୁଣ ପରିପ୍ରକାଶରେ, ପାଠକ ମନେ ନମସ୍କରି ହୁଅନ୍ତି । ଏହା ଚରିତ୍ର ଭକ୍ତଙ୍କୁ ଅଲୌକିକ ଅନୁଭବର ଅଧ୍ୟାତ୍ମିକ ଜୀବନଭିତ୍ତି ମଧ୍ୟଦେଇ ଅତୀନ୍ଦ୍ରିୟ ରାଜ୍ୟରେ ନେଇ ପହଞ୍ଚାଇ ଥାଏ ।

ହଠାତ୍ ଦିନେ ଶତେଷ୍ଟି ଗ୍ରଧ ପ୍ରତ୍ୟକ୍ଷରେ ରସିକ ଶିରୋମଣି କୃଷ୍ଣଙ୍କ ଅନିନ୍ଦ୍ୟ ସୁନ୍ଦର ରୂପଦେଖି ପ୍ରେମମୟୀ ରାଧା ଉନ୍ମନା ହେଲେ । ସଖୀଠାରୁ ମୁରଲୀ ବାଦକ କୃଷ୍ଣଙ୍କ ବୃତ୍ତାନ୍ତ ଓ ପରିଚୟ ପାଇ କୃଷ୍ଣଙ୍କ ସ୍ୱରୂପ ଦର୍ଶନ ପାଇଁ ଉତ୍ସୁକ ହେଲେ । ଅପର ପକ୍ଷରେ କୃଷ୍ଣମଧ ରାଧାଙ୍କ ଅନୁପମ ସୌନ୍ଦର୍ଯ୍ୟ ବାହୁରେ ଅବଗତ ଥିଲେ । ହଠାତ୍ ଦିନେ ଯମୁନା ଯିବା ବାଟରେ ଦୁହିଁଙ୍କ ସ୍ନେହର ମିଳନ ହେଲା । ସେମାନେ ପରସ୍ପର ପ୍ରତି ଦୁର୍ନିବାର ଆକର୍ଷଣରେ ଆକୃଷ୍ଟ ହେଲେ । ସଖୀଦ୍ୱାରା ଚିଠାଉ ମାଧ୍ୟମରେ ଭାବର ଆଦାନ ପ୍ରଦାନ ହେଲା । ସମଯୁଗମେ ବିବାହିତା ହେଉ ରାଧିକା ଶାଶୁ ନଣନ୍ଦଙ୍କ ଅଲଙ୍ଘନୀୟ ବନ୍ଧନ ମଧ୍ୟରେ ଥିଲେ ମଧ୍ୟ କୃଷ୍ଣଙ୍କ ପ୍ରତି ମନର ଦୁର୍ଦମନୀୟ ଆକର୍ଷଣକୁ ବାରଣ କରିପାରିଲେ ନାହିଁ । ଉତ୍କଣ୍ଠା, ଆଶଙ୍କା ଗ୍ଲାନି ଓ ସ୍ୱାଭାବିକ ଭୀରୁତା ମଧ୍ୟ ଦେଇ ସେ କୃଷ୍ଣଙ୍କ ସହିତ ନିଭୃତ ସଙ୍କେତ କୁଞ୍ଜରେ ମିଳିତ ହେଲେ । ଧୀରେ ଧୀରେ ରାଧାଙ୍କର ସେହି ଭୀରୁତା ଅପସାରିତ ହେଲା, କୃଷ୍ଣ ସାନିଧ୍ୟ ତାଙ୍କ ଜୀବନର ଏକମାତ୍ର ଲକ୍ଷ୍ୟ ହେଲା । କୁଳୀନା ହୋଇ କୁଳଟାର ଅପକୀର୍ତ୍ତିକୁ ସେ ଆଉ ଖାତିର କଲେ ନାହିଁ । ପାପପୁଣ୍ୟ ବିସ୍ମରି ଉଦ୍ଧ୍ୱେ ସେ ସଖୀଙ୍କୁ ନିର୍ବିକାର ଚିତ୍ତରେ କହିଲେ

"ଜ୍ଞାନ ଧ୍ୟାନ ସବୁ ମୋର ରେ ସଖି
ଗୋବିନ୍ଦ ନନ୍ଦ କିଶୋରରେ
ରୂପଡ଼ ଜରମୁଁ କହୁଅଛୁ ପାପ ପୁଣ୍ୟକୁ ନାହିଁ ଗୋ ଡରରେ"

ଅଭିସାରିକା ସାଜି ସେ ଯେପରି ଭାବରେ ଆତ୍ମସମର୍ପଣ କଲେ ସେହି ପ୍ରେମ ବ୍ୟାପାରର ସ୍ୱାଭାବିକ ଓ ଅବଶ୍ୟମ୍ଭାବୀ ପରିଣତିରେ ରାଧା ବାସକ ସଜ୍ଜା, ଖଣ୍ଡିତା ଓ କଳହାନ୍ତରିତାର ଭୂମିକାରେ ଅବତରଣ କଲେ । କିନ୍ତୁ ଏସବୁ ଗର୍ବ, ଦମ୍ଭ, ଅଭିମାନ ଅନ୍ତରେ ଧ୍ୱଂସ ହେଲା । ରାଧା ହେଲେ ସମ୍ପୂର୍ଣ୍ଣ ଭାବରେ ପ୍ରେମ ପାଗଳିନୀ । କ୍ଷୁଦ୍ର ମାନବିକ କାମନାର ଗଣ୍ଡି ଭିତରୁ ମୁକ୍ତଧାରା କଣ୍ଠୁ ସ୍ୱର୍ଗୀୟ ପ୍ରେମ ରାଜ୍ୟରେ ସେ ବିଚରଣ କରିବାକୁ ଲାଗିଲେ । ମୂଳ ସଂସ୍କୃତ ମାନବିକ ଭୋଗଲିପ୍ସା, ସ୍ୱାର୍ଥଭାବ, ନିସ୍ୱାର୍ଥପର ପ୍ରେମରେ ପରିଣତ ହେଲା ।

କ୍ଷୁଦ୍ର ମାନବର ସ୍ତରର ଦାବୀ, ଅଧିକାର, ମାନ, ଅଭିମାନ ଓ ଅହମିକା ସବୁ ଭୁଲି ସେ ନିଃଶେଷ ଭାବରେ କୃଷ୍ଣ ପ୍ରେମ ନିକଟରେ ଆତ୍ମ ସମର୍ପଣ କଲେ । ସମ୍ପୂର୍ଣ୍ଣ ଅହଂ ବିନାଶ ରାଧାଙ୍କୁ ପ୍ରେମିକ କୃଷ୍ଣଙ୍କ ବରିଷ୍ଠତ୍ୱ ଓ ନିଜର କ୍ଷୁଦ୍ରତା ବିଷୟରେ ସଚେତନ କରିଦେଲା । ସେ କୃଷ୍ଣଙ୍କ ସଙ୍ଗେ ତୁଳିତ ହେବା ଦୂରେ ଥାଉ ତାଙ୍କ ପଦଧୂଳିର ମଧ୍ୟ ସମ ନୋହିବେ ବୋଲି ଅନୁଭବ କଲେ । "ତତ୍ ସୁଖେ ସୁଖିତ୍ୱମ୍" ପ୍ରେମରାଜ୍ୟର ଏହି ଶାଶ୍ୱତ ବାଣୀ ପ୍ରେମିକା ରାଧାଙ୍କ ଜୀବନରେ ରୂପାୟିତ ହେବାକୁ ଲାଗିଲା । ପୂର୍ଣ୍ଣ ଆତ୍ମ ସମର୍ପଣ ଫଳରେ ପ୍ରେମମୟୀ ରାଧା ଭୟ, ଭ୍ରାନ୍ତି, ମାନ, ଅପମାନ ଓ ନିନ୍ଦାକୁ ଭ୍ରୂକ୍ଷେପ ନକରି ଉଲ୍ଲସିତ ଚିତ୍ତରେ ଉଦାର କଣ୍ଠରେ ଗାଇବାକୁ ଲାଗିଲେ —

"ଶରଣ ଗଲି ପ୍ରମାଣରେ ସଖି
ଶ୍ୟାମବନ୍ଧୁ ଶ୍ରୀଚରଣରେ
ସେ ଯେବେ ଛାଡ଼ିବେ ମୁଁ ତ ନ ଛାଡ଼ିବି
ତା ବିନା କେ ପରିତ୍ରାଣରେ ।"

ପ୍ରେମ ଓ ପ୍ରଣୟର ଏହି ପରିଣତି ଯେତିକି ଚମକପ୍ରଦ ସେତିକି ଅନୁଭୂତି ବ୍ୟଞ୍ଜକ ଓ ଚିନ୍ତାଦ୍ୟୋତକ । ପ୍ରେମ ଉପରି ନରତ୍ୱରେ ଦେବତ୍ୱର ବିକାଶ କରିବାରେ ତାହାର ସହଜ ସୁଲଭ ମନୋଜ୍ଞ ପରିପ୍ରକାଶ ସଦାନନ୍ଦଙ୍କ ଲେଖନୀରେ ଯେପରି ସମ୍ଭବ ହୋଇଛି ତାହା ତାଙ୍କର ସମଗ୍ର ସୃଷ୍ଟି ସମ୍ଭାରର ଗୋଟିଏ ଅନନ୍ୟ ବିଶେଷତ୍ୱ ଭାବରେ ଏକାନ୍ତ ପ୍ରଣିଧାନ ଯୋଗ୍ୟ ।

ଦାର୍ଶନିକ ଭକ୍ତି ସିଦ୍ଧାନ୍ତର ସରସ ରୂପାୟନରେ ବୋଧହୁଏ ସଦାନନ୍ଦ କବିସୂର୍ଯ୍ୟ ବ୍ରହ୍ମା ଜଣେ ଅପ୍ରତିଦ୍ୱନ୍ଦୀ ଓଡ଼ିଆ ବୈଷ୍ଣବ କବି । ଭକ୍ତି ତତ୍ତ୍ୱର ସାଙ୍ଗୋପାଙ୍ଗ ବିସ୍ତୃତ ବିଶ୍ଳେଷଣ ସଦାନନ୍ଦଙ୍କ ପ୍ରାୟ ସମସ୍ତ କାବ୍ୟରେ ପ୍ରଚୁର ମାତ୍ରାରେ ଦେଖିବାକୁ ମିଳେ । ତାହାର ଯଥାର୍ଥ ବିସ୍ତୃତ ଅନ୍ୟ ଗୋଟିଏ ପୂର୍ଣ୍ଣାଙ୍ଗ ଆଲୋଚନାର ଅପେକ୍ଷା ରଖେ ।

## ପ୍ରଣୟଭକ୍ତି

ସପ୍ତଦଶ ଓ ଅଷ୍ଟାଦଶ ଶତାବ୍ଦୀ ଓଡ଼ିଆ ସାହିତ୍ୟର ଗୋଟିଏ ବୈପ୍ଳବିକ ଯୁଗ । ସେତେବେଳେ ପରିମାଣ ଦୃଷ୍ଟିରୁ ଓଡ଼ିଆ ସାହିତ୍ୟ ଯେପରି ସ୍ଫୀତ ହୋଇଥିଲା, ଗୁଣାତ୍ମକ ଚେତନା ଦୃଷ୍ଟିରୁ ମଧ୍ୟ ସେପରି ସମୃଦ୍ଧି ଲାଭ କରିଥିଲା । ତତ୍କାଳୀନ ଅଭିରୁଚି ଅନୁସାରେ ସେ ସମସ୍ତର ସ୍ରଷ୍ଟାଗଣ ଗୋଟାଏ ରୁଚିସମ୍ପନ୍ନ ପାଠକ ଗୋଷ୍ଠୀ ଗଠନ କରିବାରେ ସମର୍ଥ ହୋଇଥିଲେ । ଧନଞ୍ଜୟ, ଉପେନ୍ଦ୍ର, ଦୀନକୃଷ୍ଣ, ଲୋକନାଥ, ସଦାନନ୍ଦ ଓ ଅଭିମନ୍ୟୁ ପ୍ରଭୃତି ସ୍ୱକୀୟ ଚିନ୍ତା ଓ ଚେତନାରେ ଅଟଳ ରହି ନିଜର ପଦ୍ଧତି ସାରସ୍ୱତ ସୃଷ୍ଟି ସାଧନାରେ ଜନଜୀବନକୁ ସମୃଦ୍ଧ କରିଛନ୍ତି । ରଚନାରେ ଶୃଙ୍ଗାର ଓ ଧର୍ମ ଧାରଣାରେ ଅତ୍ୟନ୍ତ ଆନ୍ତରିକତାର ପରିପ୍ରକାଶ ହିଁ ସେ ସାହିତ୍ୟର ଥିଲା ଅନ୍ତଃସ୍ୱର । ଫଳରେ ଏ ଯୁଗର କାବ୍ୟକୃତିରେ ଯଥେଷ୍ଟ ଗତାନୁଗତିକତା ଓ ପରମ୍ପରାପୁଷ୍ଟ ଅତିକଳ୍ପନାର ଅବାରିତ ଧାରା ଦେଖିବାକୁ ମିଳେ । ନାନାବିଧ ରାଗ ରାଗିଣୀରେ କାବ୍ୟଶ୍ରୀ ସମ୍ପାଦନ, ବହୁ ବୈଚିତ୍ର୍ୟ ପୂର୍ଣ୍ଣ ଶବ୍ଦାଳଙ୍କାର ଓ ଅର୍ଥାଳଙ୍କାରର ପରିକଳ୍ପନାରେ କାବ୍ୟ ଶୋଭା ବର୍ଦ୍ଧନ, କଷ୍ଟକଳ୍ପନା ଓ ଅତିକଳ୍ପନା ବିଳାସିତା, ବର୍ଣ୍ଣନ । ବାହୁଲ୍ୟ, ବହୁ ଶାସ୍ତ୍ର ସମ୍ବନ୍ଧିତ ପାଣ୍ଡିତ୍ୟ ପ୍ରକାଶ, ବର୍ଣ୍ଣନାରେ ଅତ୍ୟନ୍ତ ଶୃଙ୍ଗାରିକତା, କାବ୍ୟର ବିଧିବିଧାନ ଅନୁସରଣ ପ୍ରବଣତା, ଶବ୍ଦ ପ୍ରୟୋଗରେ ଅସାଧାରଣ ଦକ୍ଷତା, ଧର୍ମତତ୍ତ୍ୱ ପ୍ରଚାର ଇତ୍ୟାଦି ଉପରେ କବିମାନେ ଯଥେଷ୍ଟ ଗୁରୁତ୍ୱ ଆରୋପ କରୁଥିଲେ । ବୈଷ୍ଣବ ସାହିତ୍ୟରେ ଧର୍ମସମ୍ମତ ଶୃଙ୍ଗାରଚର୍ଚ୍ଚା, ଇହଲୋକ ଅପେକ୍ଷା ପରଲୋକର ଆକର୍ଷଣ, ପୁରୁଷାର୍ଥ ଅପେକ୍ଷା କୃଷ୍ଣଭକ୍ତି ପ୍ରତି ଶ୍ରଦ୍ଧା ସୃଷ୍ଟି କରିବା ସାହିତ୍ୟର ଆଭିମୁଖ୍ୟ ହୋଇଯାଇଥିଲା । ଆଖି ଆଗରେ ଥିବା ସମସ୍ୟା ସଙ୍କୁଳ ସମାଜର ଐହିକ ଉନ୍ନତି ପ୍ରତି ସେମାନେ ସଂପୂର୍ଣ୍ଣ ନିଃସ୍ପୃହ ଥିଲେ । ଭଗବଦ୍ ଭକ୍ତି ହିଁ ଜୀବନର ଇହକାଳ ଓ ପରକାଳ ପାଇଁ ଏକମାତ୍ର ଧ୍ୟେୟବସ୍ତୁ ଥିଲା । ପ୍ରତିଷ୍ଠିତ ସଂସ୍କୃତ ଓ ଓଡ଼ିଆ କବିମାନଙ୍କର କଳ୍ପନାବିଳାସିତା ତଥା ଚୈତନ୍ୟପନ୍ଥୀ ବ୍ରଜବାସୀ ଗୋସ୍ୱାମୀମାନଙ୍କର ଅଲୌକିକ ଭକ୍ତି ଭାବନା ସଦାନନ୍ଦଙ୍କ କବିଜୀବନକୁ ଯଥେଷ୍ଟ ଭାବରେ ପ୍ରଭାବିତ କରିଥିବାରୁ ସେ ସେହି ଧାରାର ତ୍ରିଂଶାଧିକ କାବ୍ୟ ଲେଖିଯାଇଛନ୍ତି । ଏହିସବୁ ମଧ୍ୟଯୁଗୀୟ ସାହିତ୍ୟର ଆଭିମୁଖ୍ୟ ସଦାନନ୍ଦଙ୍କ ରଚନାବଳୀରେ ସର୍ବତ୍ର ଦେଖିବାକୁ ମିଳେ । ଆଗରୁ କୁହାଯାଇଛି ଯେ ସଦାନନ୍ଦ ଦୁଇଟି ସ୍ୱାଧୀନ ଚେତନାପୁଷ୍ଟ କାଳ୍ପନିକ କାବ୍ୟ ଲେଖିବା ପରେ ନିଜର କାବ୍ୟିକ ଚିନ୍ତାରେ ପରିବର୍ତ୍ତନ କରି ସଂପୂର୍ଣ୍ଣ ଭାବରେ ବୈଷ୍ଣବ ଭକ୍ତ କବି ପାଲଟି ଥିଲେ । ଏଣୁ

ପରବର୍ତ୍ତୀ କାବ୍ୟମାନଙ୍କରେ ରୀତିଧର୍ମୀ ପାଣ୍ଡିତ୍ୟ ପ୍ରକର୍ଷ ପ୍ରଦର୍ଶନ ଅପେକ୍ଷା, ସେ ସରଳ ସ୍ୱରରେ ରାଧାକୃଷ୍ଣ ଯୁଗଳ ଲୀଳାତତ୍ତ୍ୱ ବର୍ଣ୍ଣନା କରି ପାଠକ ମାନଙ୍କୁ ନିଜର କାବ୍ୟ ସଂସାର ପ୍ରତି ଅନୁରାଗୀ କରାଇବାକୁ ଚେଷ୍ଟା କରିଛନ୍ତି । ଫଳରେ ବିଭିନ୍ନ କାବ୍ୟରେ ବିମଳ ଜବନ୍ଦର ଧାରା ପ୍ରବାହିତ ହୋଇଛି । ଚିନ୍ତାଧାରା ଅନୁଭୂତିବ୍ୟଞ୍ଜକ ଓ ଦୃଷ୍ଟିଭଙ୍ଗୀ ଶାଶ୍ୱତ ପ୍ରେମତତ୍ତ୍ୱରେ ଅନୁରଞ୍ଜିତ ହୋଇଥିବାରୁ ରାଧାକୃଷ୍ଣ ପ୍ରେମାଖ୍ୟାନମୂଳକ ସାଧାରଣ କଥାଟି ବିଭିନ୍ନ କାବ୍ୟରେ ତାହାର ବିବିଧ ବୈଚିତ୍ର୍ୟ ପ୍ରକାଶ କରିଛି । ସେଥିରେହିଁ କବିଙ୍କ କୃତିତ୍ୱ ଓ କର୍ମନିଷ୍ଠା ଦେଖିବାର କଥା ଓ ଅନୁସନ୍ଧାନ କରିବାର କଥା ।

ସଦାନନ୍ଦଙ୍କ କାଳିନ୍ଦୀକ କାବ୍ୟ ଦୁଇଟିରେ ଭଞ୍ଜୀୟ କାବ୍ୟରଚନାର ଅନ୍ତଃସ୍ୱରଟି ମଞ୍ଜୁଳ ଭାବରେ ପ୍ରତିଫଳିତ । ବିଷୟବସ୍ତୁ ବିନ୍ୟାସ-କୌଶଳ ଓ ଚରିତ୍ର ଚିତ୍ରଣରେ କୌଣସି ନୂତନତା ନାହିଁ । ନାୟକ ଓ ନାୟିକାମାନଙ୍କର ଜୀବନରେ ପ୍ରେମ ବ୍ୟତୀତ ଆଉ କୌଣସି ସମସ୍ୟା ନାହିଁ । ସାର୍ଥକ ପ୍ରେମିକ ଓ ପ୍ରେମିକାଟିଏ ହେବାପାଇଁ ନାୟକ ଓ ନାୟିକା ମାନଙ୍କର ଅନୁକ୍ଷଣ ଚେଷ୍ଟା ଓ ସାଧନା ସେମାନଙ୍କର ଜୀବନର ଚରମ ଲକ୍ଷ୍ୟ । ସେଥିରେହିଁ ଜୀବନର ପରମ ସାର୍ଥକତା । ଉପେନ୍ଦ୍ର ଭଞ୍ଜ କୃଷ୍ଣଉପାସକ ହୋଇନଥିବାରୁ ଯଦ୍ୟପି ସଦାନନ୍ଦ ତାହାଙ୍କ ପ୍ରତି କଟାକ୍ଷପାତ କରିଛନ୍ତି । ତଥାପି ଉପେନ୍ଦ୍ରଙ୍କୁ ନିତ୍ୟରସ ଅନୁଭବୀ ସୁକବି, ବୋଲି ଘୋଷଣା କରି ତାଙ୍କ ପ୍ରତି ଆନୁଗତ୍ୟ ପ୍ରକାଶ କରିଛନ୍ତି ।

କାଳିନ୍ଦୀକ ପ୍ରେମାଖ୍ୟାନମୂଳକ କାବ୍ୟଦୁଇଟିର କଥାବସ୍ତୁ ଓଡ଼ିଆ ସାହିତ୍ୟର କାବ୍ୟ ପରମ୍ପରାନୁସରଣରେ ପରିକଳ୍ପିତ । ନାୟକ ନାୟିକାଙ୍କ ପୂର୍ବ ଜନ୍ମ ବୃତ୍ତାନ୍ତ, ରାଜପରିବାରରୁ ନାୟକ ନାୟିକା ନିର୍ବାଚନ, ରୂପର ପ୍ରଶଂସା ଶୁଣି ଓ ଚିତ୍ରପଟ ଦେଖି ସେମାନଙ୍କର ପରସ୍ପର ପ୍ରତି ଆକୃଷ୍ଟ ହେବା, ପୂର୍ବରାଗ, ସ୍ୱୟଂବର, ବିରହ ମିଳନର ଦିବ୍ୟ ଆଧିଭୌତିକ ଘଟଣା ମାଧ୍ୟମରେ ନିର୍ବାହ କରିବା ଇତ୍ୟାଦି ଯଥାରୀତି ଏଥିରେ ସମ୍ପାଦିତ । ଭଞ୍ଜୀୟ ରୀତିରେ ନାୟକ ମାନଙ୍କର ଏକାପତ୍ନୀ ବ୍ରତ ନିଷ୍ଠା ପ୍ରଦର୍ଶନମଧ୍ୟ ଏ କାବ୍ୟ ଗୁଡ଼ିକର ଆଭିମୁଖ୍ୟ । କବି ପ୍ରଣୟୀ ପ୍ରଣୟିନୀଙ୍କ ମିଳନୋନ୍ମୁଖ ପ୍ରାଣର ଆବେଗ ଚିତ୍ରଣରେ ବାସ୍ତବ ଅନୁଭୂତିର ଓ ବନ୍ଧ ରୁଦ୍ଧଦ୍ୱାର ଉଦ୍‌ଘାଟନ କରିଛନ୍ତି । ବର୍ଣ୍ଣନା ଗୁଡ଼ିକର ବାସ୍ତବ ଜୀବନ ସହିତ ନିବିଡ଼ ସମ୍ପର୍କ ଥିବାରୁ ପ୍ରଣୟାନୁଭୂତିର ପ୍ରାବଲ୍ୟ ରେ ପ୍ରାଣ ହିଲ୍ଲୋଳିତ ହୁଏ । ଯଦ୍ୟପି ରୀତିଯୁଗୀୟ ଅସ୍ୱାଭାବିକ ତର୍କଣାର ଛନ୍ଦ କଦବା କେଉଁଠି ଦୃଷ୍ଟିଗୋଚର ହୁଏ, ତଥାପି ଏପରି ସ୍ଥଳ ଏ କାବ୍ୟମାନଙ୍କରେ ଏତେ

ନଗଣ୍ୟ ଯେ, ତାହା ପାଠକ ମାନଙ୍କର ରସାସ୍ୱାଦନରେ ବାଧା ସୃଷ୍ଟି କରେ ନାହିଁ । ଉକ୍ତ ରୀତିରେ ତାଙ୍କ ଉଚ୍ଚ ପ୍ରବୃତ୍ତି ସଙ୍ଗୀତଃ ହିଁ ନାହିଁ ।

ଭକ୍ତୀୟ କାବ୍ୟଚେତନା ପରିପ୍ରେକ୍ଷୀ ରେ ବିଚାର କଲେ ଏହାହିଁ ହେଉଛି ସଦାନନ୍ଦଙ୍କ ସର୍ବଶ୍ରେଷ୍ଠ ସଫଳତା । ଉପେନ୍ଦ୍ର ଭଞ୍ଜ ଓ ଅଭିମନ୍ୟୁ ସାମନ୍ତ ସିଂହାର ଙ୍କ ଯେ କୌଣସି ବିରହ ଦଶାର ବର୍ଣ୍ଣନା ସହିତ ସଦାନନ୍ଦଙ୍କ ବିରହାନୁଚିନ୍ତା ତୁଳନାତ୍ମକ ଭାବେ ବିଚାର କଲେ ଜଣାଯିବ ଯେ ଅନ୍ୟମାନଙ୍କର ବିରହବ୍ୟଥା ପାଣ୍ଡିତ୍ୟପୂର୍ଣ୍ଣ ଓ କେତେକ କଷ୍ଟ କଳ୍ପନାର ସମାହାର ହୋଇଥିବା ବେଳେ ସଦାନନ୍ଦଙ୍କ ସେହି ପ୍ରସଙ୍ଗଟି ଶାଶ୍ୱତ ଅନୁଭୂତିର ତୀବ୍ର ବେଦନାରେ ଅନୁରଞ୍ଜିତ ଏ ବ୍ୟଥା ଓ ବେଦନାରେ କବିପ୍ରଉଢ଼ି ପ୍ରସୂତ ଅକଳ୍ପନୀୟ ତାର୍କିକତାର ସମୀକ୍ଷା ବିଳାସ ନାହିଁ, ଅଛି ସର୍ବବ୍ୟାପୀ ପ୍ରଣୟ ଯନ୍ତ୍ରଣାରେ ନିପୀଡିତ ଦେହ, ମନ ଓ ଚୈତନ୍ୟର ନିପୀଡ଼ିତ ଝଙ୍କାର ଅଭିବ୍ୟକ୍ତି । ଏହା କେବଳ କଥାର କଥା ନୁହେଁ, ବାସ୍ତବ ଜୀବନର ଦୁର୍ଲ୍ଲଭ ବ୍ୟଥା । ଯେଉଁ ବ୍ୟଥାର ଅବ୍ୟକ୍ତ ମଧୁର ସ୍ପର୍ଶରେ ମଣିଷ ଜନ୍ମ ସଫଳ ହୁଏ, ଜୀବନ ଧନ୍ୟ ହୁଏ ।

ପ୍ରଣୟ ଚିଠିର ବିଭିନ୍ନ ବିଭାଗ ମଧ୍ୟରୁ ଗୋଟିଏ ହେଉଛି ବହୁ ଆକାଙ୍କ୍ଷିତା ପ୍ରିୟାର ସାନିଧ୍ୟ ପାଇବା ଆଶାରେ ବିରହ ବିଧୁର ପ୍ରିୟ, ସନ୍ତର୍ପିତ ଚିତ୍ତରେ ପ୍ରିୟା ନିକଟକୁ ଚିଠି ଖଣ୍ଡିଏ ଲେଖିଛି । ଚିଠି ଖଣ୍ଡିକ ହସ୍ତଗତ ହେବାପରେ ନାୟିକାର କାର୍ଯ୍ୟକଳାପରେ ଚିରନ୍ତନ ପ୍ରେମାତୁର । ନାରୀର ସ୍ୱାଭାବିକ ପ୍ରତିକ୍ରିୟା ଆତ୍ମପ୍ରକାଶ କରିଛି ।

" ଧରି ତାହା ଗଣ୍ଡେ ମଣ୍ଡି ହସ୍ତ । ଏ କପଟେ ଚୁମ୍ବି ସ୍ନେହଚିତ୍ତେ ॥
ପୁଣି କ୍ଷଣ ମାତ୍ର ରଖି ଉରେ । ଭାବେ ଫିଟାଇଲେ ଧୀରେ ଧୀରେ ॥
ଆଗେ ଅକ୍ଷରେ ଦେଇ ନୟନ । ବୋଲେ ସର୍ବ ଗୁଣେ ଆହା ସମାନ ॥
ଏତେ ବୋଲି ନ ଶୁଖଇ ପଢେ । ଧାର ଧାର ନେତ୍ରୁ ଅଶ୍ରୁ ଗଡେ ॥
ଶେଷ କରି ପୁଣି ଲେଉଟାଇ । ଆଦ୍ୟ ପ୍ରାନ୍ତେ ନୟନ ଫେରାଇ ॥
ମୁଦ୍ର ରଖି ଧନ ପ୍ରାପ୍ତ କରି । ପୁଣି ଫିଟାଇ ଦେଖନ୍ତି ଗୋରୀ ॥

ଚିଠି ଖଣ୍ଡିକ ପଢ଼ିବାରେ ନାୟିକାର ଅନୁରାଗ ଯେପରି ବ୍ୟକ୍ତ ହୋଇଛି, ଚିଠି ଲେଖାରେ ବିରହ ବିଧୁର ନାୟକର ମାନସିକ ଉତ୍ତୋରଧିକ ହୃଦୟସ୍ପର୍ଶୀ ହୋଇପାରିଛି ।

" ପ୍ରୀତି ବତ୍ସଳା ଶରଣ । ମୋହା ଗ୍ରାମ୍ୟ ଲକ୍ଷଣ । ଚହାନ୍ତି ଏ ବନମାଳୀ ଦାସର

× × ×

ବନ୍ଧୁରେ ମୁଁ ଯେଉଁଦିନୁ, ଅଞ୍ଚଳରୁ ସୂତଧରୁ, ବନ୍ଧ ଗଲି କଟାକ୍ଷ ବଶୀକ
ବନ୍ଧୁରେ ହେଲନ୍ତି ଲକ୍ଷ୍ୟ, ହେଲକ ମୋହରବକ୍ଷ । ସେ ଦିନ ହେଲାଦା
ଲକ୍ଷ ଲକ୍ଷରେ ଚନ୍ଦ୍ରବଦନା ।
ବନ୍ଧୁରେ ଯେତେ ନିରାଶ କଲେ ତୁ ମୋହର ମାନସ
ନିବର୍ତ୍ତି ନୁହଇ ବଢ଼େ ଆଶ
ବନ୍ଧୁରେ ତୋର ନିଗ୍ରହ ମୁଁ ମଣଇ ଅନୁଗ୍ରହ
ତ୍ରିଭୁ ନୋହୁ ମୁଁ ହେଲିଣି ଦାସ, ରେ ଚନ୍ଦ୍ରବଦନା ।
ଛଟ ପଟ ରଜନୀ ଦିବସେ ।
ମାତ୍ର ନଚ୍ଛନ୍ତୁ ଦେହ ପ୍ରାପ୍ତି ଲୋଭ କଣେରେ ।

× × ×

ସୁଖୀ ନଜାଣଇ ଦୁଃଖୀ ବେଦନା
ସେ ପ୍ରକାରେ ନୋହିବୁଟି ନବୀନା
ସାଧାରଣ ନୁହେ ବିରହ କଷଣ, ମୋହର ମନ ସାକ୍ଷୀ ସିନାରେ, ସୁନ୍ଦରୀ ।

ଏହି ବିରହ ଦୀପ୍ତ ଅନୁରାଗ ଯେତେବେଳେ ମିଳନର ଉଜ୍ଜ୍ୱଳ ସମ୍ଭାବନାରେ ଅନୁରଞ୍ଜିତ ହୋଇ ଉଠିଛି । ସେତେବେଳେ ପ୍ରେମୀ ପ୍ରେମିକାଙ୍କ ମନରେ ଭାବୀ ମିଳନର ସୁଖଦ କଳ୍ପନା ଡାଳ ଶାଖା ପ୍ରଶାଖା ମେଲି ଯେତେ ସେ ସ୍ୱପ୍ନିଳ କଳ୍ପଲୋକ ସୃଷ୍ଟି କରିଛନ୍ତି, ତାହାର ଇୟତ୍ତା ନାହିଁ । ସେହି ସମ୍ଭାବନାମୟ ଜୀବନସ୍ୱପ୍ନ ଉପରେ ପ୍ରାଣବନ୍ତ ହୋଇ ପାରିଛି, ତାହା ଦେଖିବାର କଥା, ଅନୁଭବ କରିବାର କଥା—

" ଯେବେ ଜଳଦ ବରଣ 'ପଶିଲ ଶରଣ'
ଭୂଜ କର ମାନ ଦେବ କହି

ଚେତେବେଳକୁ ନାସିକା ଫୁଲାଇ ରସିକା
ମନ୍ଦ ହସି ଗୁହି ସିବ କାହିଁ ।
ଏହା ଶୁଣି ସେ ହସିବ ନିଲଟେ ଖୋସିବ
ଭୋଳା ଲଜ ଧୈର୍ଯ୍ୟ ସ୍ନେହରୁଳା ।
ଯତ୍ନ ଟାଣିଣି ବଳାଇ, ପ୍ରେମ ଉଚ୍ଛୁଳାଇ
ପଡ଼ିବ ଫସ ମୋ ହୃଦେ ଢଳି'' ।

ଲଳିତଲୋଚନା କାବ୍ୟର ଉକ୍ତ ଅଂଶ ଛନ୍ଦରେ ଏ ମୋହନ କଳ୍ପଲତାର ହସ୍ତବିଂଶ ଛାନ୍ଦରେ ଆସନ୍ନ ସଂଯୋଗ କଳ୍ପନାବସ୍ଥା ଅତ୍ୟଧିକ ଔତ୍ସୁକ୍ୟ ପ୍ରପୀଡ଼ିତ ନାୟକ ମନର ସୂକ୍ଷ୍ମ ବିଶ୍ଳେଷଣ କରାଯାଇଛି । ଏହି ମାନସିକ ଆଲେଖ୍ୟ ଗୁଡ଼ିକ ସଦାନନ୍ଦଙ୍କ ନାବଳନାନ କବିତାର ଅମ୍ଳାନ ଗୌରବରେ ଚିର ଦେଦୀପ୍ୟମାନ ହୋଇ ରହିଅଛନ୍ତି ।

ନାୟିକା ସହିତ ପ୍ରଥମ ସାକ୍ଷାତକାରରେ ଅବ୍ୟବହିତ ପୂର୍ବରୁ ନାୟିକାର ସ୍ୱହସ୍ତ ଲିଖିତ ପତ୍ର ଖଣ୍ଡିଏ ପାଇ ନାୟକ ଭାବଛି—

ଜନ୍ମ ଅବଧି କାହା ନେହ ପ୍ରଦାନ
ବିଧାରେ ହୋଇଲି ଶବଦ ଜ୍ଞାନ ।
ରଙ୍କ ହରାଇଲା ଧନ କି ପାଇ
କରେଣ ନନ୍ଦନ ଯେସନ ହୋଇ
(ମୋ . କ . )

ମିଳନର ବ୍ୟବଧାନ ଅତରେ ଅନ୍ତର୍ହିତ ହୁଅନ୍ତେ, ନାୟକର ପ୍ରଥମ ଦର୍ଶନରେ ନାୟିକାର ଶୃଙ୍ଗାରୋଦ୍ଦୀପକ ଅନୁଭାବ ଚିତ୍ରଣରେ କୌଣସି କୃତ୍ରିମତା ନାହିଁ—

ସ୍ୱୟଂ ଦୂତୀ ବଡ଼ ଚେଷ୍ଟା ହୋଇଲା ପ୍ରକାଶ
ସ୍ୱଚ୍ଛେ ନ ରହିଲା ପ୍ରାୟେ ମୁଖେ ମନ୍ଦ ହାସ ଯେ ।
ହାଇ ମାଣ ଅଳସ ମୋଡ଼ି ହେଲା ଆସ୍ୱସରେ
ଭୁଜ ତୋଳି ଅଙ୍ଗୁଷ୍ଠି ଫୁଟାଇଲା ସଖୀରେ ଯେ ।

କଣ୍ଠୁ କଣ୍ଠୁ ଛଳେ ଦେହେ ରୋମାଞ୍ଚ ବହିଲା
ପଦ ମୂର୍ଚ୍ଛାଙ୍କ ସୃଷ୍ଟିରେ ଧରାକୁ ଗାର ଦେଲା ସେ ।
(ମୋ, କ. ୨୬ଶ ଛାନ୍ଦ)

ଦୁହେଁ ଦୁହିଁଙ୍କ ପ୍ରତି ଦୁର୍ବାର ଆକର୍ଷଣରେ ମୁହ୍ୟମାନ । ଦେହ ଓ ମନ ଅବଶ । ତଥାପି ସେମାନେ-ଯେ ମହାକୁଳ ପ୍ରସୂତ ଏ ବିଷୟରେ ସଚେତନ ରହି ଔଚିତ୍ୟାନୌଚିତ୍ୟ ବିଚାରରେ ଲୌକିକ ପରମ୍ପରାକୁ ଲଙ୍ଘନ କରିପାରିନାହାନ୍ତି । କିନ୍ତୁ ଚିତ୍ତ ଶୃଙ୍ଖଳାର ପ୍ରାବଲ୍ୟରେ କ୍ଷଣମାନ ଦୁଇଟି ତରୁଣ ତରୁଣୀଙ୍କ ମନୋଭାବକୁ ଏକ ଅବ୍ୟକ୍ତ ଆନନ୍ଦ ମିଶ୍ରିତ ବେଦନାରେ ଉବାଇଚୂବାଇ ଦେଉଥିଲା ।

ମହାକୁଳ ପ୍ରସୂତ ଲୌକିକ ପରମ୍ପରା
ଲଙ୍ଘନ ନ ଆଲୋଚିତ ଏଣେ ହେଉ ଧରା ଯେ
ଜକ ଯୌବନ ବେଦନା ଘେନି ତ୍ରିବେଣୀ ହୋଇ
ନୃପ ଦୁହିତା ମନ ଦେଲା ଉବାଇ ଚୂବାଇ ଯେ ।

ଘଟଣାର ଚମତ୍କାରଣରେ ପ୍ରଣୟୀ ଓ ପ୍ରଣୟିନୀଙ୍କ ମିଳନ ପର୍ବର ଶୁଭ ମୁହୂର୍ତ୍ତ ଆସି ପହଞ୍ଚି ଯାଇଛି । ଦୁଇଟି ତୃଷିତପ୍ରାଣର ମହୋତ୍ସବମୟ ମୁହୂର୍ତ୍ତ ଗୁଡ଼ିକୁ ଢଳଢଳ କରି ଉପଭୋଗ କରିବା ପାଇଁ ସେମାନଙ୍କର ଉତ୍କଣ୍ଠିତ ଆବେଗ କମ୍ପିତ ସମ୍ଭୋଗ ପ୍ରବଣତାକୁ ରୂପ ଦେଇ କବି ଗାଇଛନ୍ତି—

ବାଳୀ ହସ୍ତାଙ୍ଗରେ ପୁଲକ ଜାତ
ନାସାରେ ପ୍ରସ୍ଫୁଟ ନବେଣୀ ମୁସ୍ତ
ନିତମ୍ବ ଭାର ନବୀନ କଣୋଷ୍ଠ
କରେ କାନ୍ତ କର ଆଗୁରେ ଧରି
ଦ୍ରୁହାସେ ଶିର କମ୍ପାଇ ଯେ
ଅଚଳ ମାରତ ଚରଣେ ପ୍ରଖର, ବସନଇ ଦେଲା ଫେଇ ଯେ
(ମୋ. କ, ୨୬ଶ ଛାନ୍ଦ)

× × ×

ମାଂସଳ ନିତମ୍ବ ମୃଦୁ ବିସ୍ତାର
ମହା ମନୋହର ମଦନ ପୁର

ନୃପ କୁମର ତହିଁ କର ଦେଲ
ଈଷି ମନ୍ଦ ପ୍ରାଣ ନଖ ବୋଇଲ ସେ
ଚମକ ଚନ୍ଦ୍ରମା ମୁହିଁ ସେ
ଗାଢେ ଭିଡ଼ି କାନ୍ତ ଅଧର ମଧୁକୁ ପାନକଲା ତା ନ ମନ୍ଦ ସେ ।
(ମୋ . କ . ୪୧/୭)

ଏହିପରି ସମ୍ଭୋଗ ଶୃଙ୍ଗାର ପୂର୍ଣ୍ଣ ବିବିଧ ବର୍ଣ୍ଣାଢ୍ୟ ଆଲେଖ୍ୟର ପ୍ରାଚୁର୍ଯ୍ୟ ଲଳିତ ଲୋଚନାର ଚତୁର୍ଥ, ସପ୍ତତ୍ରିଂଶ ଛାନ୍ଦ ଓ ମୋହନ କଳ୍ପଲତାର ଦ୍ୱାଦଶ, ଏକଚତ୍ୱାରିଂଶ ଓ ଦୁଇ ଚତ୍ୱାରିଂଶ ଛାନ୍ଦ ମାନଙ୍କରେ ଦେଖିବାକୁ ମିଳେ । ପ୍ରେମ ବ୍ୟାପାରର ଏହି ବିବିଧ ବିସ୍ତାରରେ କୌଣସି ଅଯଥାର୍ଥ ଆକାଶୀକଳ୍ପନା ନାହିଁ କିମ୍ବା ପାଣ୍ଡିତ୍ୟ ପୂର୍ଣ୍ଣ କବିତ୍ୱ ପ୍ରଦର୍ଶନ ପାଇଁ କୌଣସି ଅପଚେଷ୍ଟା ନାହିଁ । ବର୍ଣ୍ଣନା ଗୁଡ଼ିକ ସ୍ୱବାସ୍ତ୍ରୀକରଣରେ ନିବିଡ଼ ଅନୁଭୂତି ବ୍ୟଞ୍ଜକ । କାଳୋତ୍ତୀର୍ଣ୍ଣ ସାର୍ବଜନୀନ ହୃଦ୍‌ଗତ ଭାବସମ୍ଭାରରେ ମହିମାନ୍ୱିତ ଏହି କବିତା ମାନଙ୍କରେ ଅନୁଭୂତିର ଯେଉଁ ଗଭୀର ବ୍ୟଞ୍ଜନା ନିହିତ, ତାହା କଷ୍ଟକଳ୍ପିତ ଶବ୍ଦଜାଲ ମଧ୍ୟରେ ଆବଦ୍ଧ ହୋଇ ନଥିବାରୁ କବିକଳ୍ପିତ 'ନାଗରୀ ନାରୀପଣ' ତାହା ପାଠକ ମାନଙ୍କୁ ବିମଳ ଆନନ୍ଦ ଦେବାରେ ଚରମ ସଫଳତା ଲାଭ କରିଛି ।

କବିଙ୍କ ମତରେ "ସମ୍ଭୋଗ ପରିପୁଷ୍ଟବତ ପରମ ମଧୁର" ଦାମ୍ପତ୍ୟ ପ୍ରେମହିଁ ମାନବ ଜୀବନର ପରମ ସାଧନା ଓ ଚରମ ଲକ୍ଷ୍ୟ ।

ନାରୀ ବିନା ପୁରୁଷ ଶରଣ
ତିନି ପୁରେ ତିନି କାଳେ ନାହିଁଏ ପ୍ରମାଣ ହେ ।
ନାରୀ ତ ସାର ସୃଜନ ତହିଁ ମୁଦା ହୋଇଥିବ
ଗୁଣି ହୋଇଥିବ ସେ ସୁନ୍ଦରୀ
ଜାଣିଥିବ ଭଙ୍ଗୀରସ ବୃଦ୍ଧି ଇଙ୍ଗିତ ସ୍ୱାଃ
ଗୁହୁଁଥିବ ଗ୍ରୀବା ବନ୍ଧ ଜାଣିଥିବ, ପ୍ରାଣ ମିତ୍ର
ଏ ରସ ନକର ନେଣ ପାନ
ଅମୃତ ପିଅନ୍ତି ଯେତ୍ତୁ, ଧିକ ସେ ପିଶୁନ ହେ
(ସୁ . ର . କ . ୫୭/୧୮-୧୯)

× × ×

ନାରୀ ହୋଇଥିବ ନବବୟସୀ ମନ୍ମଥେ
କରୁଥିବ ତା ଅଧର ପାନ, ଭଡ଼ ଭୃଙ୍ଗେ
ଭଙ୍ଗୀରେ ସେ ଖସୁଥିବ ଛୁଡ଼ ନାହିଁ ନାହିଁ
କୋଟି ବ୍ରହ୍ମାପଦ ତେତେବେଳେ ମମ କାହିଁ ହେ
( ମୋ . କ . )

× × ×

ନାରୀ ଅଙ୍ଗ ସଙ୍ଗ ବିନା ଯେ କରେ ଶୟନ
ତାକୁ କି ମନୁଷ୍ୟ କରି ତୁମ୍ଭେ ମନେ ଘେନ ହେ ॥
ନେତ୍ର ବନ୍ଧ ବାଳା ବିବସନ ଯେ ନ ଦେଖେ ।
ଅନ୍ଧ ବୋଲି ତାହାକୁ ଶୃଙ୍ଗାର ଶାସ୍ତ୍ରେ ଲେଖେ ॥
ରମଣୀରୁ ବଡ଼ ଦ୍ରବ୍ୟ ସଂସାରେ କାହିଁ ଛି ।
ବ୍ରହ୍ମାଦି ଦେବଙ୍କର ଯହିଁରେ ଲୋଭ ଅଛି ॥
ପ୍ରେମତ ସଂସାର ସାର ବୋଲନ୍ତି ସଜ୍ଜନ ।
ହେ ପୁଣି ନାଗରୀ ନାରୀ ସଙ୍ଗେ ଟି ପ୍ରଧାନ ହେ ॥
ଏ ସ୍ନେହ ସମୁଦ୍ରରେ ବୁଡ଼ିବା ଜନଙ୍କର ।
ଅନ୍ୟ ଦୁଃଖ ସୂର୍ଯ୍ୟତାପ କି କରେ ତା ଛାର ହେ ॥
( ପ୍ରେ କ, ୧୨ଶ ଛାନ୍ଦ )

ଏଠାରେ ସ୍ମରଣ କରିବାର କଥା ଯେ, ଭାଗବତ ଦ୍ୱିତୀୟ ସ୍କନ୍ଧ ତୃତୀୟ ଅଧ୍ୟାୟରେ ଯେଉଁ ଭଙ୍ଗୀରେ ହରି ଉପାସନାକୁ ମନୀଷୀର ପରମ ପୁରୁଷାର୍ଥ ବୋଲି ବର୍ଣ୍ଣନା କରା ଯାଇଥିଲା, ଉପେନ୍ଦ୍ର ଭଞ୍ଜ ଚତୁରତାର ସହ ସେହି ଭଙ୍ଗୀ ପ୍ରୟୋଗ କରି ନାରୀ ସମ୍ଭୋଗକୁ ମଣିଷ ଜୀବନର ଚରମ ଲକ୍ଷ୍ୟ ବୋଲି ପ୍ରତିପାଦନ କରି-ଛନ୍ତି । ସଦାନନ୍ଦ ଏ କ୍ଷେତ୍ରରେ ଭଞ୍ଜ କବିଙ୍କୁ ଅନୁକରଣ କରିଥିଲେ ମଧ୍ୟ ସ୍ୱୀୟ କବିତାରେ ଯଥେଷ୍ଟ ସ୍ୱାତନ୍ତ୍ର୍ୟ ଫୁଟାଇଛନ୍ତି—

ଲୋଚନ ଯୁଗ ଥାଉଁ ମୁଖେ
ଯେ ହରି ମୂରତି ନ ଦେଖେ

ମୟୂର ପୁଚ୍ଛ ବୋଲି ଛାରେ
ହେ ଅନ୍ଧ ସଂସାର ସାଗରେ
( ଭାଗବତ )

× × ×

ଯେଉଁ ଆଖି ଦେଖି ନାହିଁ ବାଳା ବଦନ
ଅଖିରେ ନ ଲେଖି ଶିଖି ଚନ୍ଦ୍ରିକା ସମାନ ।
ଯେଉଁ ଦେହ ଲଗିନାହିଁ ରସବନ୍ତୀ ଦେହୀ
ଅଗମ୍ୟ ବନରେ ଶୁଷ୍କ ଦାରୁ ସରି ସେହି ।
ଉପେନ୍ଦ୍ର ଭଞ୍ଜ ରସଲେଖା ୮ମ ଛାନ୍ଦ

ଏ ନାରୀ ଅଙ୍ଗ ସଙ୍ଗ ଜନିତ ସୁଖେଚ୍ଛା କବିଙ୍କ ଉତ୍ତର ଜୀବନରେ ଆଉ ଧ୍ୱେୟ ହୋଇ ରହିନାହିଁ । ଜୀବନର ଧାରା ବଦଳି ଯାଇଛି, ତା ସହିତ ଜୀବନର ଦର୍ଶନ ମଧ୍ୟ ସେ ପ୍ରାକୃତ ନାରୀର ଅଙ୍ଗ ସଙ୍ଗ କାମନା ନ କରି ଅପ୍ରାକୃତ ପ୍ରେମମୂର୍ତ୍ତି ରାଧାକୃଷ୍ଣଙ୍କ ଅଙ୍ଗ ସଙ୍ଗ ଜନିତ ଲୀଳା କେବଳ ଧ୍ୟାନ ସ୍ତିମିତ ନୟନରେ ଦେଖି-ବାକୁ ଚାହାନ୍ତି । ପ୍ରେମର ଦେହ ସମ୍ପର୍କ ତୁଟାଇ, ମନୋମୟ ରାଜ୍ୟରେ ବ୍ରଜଲୀଳା ରସର ଉଦ୍‌ବୋନ୍ମାଦରେ ସେ ହବଧା ଉନ୍ମତ୍ତ । ବର୍ତ୍ତମାନ କବିଙ୍କ ମତରେ ପ୍ରେମର ଏ ସ୍ୱଭାବ ବ୍ରହ୍ମାଣ୍ଡରେ ଦୁର୍ଲ୍ଲଭ

ପ୍ରେମ ସାର ପୂର୍ଣ୍ଣରାଗ ସଯୋଗ ସନ୍ଧିରେ
ନାହିଁ ନାହିଁ ନାହିଁ ଏ ସ୍ୱଭାବ ବ୍ରହ୍ମାଣ୍ଡରେ
ଯେଉଁ ପ୍ରେମେ କୃଷ୍ଣ ବୋଲେ ଶୁଝି ନ ପାରିଲି
ସେ ଭାବରେ ଆଜଠାରୁ ବଞ୍ଚିତ ହୋଇଲି
( ଜ , ମା . ୩ୟ ଛାନ୍ଦ )

ସଦାନନ୍ଦ ରାଧାକୃଷ୍ଣ ଲୀଳା ବର୍ଣ୍ଣନାକୁ ମୁଖ୍ୟ ସ୍ଥାନ ଦେଇଥିବାରୁ ତାଙ୍କର କାବ୍ୟମାନଙ୍କରେ ନାୟକ ନାୟିକାଙ୍କ ଯୌବନ ସୁଲଭ କାର୍ଯ୍ୟକଳାପର ଭୂୟୋବିକାଶ ସାଧନ କରି ଶୃଙ୍ଗାର ରସର ବନ୍ୟା ଛୁଟାଇଛନ୍ତି । ରାଧାକୃଷ୍ଣଙ୍କ ମିଳନ ଓ ଯୁଗଳ ଲୀଳା କୀର୍ତ୍ତନ ମାଧ୍ୟମରେ ଏହାର ପ୍ରସାର ଓ ପ୍ରାଚୁର୍ଯ୍ୟ ସର୍ବତ୍ର ପରିଲକ୍ଷିତ ହୁଏ । ଚୈତନ୍ୟପନ୍ଥୀ ବୈଷ୍ଣବମାନେ କିନ୍ତୁ ଏହାକୁ ଉଜ୍ଜ୍ୱଳ ବା ମଧୁର ରସ ଭାବରେ ନାମିତ କରି ଅପାର୍ଥିବ ଶୃଙ୍ଗାର ର ବ୍ୟାପକ ଚର୍ଚ୍ଚା କରି-ଥିଲେ । ଏହାକୁ ଉଜ୍ଜ୍ୱଳ ରସ ବୋଲି ନାମିତ କଲେ ମଧ୍ୟ ସମ୍ଭୋଗ ଶୃଙ୍ଗାର

ବିପ୍ରଲମ୍ଭ ଶୃଙ୍ଗାରର ସମସ୍ତ ବିଭାଗ। ଅନୁଭାବ ଓ ସଞ୍ଚାରୀଭାବ ଗୁଡ଼ିକ ଏହି ରାଧାକୃଷ୍ଣ ଲୀଳା ବର୍ଣ୍ଣନାରେ ଯଥେଷ୍ଟ ମାତ୍ରାରେ ପ୍ରୟୋଗ କରାଯାଇଛି। ବୈଷ୍ଣବମାନେ ପରକୀୟା ପ୍ରୀତିକୁ ପ୍ରମୁଖ ସ୍ଥାନ ଦେଇଛନ୍ତି। ପରକୀୟା ପ୍ରେମରେ ବିରହର ମହତ୍ତ୍ୱ ଓ ପ୍ରେମୋତ୍କର୍ଷ ଅବିସମ୍ବାଦିତ। ନିମ୍ବାର୍କ ସମ୍ପ୍ରଦାୟରେ ରାଧାକୃଷ୍ଣଙ୍କ ମିଳନ ଉପରେ ଗୁରୁତ୍ୱ ଆରୋପିତ ହୋଇଥିବା ବେଳେ ବଲ୍ଲଭ ସମ୍ପ୍ରଦାୟରେ ଗୋପୀ ମାନଙ୍କର ବିରହାବସ୍ଥାକୁ ପ୍ରେମର ଚରମୋତ୍କର୍ଷ ଅବସ୍ଥା ବୋଲି ସ୍ୱୀକାର କରାଯାଇଛି।

କବିଙ୍କ ଜୀବନର ଆଭିମୁଖ୍ୟ ବଦଳିଥିଲେ ମଧ୍ୟ ଶୃଙ୍ଗାରଧର୍ମୀ କବିତାର ଆଭିମୁଖ୍ୟ ବଦଳି ନାହିଁ। ସେ କେବଳ ପୂର୍ବର ପ୍ରାକୃତ ପ୍ରେମକୁ ଅପ୍ରାକୃତ ବୋଲି କହିଛନ୍ତି। ଲୌକିକ ନାୟକ ନାୟିକା ସ୍ଥାନରେ ରାଧାକୃଷ୍ଣ ଓ ଚନ୍ଦ୍ରାବଳୀ କୃଷ୍ଣଙ୍କୁ ଗ୍ରହଣ କରିଛନ୍ତି। ସ୍ୱକୀୟା ପ୍ରେମ ପରିବର୍ତ୍ତେ ପରକୀୟା ପ୍ରେମର ଏକନିଷ୍ଠ ସାଧକ ପାଲଟିଛନ୍ତି। କିନ୍ତୁ ପ୍ରେମ ବର୍ଣ୍ଣନାରେ ବିଶେଷ କିଛି ପରିବର୍ତ୍ତନ ଘଟିନି। ଆଳଙ୍କାରିକ କାବ୍ୟର ଶୃଙ୍ଗାର ରସକୁ କେବଳ ମଧୁର ବା ଉଜ୍ଜ୍ୱଳ ରସ ଭାବରେ କୃଷ୍ଣାଶ୍ରୟୀ କାବ୍ୟରେ ବର୍ଣ୍ଣନା କରାଯାଇଛି। ନାମରେ ପରିବର୍ତ୍ତନ ଘଟିଛି କିନ୍ତୁ ସୃଷ୍ଟିଶୀଳ ଚିନ୍ତା ଓ ଚେତନାରେ ବିଶେଷ କିଛି ପାର୍ଥକ୍ୟ ଥିବା ପରି ମନେ ହେଉନାହିଁ। ଲଳିତଲୋଚନା ଓ ମୋହନଲତାର ସମ୍ଭୋଗ ବର୍ଣ୍ଣନା ପରି ଚନ୍ଦ୍ରାବଳୀ ଓ ରାଧା ସମ୍ଭୋଗ ବର୍ଣ୍ଣନାରେ ମଧ୍ୟ ସେହି ନୀବୀ ମୋକ୍ଷଣ, ଚୁମ୍ବନ, ଦନ୍ତକ୍ଷତ, ନଖକ୍ଷତ, ଶୀତ୍କାର, ହୁଙ୍କାର ପ୍ରଭୃତିର ଯଥାଯଥ ଭାବେ ବିନିଯୋଗ ହୋଇଛି। ଏହରୁ ସତ୍ତ୍ୱେ କବି କୃଷ୍ଣଲୀଳାହିଁ ଗାନ କରିବା ପାଇଁ କବିକୁଳକୁ ଆହ୍ୱାନ ଦେଇଛନ୍ତି।

ଶ୍ରୀକୃଷ୍ଣର ଗୁଣ ହେ କୀର୍ତ୍ତନ ନ କରେ
ଆଉ ଯେତେ କରୁ ବ୍ୟର୍ଥ ହୁଏ ହେ ଶ୍ରମରେ
( ତତ୍ତ୍ୱ ତରଙ୍ଗିଣୀ )

ବ୍ରଜଲୀଳାତ୍ମକ ଯୁଗଳ ରସାମୃତ ଲହରୀ ଷୋଡ଼ଶ ଛାନ୍ଦର ବାର ପଦଠାରୁ ଅଣଷଠି ପଦ ପର୍ଯ୍ୟନ୍ତ, ପୁଣି ଚଉବନ ଛାନ୍ଦର ସତାଇଶି ପଦଠାରୁ ତିରିଶି ପଦ ପର୍ଯ୍ୟନ୍ତ, ପ୍ରେମତରଙ୍ଗିଣୀର ୨୦/୫-୧୨ ପଦ ଓ ୩୨/୩-୪ ପଦ, ଯୁଗଳ ରସାମୃତ ଭଉଁସର ୩/୨୬-୨୯, ୨୩/୮, ୨୦/୫-୬ ପଦ, ସଙ୍ଗୀତ ସଦାନନ୍ଦ

୭/୮-୧୪ ପଦ ମାନଙ୍କରେ ଶୃଙ୍ଗାର ବର୍ଣ୍ଣନାର ଧାରାଟି ଦେଖିବାର କଥା । ଏହି ବର୍ଣ୍ଣନାମାନଙ୍କରେ ସେହି ଆବେଗ, ଉତ୍କଣ୍ଠା, ଔତ୍ସୁକ୍ୟ ଓ ପ୍ରେମବ୍ୟାପାରର ବିବିଧ ରୂପ ସୁନ୍ଦର ଭାବରେ ଚର୍ଚ୍ଚିତ ହୋଇଛି । ସଦାନନ୍ଦ ଯେ ଜଣେ ପ୍ରେମିକ ରସିକ କବି ଭାବରେ ଜଣେ ପାରଦର୍ଶୀ କଳାକାର ଥିଲେ ଏଥିରେ ସନ୍ଦେହ ନାହିଁ । କଳା କୁଞ୍ଜଲତା ସ୍ୱାନ ସମ୍ଭୋଗକୁ ସେ ପଶୁକ୍ରିୟା ସହିତ ତୁଳନା କରିଛନ୍ତି । ସ୍ତ୍ରୀଲୁବ୍ଧକାମ ନାରୀ ମୁଖ ଶୁଣି ଯେଉଁମାନେ ମଦନବାଣରେ ବଶ ହୁଅନ୍ତି, ସେମାନେ କବିଙ୍କ କଥାରେ 'କୁସ୍ତ୍ରିଚରଣୀ', ସେଥିପାଇଁ ସଦାନନ୍ଦ ବାରମ୍ବାର ନାଗରୀ ନାରୀ ଓ ରସିକ ନାଗର କଥା ସ୍ମରଣ କରାଇ ଦେଇଛନ୍ତି । ରତିଶାସ୍ତ୍ର ସମ୍ମତ କାମକଳାପ୍ରବୀଣ ପୁରୁଷ ହିଁ ରସିକ ।

ଶାସ୍ତ୍ର ଜାଣି ଶୃଙ୍ଗାର ସାର
ରସିକ ଅଟନ୍ତି ସେ ନର ।

(ପ୍ରେମ ତରଙ୍ଗିଣୀ)

ପରକୀୟା ରସର ପାରଦର୍ଶୀକବି, କୃଷ୍ଣଙ୍କୁ "ପରକୀୟା ଇଚ୍ଛାଧର, ଭକ୍ତଶାପ ଅଙ୍ଗୀକାରୀ" ବୋଲି ବର୍ଣ୍ଣନା କରି ରାଧାକୃଷ୍ଣ ପ୍ରେମତତ୍ତ୍ୱରେ ପରକୀୟାଙ୍କ ଦର୍ଶନ କରିଥିଲେ ମଧ୍ୟ ତାହାକୁ ସ୍ୱକୀୟା ଭାବରେ ପ୍ରତିଷ୍ଠା କରିବା ପାଇଁ କମ୍ ପ୍ରଚେଷ୍ଟା କରି ନାହାନ୍ତି । କୃଷ୍ଣଙ୍କ ବିଷୟରେ ରାଧା ସଖୀଙ୍କୁ କହୁଛନ୍ତି—

ପ୍ରାଣନାଥଙ୍କୁ ବୋଲୁ ପରପୁରୁଷ
ଯେଉଁ ବନ୍ଧୁ ଅମୃତ ଧନ ଦବସ୍ତ ଲୋ ।
କର ଗ୍ରହଣ ମାତ୍ର ଅଭିମନ୍ୟୁର
କୃଷ୍ଣ କେବଳ ସିନା ମୋ ପ୍ରାଣେଶ୍ୱର ଲୋ ।
ପର ପୁରୁଷ ହେଲେ ଲାଗନ୍ତା ଦୋଷ
କର୍ମ ନିଷେଧ ନସ୍ପୃହକେ ପ୍ରକାଶ ଲୋ
ପୁରୁଷ ସେହି ଏକା ଦମନ୍ତ୍ର ଶାସ୍ତ୍ର
ତେବେ ଉଚିତ ହେଲା ତାରେ ଅର୍ପିନ୍ତ ଲୋ ।

କବିଙ୍କ ପ୍ରେମପୂର୍ଣ୍ଣ କବିତାଗୁଡ଼ିକ ଧର୍ମ ସାପେକ୍ଷ ହେଉ ଅଥବା ଧର୍ମ ନିର-ପେକ୍ଷ ହେଉ, ସେଥିରେ ଯେ ପ୍ରୀତିପ୍ରବଣ ମଣିଷ ମନର ପ୍ରେମାବେଗ ଓ ପ୍ରେମାକାଙ୍କ୍ଷା ନିପୁଣ ଭାବରେ ଚର୍ଚ୍ଚିତ, ଏଥିରେ ସନ୍ଦେହର ଅବକାଶ ନାହିଁ । ସତେ ଯେପରି କବି କଣ୍ଠରେ ଉପନିଷଦର ସେହି ଅମର ବାଣୀ ଝଂକୃତ ହେଉଛି—

"ପ୍ରେମ ମୂଳାହୁ ମେଦନୀ, ପ୍ରେମାଶ୍ରିତା ଜବନ ବୃତ୍ତିଃ ।" ଜନଙ୍କ କବିତାର ଏହି ଅନ୍ତଃସ୍ୱରଟି ନ ବୁଝିଲେ, ତାଙ୍କର ସମସ୍ତ ସୃଷ୍ଟିଶୀଳ ପ୍ରଚେଷ୍ଟା ବ୍ୟର୍ଥତାରେ ପର୍ଯ୍ୟବସିତ ହେବ । ଏଣୁ ସେ ପାଠକ ସାଧାରଣଙ୍କୁ ଉଦ୍ଦେଶ୍ୟ କରି କହିଛନ୍ତି—

"ସମ୍ୟକ ପ୍ରକାରେ କବି ଶ୍ରମ ଯେହ୍ନେ ଆନକୁ ନୁହଇ ଗୋଚର
ସମର୍ଥ ହେ ଦୋଷଗ୍ରାହୀ ମାତ୍ରର
ସୂକ୍ଷ୍ମ ମନରେ ଯେ ବିଶ୍ଵରଇ ରସେ, ହୋଇଯାଏ ଜରଜର ।'
(ଲ: ଲେ. ୩୬ଶ ଛାନ୍ଦ)

ଏଇ 'ସୂକ୍ଷ୍ମମନ'ଟି ନେଇ ସଦାନନ୍ଦଙ୍କ ସୃଷ୍ଟି ସମୀକ୍ଷା କଲେ, ସ୍ରଷ୍ଟାମାନସର ଦର ବିଦର ଉଦ୍‌ଘାଟିତ ହେବ । ବହୁ ବୈଚିତ୍ର୍ୟମୟ ପ୍ରଶସ୍ତ ଚିତ୍ରଟି ତାର ସ୍ୱକୀୟ ମହିମାରେ ଉତ୍ତରୋତ୍ତର ଉଦ୍ଭାସିତ ହେବ ।

## ବର୍ଣ୍ଣନା ବୈଚିତ୍ର୍ୟ

ସୃଷ୍ଟିଶୀଳତାର ଉପାଦାନଗୁଡ଼ିକୁ ଯଥାର୍ଥ ଭାବରେ ଉପସ୍ଥାପନ କରିବାରେ କାବ୍ୟର ସାର୍ଥକତା ନିର୍ଭର କରେ । ବସ୍ତୁ ନିରୀକ୍ଷଣପଟୁତା ସଦାନନ୍ଦଙ୍କ ସୃଷ୍ଟି ଧର୍ମର ଗୋଟିଏ ଅବଶ୍ୟ ବିଶ୍ଳେଷ୍ୟ ବିଷୟ । ଖୁବ୍ ଛୋଟ ଛୋଟ କଥା ମଧ୍ୟ ସଦାନନ୍ଦଙ୍କ ସୂକ୍ଷ୍ମ ପର୍ଯ୍ୟବେକ୍ଷଣ ମଧ୍ୟ ଦେଇ କାଳୋତ୍ତୀର୍ଣ୍ଣ ଶାଶ୍ୱତ ରୂପାନ୍ୱିତ ବସ୍ତୁରେ ପରିଣତ ହୋଇଛି ।

କୃଷ୍ଣ କୌଳିକ କର୍ମରେ ପ୍ରବୃତ୍ତ ହୋଇ ଗୋଗୋଷ୍ଠ ନେଇ ପ୍ରଥମ କରି ବନ ଗମନ କରୁଛନ୍ତି । ସ୍ନେହ କାଙ୍ଗାଳିନୀ ମା ଯଶୋଦା ତାଙ୍କ ପଛେ ପଛେ କିଛି ଦୂର ପାଛୋଟି ଯାଇ କହୁଛନ୍ତି—

ମାତା କହନ୍ତି ଆରେ କହ୍ନାଇ, ଶୀଘ୍ର ଆସିଟି ଅଛୁ ଅନାଇଁ
ମଠ ହୋଇଲେ ଯିବି ମୁଁ ଧାଇଁ, ମୋ ଗଳାମାଳରେ
ଅନ୍ନ ଲଉଡ଼ି ଦୁଃଖୀ ସଙ୍ଖାଳି, କୃଷ୍ଣ ପଣେ ସିନା ଖାଉ ଗାଳରେ
ବାଳକ ସଙ୍ଗେ କରେଟି ଗୋଳ, ଆହେ ସୁବଳ ମଧୁମଙ୍ଗଳ
ସହିବ ଦୋଷ ଏ ଯେ କଟୋଳ, ନୋହିବ ଚଳ ହେ,
ଶୁଣି ଶ୍ରୀଦାମେ ବଦନ ଡାଳି ବନେ ଚଳିଲେ ଶ୍ରୀ ବନମାଳୀ
ଅଦୃଶ୍ୟ ହେବାଯାଏ ନରେଖି ଅଛି ବାହୁଡ଼ି ସେ ।
ମୁ. ର. ଲ. ୩୪ଶ ଛାନ୍ଦ ।

ପୁଣି ମୃଗ ପ୍ରତ୍ୟାବର୍ତ୍ତନ ଦୃଶ୍ୟଟି କିଛି କମ୍ ହୃଦୟସ୍ପର୍ଶୀ ନୁହେ । ଯଶୋଦାଙ୍କ ହୃଦୟରୁ ଝରି ପଡ଼ିଛି ମାତୃ କାକଦା

ମୋର କଳା କାହ୍ନୁର ଦିଶୁଅଛି କେତେ ଯତନେ
ଲବଣୀ ମାଗଇ ଲଞ୍ଚ ଲୋ ।
ଯଶୋଦା ଦେଖି ଦୂଅରେ, ଦେଖନ୍ତି କୁମର ଗାଈ ପଛରେ
ଆସୁଅଛି ଧିରେ ଧିରେ ଲୋ ।
କଦଳୀ ଫଳ ଆକାର ଗୋଡ଼ୁ ଧୂଳି ପଡ଼ି ତନୁ ଧୂସର ହେ
ଝଳି କାଳିଆ ସୁନ୍ଦର ଲୋ ।
ଯାଚନେ ନ ଖାଇ ନର, ଭୁଖିଥିବ ବନ ଫଳ ନକର ସେ
ବୋଲୁଥିବ କି ମଧୁର ଲୋ ।

(ଯୁ. ର. ଲ. ୫ମ ଛାନ୍ଦ)

ଏହି ଦରୁ ବର୍ଣ୍ଣନାରେ ମାତା ଯଶୋଦା ଓ ଅଳଅଳ ଶିଶୁ କୃଷ୍ଣଙ୍କ ହୃଦୟ ମନ ଓ ଅପଘନର ଯେଉଁ ସ୍ମୃତିଚିତ୍ରଟି ପାଠକ ମନରେ ଅଙ୍କିତ ହୋଇଯାଏ । ତାହା ନିଶ୍ଚିତ ଭାବରେ କାବ୍ୟକଳ୍ପନାର ଗୋଟିଏ ଦୁର୍ଲଭ ବସ୍ତୁ । ଏହିପରି ଯୁଗଳ ରସାମୃତ ଲହରୀର ଦମଗ୍ର ପଞ୍ଚମ ଛାନ୍ଦଟି ଯଶୋଦାଙ୍କ ବାତ୍ସଲ୍ୟ ପ୍ରେମରେ ପୂର୍ଣ୍ଣ । କୌଣସି ଗୋଟିଏ ପଦ ଅନ୍ୟପଦଠାରୁ ସୃଷ୍ଟିଶୀଳ କଳାକୁଶଳତାର ଚମତ୍କାରିତାରେ ନ୍ୟୂନ ନୁହେ । ସେହିପରି ବ୍ରଜ ବାଳକମାନଙ୍କର ବନରେ କୌତୁକ କ୍ରୀଡ଼ା ଏକବିଂଶ ଛାନ୍ଦରେ ବର୍ଣ୍ଣିତ ପ୍ରେମକଷାୟିତ ହୃଦୟା ରାଧାଙ୍କ ଆନମନା ଭାବ, ଚତୁର୍ଦ୍ଦଶ ଛାନ୍ଦରେ ବର୍ଣ୍ଣିତ ବିମନା ଚନ୍ଦ୍ରାବଳୀଙ୍କ ବିଳାପ, ଦ୍ୱାଦଶ ଛାନ୍ଦର ସଖୀ ସତର୍କତା, ତ୍ରୟୋଦଶ ଛାନ୍ଦର ଗୋପୀ ସମ୍ଭ୍ରମ ଗୋଟିଏ ଗୋଟିଏ ଅନବଦ୍ୟ ସୃଷ୍ଟି । ଲଳିତ ଲୋଚନା କାବ୍ୟର ଦ୍ୱାଦଶ ଛାନ୍ଦରେ ବର୍ଣ୍ଣିତ ଶବରମାନଙ୍କ ରୂପ ଓ ଶିକାର ଦୃଶ୍ୟ, ଚବିଶି ଛାନ୍ଦର ହାଟବର୍ଣ୍ଣନା, ନବମ ଛାନ୍ଦର ଜଙ୍ଗମ ଦୃଶ୍ୟ ଓ ଚତୁର୍ଦ୍ଦଶ ଛାନ୍ଦରେ ବର୍ଣ୍ଣିତ ଯୁଦ୍ଧ ଦୃଶ୍ୟ ବେଶ୍ ହୃଦ୍ୟ ଓ ମନୋମୁଗ୍ଧକର । ଯୁଦ୍ଧ ଦୃଶ୍ୟଟି ଦେଖିବାର କଥା

ହୁଙ୍କାର ନାଦ କେଅବା ଯୋଷି କେ ଡେଉଁ ମଧ୍ୟେ ମାରଇ ଘଷି
କେ ଧ୍ୱନି ଭୂଷି କେ କଷାକଷି କେ ଦଣାଦଣି ଯେ ।
କେ ଦଶଦଂଶ ଶର ସ୍ରହାର ଉଦାନ୍ତେ ବାହ୍ଣ ବଶରେ ହାରି
ଜୀବନ ମାଗି ନେଲା କୁହାରି, ଆସେ ବାହାରି ଯେ,
କେ ଖଣ୍ଡ ଖଣ୍ଡ, କରଣ ମୁଣ୍ଡ, ଭୂକଣ ହୋଇ ଅଛି ପ୍ରଚଣ୍ଡ

କେ ବୋଲେ ଭଣ୍ଡ, ଏ ଦଗେ ଷଣ୍ଡ, ଗଲ ଏହୋର ଯେ ।
ଖଣ୍ଡା ଝଲକ ରଖେ ପଲକ 'ରହ ବୋଲି କେ ପଳାଏ ଏକ
କେ କରେ ଶୋକ କରି ଆଲୋକ ପିତାର ଅନ୍ତେ ଯେ ।

ପୁଣି ଏକେଡ଼ଶି ଛାନ୍ଦରେ ରାଜକୁମାର ଓ ଲଳିତ ଲୋଚନାର ଶୁଭଚକ୍ଷୁ ମିଳନର ଦୃଶ୍ୟ, ପଞ୍ଚଦଶ ଛାନ୍ଦର ସ୍ୱୟଂବରକାଳୀନ ଦୃଶ୍ୟ ଓ ରତିବାହୁତା ଦୃଶ୍ୟ ମଧ୍ୟ ବେଶ୍ ମନୋରମ ଓ ପ୍ରାଣବନ୍ତ ହୋଇ ପାରିଛି । ଏହା ବ୍ୟତୀତ ବିଭିନ୍ନ କାବ୍ୟରେ ବର୍ଣ୍ଣିତ ଚଉପଟ, ଗୋପୀ ସମ୍ଭ୍ରମ, କୃଷ୍ଣଙ୍କ ପ୍ରେମଚପଳା, ବାଳୀ ଚପଳତା, ଅବଧୂତ, ଶବରଭଟ, ଜଙ୍ଗମ, ଶୀକାର, ଯୁଦ୍ଧ, କୃଷ୍ଣଙ୍କରୂପ, ରାଧାଙ୍କ ରୂପ, ମୁଗଧା ନାୟିକାର ହାବଭାବ, ଦାମ୍ପତ୍ୟ ପ୍ରୀତି, ନାୟକ ଓ ନାୟିକାର ରୂପ, ବର୍ଷା ପରିହାସ ମହାନଗ୍ର ଓ ରାଜ୍ୟଶାସନର ବହୁ ଚମତ୍କାର ସ୍ୱାଭାବିକ ବର୍ଣ୍ଣନା କାବ୍ୟ ଗୁଚ୍ଛର ଛନ୍ଦେ ଛନ୍ଦେ ଦେଖିବାକୁ ମିଳେ । ଗୋଟିଏ ଗୋଟିଏ ସମ୍ପୂର୍ଣ୍ଣ ଛାନ୍ଦରେ ସ୍ୱତନ୍ତ୍ର ଚେତନା ଶୈଳୀ ପ୍ରୟୋଗ କରି ଗୋଟିଏ ଗୋଟିଏ ବକ୍ତବ୍ୟ ଯେଉଁ ସ୍ତୁତ୍ୟ କବି ଉପସ୍ଥାପିତ କରିଛନ୍ତି, ତାହା ଧ୍ୱନି ମାଧୁର୍ଯ୍ୟ ଓ ବର୍ଣ୍ଣନା ବୈଚିତ୍ର୍ୟର ମିଶ୍ରଣରେ ଅପୂର୍ବ କାବ୍ୟବସ୍ତୁ ସୃଷ୍ଟି କରି ପାରିଛି । ଏ ପ୍ରସଙ୍ଗରେ ନାୟିକା ଲଳିତଲୋଚନାର ରୂପ ଗୁଣ ବର୍ଣ୍ଣନା ଉଲ୍ଲେଖଯୋଗ୍ୟ । ଯଥା—

ହସିଲେକ ମୃଦୁ ନାସିକା ଫୁଲଇ ବସିଲେକ ଆଡ଼ମ୍ବରେ
ଭଷିଲେକ ମଣି ପଟଭୂତ ଧରି ରୁଷିଲେକ କୁରୁକରେ ॥ ୩/୩

ବିରୋଧାଭାସ ଅଳଙ୍କାର ମାଧ୍ୟମରେ ମହାନଗରର ବର୍ଣ୍ଣନାଟି ମଧ୍ୟ ଯେପରି କାବ୍ୟଧର୍ମୀ ସମନ୍ୱିତ, ସେହିପରି ଶ୍ରୁତି ସୁଖକର ହୋଇଛି ।

ନୀଳକଣ୍ଠ ସର୍ବେ ଅଛନ୍ତି ନୀଳକଣ୍ଠ ନାହାନ୍ତି
ମଧୁପ ନାହାନ୍ତି ମଧୁପ ନଗରରେ ଭ୍ରମନ୍ତି ।

## ପ୍ରକୃତି ଚିତ୍ର

ମଧ୍ୟଯୁଗୀୟ କବିମାନେ ପ୍ରାୟ ସବୁବେଳେ ପ୍ରକୃତିକୁ ଶୃଙ୍ଗାର ରସର ଉଦ୍ଦୀପନ ବିଭାବ ଭାବରେ ବର୍ଣ୍ଣନା କରିଛନ୍ତି । ସଦାନନ୍ଦଙ୍କ କାବ୍ୟ ସୃଷ୍ଟିରେ ମଧ୍ୟ ଏହାର ବ୍ୟତିକ୍ରମ ହୋଇନାହିଁ । ତେବେ ଏଥିରେ ପ୍ରକୃତି ସ୍ଥାନେ ସ୍ଥାନେ ଶିକ୍ଷାଦାତ୍ରୀର ଭୂମିକା ମଧ୍ୟ ଗ୍ରହଣ କରିଛି । ମୋହନ କଳ୍ପଲତାର ଏକାଦଶ ଛାନ୍ଦରେ ଉପବନକୁ 'ବନ୍ୟା ନାଗରୀ କନ୍ୟା' ଭାବରେ ବର୍ଣ୍ଣନା କରାଯାଇଛି—

ମଣ୍ଡୀର ବୋଲଇ ବଜେ ପୁରୁଷବର
ଯେ କନ୍ୟା ନାଗରୀ କନ୍ୟା ସଙ୍ଗେ ବିହର ।
ଦେଖ କଣ୍ଟୁଲ୍ଲି ଅଧର ଯାଉଛୁ ଶୋଷି
ଲୁବ୍ଧକଲି ଦନ୍ତାବଳୀ ଅତି ଦୂଷି ।
ଖଞ୍ଜନ ନୟନ ଅତି ଚଞ୍ଚଳ ଯହୁଁ
କୋକିଳ ବାଣୀ ବଚନେ କଣ୍ଠ ସ୍ନେହ ।
ବେଢ଼ିଲେ କାନ୍ତରେ ହୋଇଅଛୁ ବିଭ୍ରାଜ
ତାଳଫଳ ସ୍ତନ ତୋର ମାନଯେ ହେଳ ।

ଲଳିତଲୋଚନାର ୪୧, ୪୨, ୪୩, ୪୪, ୪୫, ୪୬ ଛାନ୍ଦରେ ଯଥାକ୍ରମେ ହିମ, ଶିଶିର, ବସନ୍ତ, ଗ୍ରୀଷ୍ମ, ବର୍ଷା ଓ ଶରତ ଋତୁର ବର୍ଣ୍ଣାଢ୍ୟ ବର୍ଣ୍ଣନା କରାଯାଇଛି । ମୋହନ କଳ୍ପଲତାର ଅଷ୍ଟାଦଶ ଓ ବିଂଶ ଛାନ୍ଦରେ ବର୍ଣ୍ଣିତ ବର୍ଷା ଓ ଶରତର ଚିତ୍ର କବି କଳ୍ପନାର ବିଚିତ୍ର ବର୍ଣ୍ଣରେ ବିମଣ୍ଡିତ । ଏତଦ୍ ବ୍ୟତୀତ ନଦୀ, ପର୍ବତ ଉପବନ, କାନନ (ଲ.ଲୋ. ୧୩ଶ ଛାନ୍ଦ) ମଧୁଋତୁ, ସନ୍ଧ୍ୟା (ଲ.ଲୋ. ୮ମ, ଯୁ.ଚ.ଲ: ୧୨ଶ, ପ୍ରେମତରଙ୍ଗିଣୀ ୧୫ଶ ଛାନ୍ଦ) ରାତ୍ରି (ଲ. ଲୋ: ୩୬ଶ, ମୋ. କ. ୧୬ଶ ଛାନ୍ଦ) ପ୍ରଭାତୀ (ଲ.ଲୋ. ୭୨ ଛାନ୍ଦ) ଇତ୍ୟାଦି ପ୍ରକୃତିର ବିଭିନ୍ନ ବିଭବ ବର୍ଣ୍ଣନାରେ ସଦାନନ୍ଦଙ୍କ କାବ୍ୟ ସମ୍ଭାର ବହୁ ସୁଷମା ସମନ୍ୱିତ ହୋଇଛି ।

## ସମାଜ ଚିତ୍ର

ଯେ କୌଣସି ସାହିତ୍ୟିକ କୃତି ସମାଜର ପ୍ରତିଚ୍ଛବି ବହନ କରିବା ସ୍ୱାଭାବିକ । ସେ ସମୟର ସାମାଜିକ ଜୀବନର ଅସ୍ତର ବ୍ୟବହାର ଓ ଚଳଣି କାବ୍ୟଗୁଡ଼ିକର ଛନ୍ଦେ ଛନ୍ଦେ ଦେଖିବାକୁ ମିଳେ । ନାନା ସାମାଜିକ ବିଧି ବିଧାନ ଲୋକ ଦୁର୍ବଳତା, ସଂସ୍କାର କୁସଂସ୍କାର, ବିବାହୋତ୍ସବ ଜନ୍ମୋତ୍ସବ, ପୂଜା, ବ୍ରତ ଓ ପର୍ବପର୍ବାଣୀ, ଅନ୍ଧବିଶ୍ୱାସ ଯଥାଯଥ ଭାବେ ବିଭିନ୍ନ ପ୍ରସଙ୍ଗ କ୍ରମେ ଉଲ୍ଲିଖିତ ହୋଇଛି । ବିବାହୋତ୍ସବରେ ବରକନ୍ୟା ବେଶ, ଶୋଭାଯାତ୍ରା, ବାଣ ରୋଷଣୀ, ପଟୁଆର, ନୃତ୍ୟଗୀତ, ଭୋଜିଭାତ, ଯୌତୁକ, କନ୍ୟାମଙ୍ଗୁଳା, ଅଷ୍ଟମଙ୍ଗଳା, ବରବରଣ, ମଧୁଶଯ୍ୟା, ଚିଟାଉଲେଖନ ନିମନ୍ତ୍ରଣ ଇତ୍ୟାଦିର କବିତ୍ୱ ପୂର୍ଣ୍ଣ ବର୍ଣ୍ଣନା ସର୍ବତ୍ର ଦେଖିବାକୁ ମିଳେ । ହୁଳହୁଳି, ଗ୍ରାମଦେବୀ ପୂଜା, ପୁରୋହିତଙ୍କ ମନ୍ତ୍ରପଠନ, ମୁହୂପୁଳା, ବନ୍ଦାପନା, ନବବେଦୀଶ୍ରୀ ବିଭିନ୍ନ ବାଦ୍ୟମର୍ଦ୍ଦଳ, ପଖାଉଜ, ଝାବେଲା' ଚମକ, ଧାଇ ଇତ୍ୟାଦି ବିବାହୋତ୍ସବର ସମସ୍ତ ଆନୁସଙ୍ଗିକ ଘଟଣା ମୋହନ କଳ୍ପଲତା କାବ୍ୟର ଷଡ଼ବିଂଶ ଛାନ୍ଦରେ ନିଖୁଣ ଭାବରେ ବର୍ଣ୍ଣିତ

ହୋଇଛି । ନାଡ଼ିଚ୍ଛେଦନ, ନାମକରଣ, ଏକୋଇଶିଆ ପାଳନ, ଗୋଷ୍ଠାଷ୍ଟମୀ ପାଳନ, କନ୍ୟାପ୍ରାପ୍ତି ଉଦ୍ଦେଶ୍ୟରେ ବ୍ରତ ଉପବାସାଦିର ଅବିକଳ ପାରମ୍ପରିକ ଚିତ୍ର ଯୁଗଳ ହେମ୍ପୁତ ନନ୍ଦଙ୍କର ଚତୁର୍ଥ ଛାନ୍ଦ, ଲଳିତ ଲୋଚନାର ଦ୍ୱିତୀୟ ଛାନ୍ଦ ଓ ମୋହନ କଳାନିଧିର ପଞ୍ଚମ ଛାନ୍ଦରେ ଦେଖିବାକୁ ମିଳେ । ମାଘସ୍ନାନ ଦୋଳ ଓ ଦୋଳ ପର୍ବ, କୁମାର ପୂର୍ଣ୍ଣିମା ଉତ୍ସବ, କାର୍ତ୍ତିକ ହବିଷ୍ୟବ୍ରତ ଓ ଏହି ପର୍ବାଣୀର ବିଧିବ୍ୟବସ୍ଥା ଗୁଡ଼ିକ ଯଥାର୍ଥ ଭାବରେ ଚିତ୍ରିତ ହୋଇଛି । ପାରିବାରିକ ଜୀବନ, ବିଶେଷ କରି ରାଜପରିବାରରେ ଶିକ୍ଷା, ଶାସନ, ବେଶ, ଚଳଣି, ଚରିତ୍ର ପ୍ରେମ ସହଚର ଓ ସହଚରୀ, ପ୍ରମୋଦ ବିହାର, ପତ୍ରଲିଖନ, ପଟଚିତ୍ର ଅଙ୍କନ ଇତ୍ୟାଦିରେ କଳାକୁଶଳତା ଅର୍ଜ୍ଜନ ସେ ସମୟରେ ଆଭିଜାତ୍ୟର ଚିହ୍ନଭାବରେ ଗୃହୀତ ହେଉଥିଲା । ଶିଳ୍ପସ୍ୱିନୀ, ବିଦୂଷୀ, ଜ୍ୟୋତିଷୀ ସଙ୍ଗୀତଜ୍ଞା, ଗାୟିକା ବାଦ୍ୟନୃତ୍ୟବିଦ୍ୟା ପ୍ରବୀଣା ନାରୀମାନେ ରାଜ ଅନ୍ତଃପୁରରେ ଜେମାମାନଙ୍କୁ ସଙ୍ଗୀତ ନୃତ୍ୟ ଓ କାମଶାସ୍ତ୍ର ବିଷୟରେ ଶିକ୍ଷାଦାନ କରୁଥିଲେ । ପ୍ରେମିକ ଓ ପ୍ରେମିକାମାନଙ୍କ ମଧ୍ୟରେ ପତ୍ର ଆଦାନ ପ୍ରଦାନ ହେଉଥିବାରୁ ପତ୍ରଲିଖନର ଗୋଟିଏ ଅଭିଜାତ ଶୈଳୀ ଥିଲା । ତାହାର ବିଭିନ୍ନ ଦିଗ ବିଷୟରେ ବିସ୍ତୃତ ଆଲୋଚନା ଓ ବର୍ଣ୍ଣନା ସଦାନନ୍ଦଙ୍କ ପ୍ରାୟ ସମସ୍ତ ପ୍ରେମାଖ୍ୟାନମୂଳକ କାବ୍ୟରେ ଦେଖିବାକୁ ମିଳେ ।

ରାଜକୁମାରମାନଙ୍କର ଶିକ୍ଷାର ମାନ ନିର୍ଦ୍ଧାରିତ ହେଉଥିଲା । ସାଧାରଣ ଭାବରେ ରାଜକୁମାରମାନେ ପାଞ୍ଚବର୍ଷ ବୟସରୁ ବିଦ୍ୟାରମ୍ଭ କରି ସିଦ୍ଧିରସ୍ତୁ, ଅକ୍ଷରଶିକ୍ଷା, ଗୀତ ଗାନ କ୍ରମେ ସଂସ୍କୃତ ଭାଷା, ଚର୍ଯ୍ୟା, ଅଭିଧାନ, ବ୍ୟାକରଣ ସନ୍ଧିସନ୍ଧାନ ଓ ପ୍ରୟୋଗ, ଶବ୍ଦସୃଷ୍ଟି, ଆଖ୍ୟାତ, ଭୂତ, ଭବିଷ୍ୟ, ବର୍ତ୍ତମାନାଦି କାଳ ଜ୍ଞାନ, କାଳ ପ୍ରୟୋଗ, କାରକ, ତଦ୍ଧିତ, ସମାସାଦିର ସାଙ୍ଗୋପାଙ୍ଗ ଅଧ୍ୟୟନ ଓ ଚର୍ଚ୍ଚା କରୁଥିଲେ । ଶୃଙ୍ଗାର ରସାତ୍ମକ କାବ୍ୟ କବିତା, ଅଳଙ୍କାର ଶାସ୍ତ୍ର, ନାଟ୍ୟଶାସ୍ତ୍ର, ନାଟକ, ନୃତ୍ୟ, ନ୍ୟାୟ ମୀମାଂସା, ଯୋଗ, ସାଙ୍ଖ୍ୟ, ବେଦାନ୍ତ ବୈଷୟିକ, ଶ୍ରୁତି ଓ ସ୍ମୃତି, ସଙ୍ଗୀତଶାସ୍ତ୍ର, ବୈଦ୍ୟଶାସ୍ତ୍ର, ଜ୍ୟୋତିଃଶାସ୍ତ୍ର, ଅଶ୍ୱଶାସ୍ତ୍ର, ଶିଳ୍ପଶାସ୍ତ୍ର, ଧର୍ମଶାସ୍ତ୍ର, ଭାଗବତ, ଅଶ୍ୱଚାଳନା, ଛାନ୍ଦରଚନା, ଧନୁର୍ବାଣ, ଭାଲ, ଦଣ୍ଡଚାଳନା, ପଟ୍ଟ, ଗୁରୁଦା, ଚକ୍ର, ଫେରି, ଖଣ୍ଡା, ଗଦା, ସାବେଳି ଚାଳନା, ମଲ୍ଲବିଦ୍ୟା ଇତ୍ୟାଦି ରାଜକୁମାରମାନଙ୍କର ଶିକ୍ଷାର ଅନ୍ତର୍ଗତ ଥିଲା । ଓ ସେଥିପାଇଁ ବିହିତ ବ୍ୟବସ୍ଥା କରାଯାଇଥିଲା । ଏହା ବ୍ୟତୀତ ଯୁଦ୍ଧରେ ବ୍ୟବହୃତ ହେଉଥିବା ଯୁଦ୍ଧାସ୍ତ୍ର - ଧନୁର୍ବାଣ, କୁନ୍ତ, ଖଡ୍ଗ, ଗଦା, ବର୍ଚ୍ଛା । ଶାବେଳି, ଗୁରୁଦା, ବିଭିନ୍ନ ଯାନ - ରଥ, ଉଷ୍ଟ୍ର, ହସ୍ତୀ,

ଘୋଟକ, ବାଦ୍ୟଯନ୍ତ୍ର - ମୃଦଙ୍ଗ, ମର୍ଦ୍ଦଳ, ଶଙ୍ଖ, ଡିଣ୍ଡିମ, ପଟହ, ଭେରୀ, ସରମଣ୍ଡଳ, ବୀଣା, କର୍ତ୍ତାଳ, ବଂଶୀ, କାହାଳୀ, ଯୋଡ଼ା ଶଙ୍ଖ, ଭେରୀ, ତୂରୀ, ଢୋଲ, ଦମା, ଟେଲେଙ୍ଗୀ ବାଜା, ଘଣ୍ଟା ଇତ୍ୟାଦି ପରମ୍ପରା କ୍ରମେ ବ୍ୟବହୃତ ହେଉଥିଲା ଏବଂ ପୁରୁଷାନୁକ୍ରମେ ଏସବୁ ଯୁଦ୍ଧ ବାଦ୍ୟ, ବାଦ୍ୟବାଦ୍ୟରେ ଦକ୍ଷତା ଅର୍ଜନ କରିବା କେତେକ ଶ୍ରେଣୀର ଲୋକଙ୍କର କୌଳିକ ପ୍ରଥା ଥିଲା । ରାଜକୁମାର ଓ ସେନାପତି ମାନେ ରତ୍ନମୁକୁଟ, କୁଣ୍ଡଳ, ପଦକଯୁକ୍ତ ତାର ହାର, ବାଜୁବନ୍ଧ, ଝନ୍ତ୍ରକ, ହୀରା ଖଚିତ କଙ୍କଣ ଇତ୍ୟାଦି ଅଳଙ୍କାର ଭାବରେ ବ୍ୟବହାର କରୁଥିଲେ । ସମାଜରେ ନାନାପ୍ରକାର ଶୁଭ ଓ ଅଶୁଭ ଶକୁନ ସଂସ୍କାର ଜନ ଜୀବନକୁ ନିୟନ୍ତ୍ରିତ କରୁଥିଲା । ବାମେ ଶବ, ଶିବା, କୁମ୍ଭାଦର୍ଶନ ମଙ୍ଗଳ ସୂଚକ, ଅନୁକୂଳ ଦେଲେ ମତ୍ସ୍ୟ, ଦଧି, ଯୌବନ, ଦକ୍ଷିଣ ପାର୍ଶ୍ୱରେ ମୃଗ, ଗାଈ ଓ ବ୍ରାହ୍ମଣ, ସମ୍ମୁଖରେ ନକୁଳର ଗତି ଶୁଭ ସୂଚକ ଭାବେ ଗୃହୀତ ହେଉଥିଲେ ।

କବିଙ୍କ ସମୟରେ ଚୈତନ୍ୟ ପନ୍ଥୀଙ୍କ ବହୁ ପ୍ରସାର ସତ୍ତ୍ୱେ ଓଡ଼ିଶାରେ ଜ୍ଞାନମିଶ୍ରା ଭକ୍ତିର ପ୍ରାଧାନ୍ୟ ଥିଲା । ଗୌରାଙ୍ଗ ପ୍ରବର୍ତ୍ତିତ ପ୍ରେମଭକ୍ତି ତତ୍ତ୍ୱର ମହତ୍ତ୍ୱ ଲୋକେ ତଥାପି ଉପଲବ୍ଧି କରି ନ ଥିଲେ । ସେଥି ପାଇଁ ସେ ଦୁଃଖରେ କହିଛନ୍ତି—

ଏବେ ଜ୍ଞାନୀଙ୍କ କର୍ମରେ ଭୁବନ ଭରିଲା
ଗୌରାଙ୍ଗ ଯା ତତ୍ତ୍ୱ ତା କିଏ ନ ପଚାରିଲା

କବି ଶାକ୍ତ ମାନଙ୍କ ଆଚାର ଓ ବିଚାର ପ୍ରତି କଟାକ୍ଷ ପାତ କରି ପ୍ରତିମାଠାରେ ବଳୀ ପ୍ରଥାର ଘୋର ନିନ୍ଦାବାଦ କରିଛନ୍ତି—

ଶାକ୍ତଙ୍କ ପରାଭବ ନ ଭଜନ୍ତୁ କହିଲି
ଯାହା ଖାଇ ହସ ମାତଇ
ତୁଣ୍ଡେ ବୋଲନ୍ତି ସେତ ଶାକ୍ତ ଜଗତ ମାତ
ଛାଗ ମହିଷ ବଳୀ ଦେଉଛରେ ଆରେ ମନ ।
ଜଗତକୁ ସେ କି ବାହାର
ସୁତ କି ଭକ୍ଷଣ ମାତାର
— ( ନି . ମା , ୯ମ ଛାନ୍ଦ )

ଏଥିରୁ କବିଙ୍କ ପ୍ରେମଭକ୍ତି ପ୍ରତି ପକ୍ଷପାତିତା ଓ ଜନସାଧାରଣଙ୍କର ତତ୍କାଳୀନ ଧର୍ମଗ୍ରହଣ ବିଷୟରେ ସ୍ପଷ୍ଟ ସୂଚନା ମିଳେ ।

ରାଜପରିବାରରେ ଲୌକିକ ପରମେଶ୍ୱର ପ୍ରତି ବିଶେଷ ସମ୍ମାନ ପ୍ରଦର୍ଶନ କରାଯାଉଥିଲା । ରାଜାମାନେ ନ୍ୟାୟ ଓ ଧର୍ମ ନିର୍ଦ୍ଦିଷ୍ଟ ପଥରେ ପ୍ରଜାପାଳନ କରୁଥିଲେ । ଗୁଣୀ, ଗାରେଡ଼ି, ଐନ୍ଦ୍ରଜାଲିକ ଓ ବେତାଳ ସାଧକମାନେ ବହୁ ଅସାଧ୍ୟ ସାଧନ କରୁଥିଲେ । ସମାଜରେ ଲୁକ୍କାୟିତ ଭାବେ ବ୍ୟଭିଚାର ଓ ଅନାଚାର ମଧ୍ୟ ହେଉଥିଲା । ଧ୍ୱନ୍ୟାତ୍ମକ ରୀତିରେ ଲେଖକ ତାହାର ସୂଚନା ଦେଇଛନ୍ତି ।

କାହ୍ନାଦ୍ୱାରେ ପଥିକ ବଣିକ । କହେ ଭଣିମ ଚକ୍ରନାୟକ ।
ପଦକରେ ମଣ୍ଡିଲେ ଉତ୍ତମ । ଶୁଣି ପ୍ରବୀଣା ବାଣୀ ଜନମ ।
ସୁନାରୀ କି କହ ଥିବେ କାହିଁ । ଆମ୍ଭେ ଚିହ୍ନି କି ଗ୍ରାହକ ନୋହୁଁ ।
ନାରୀ କେଳ ବତ ହେ ରସିକା । ପରେ ସ୍ୱଚ୍ଛେ ହେଲ ପ୍ରାଣାଧିକା ।

ଏଠାରେ ପଥିକ, ଚକ୍ରନାୟକ, ପଦକ, ସୁନାରୀ, ଶବ୍ଦମାନଙ୍କର ପୁନଃପୁନଃ ଶ୍ଳିଷ୍ଟ ପ୍ରୟୋଗଦ୍ୱାରା କୌଣସି ଜଣେ ରସିକ ବଣିକ ସହିତ ଜଣେ ପ୍ରବୀଣା କୁଳଟା ଗୃହବଧୂର ଅବୈଧ ଯୌନ ସମ୍ପର୍କ ଧ୍ୱନିତ ହୋଇଛି । ଶବ୍ଦଶିଳ୍ପର ଏ ଧ୍ୱନି ଏ ମାଧୁର୍ଯ୍ୟ କେବଳ ପ୍ରତିଭାଧର କବିମାନଙ୍କର ରଚନାରେ ସମ୍ଭବ ହୋଇଥାଏ । ସଦାନନ୍ଦଙ୍କ ରଚନାର ବହୁସ୍ଥଳରେ ଏପରି କାବ୍ୟିକ ବ୍ୟଞ୍ଜନାର ସୁଚତୁର ବିନ୍ୟାସ ଦେଖିବାକୁ ମିଳେ । ସାହିତ୍ୟରେ ଏହିପରି ଭାବ ବ୍ୟଞ୍ଜନା ଗର୍ହିତ ନୁହେ । ସାହିତ୍ୟଶାସ୍ତ୍ରରେ ଏହି କାବ୍ୟକୁ ଉତ୍ତମ କାବ୍ୟ ଆଖ୍ୟା ଦିଆ ଯାଇଛି । ସେ ସମୟରେ ସାହିତ୍ୟ ଓ ସଙ୍ଗୀତପ୍ରତି ସମାଜରେ ଯଥେଷ୍ଟ ଆଦର ଥିଲା, ସଙ୍ଗୀତ ସାହିତ୍ୟ ନାଟକାଦି ଗୁଣୋପେତା ମୋହନ ଲତାର ଗୀତଗାଇବା ବର୍ଣ୍ଣନାଟି ବେଶ୍ ଚମତ୍କାର ହୋଇଛି—

ବିଶାଳ ନୟନା ବୀଣା ବାଦନ କରଇ
ପରିମଳା ଆଳ ଅଳତି ତାଳକୁ ସୂଚଇସେ ।
ସାରିଗମ ପଧନିସା ସ୍ୱର ମନୋହର
ସାନିଧପ ମଗରେସା ପ୍ରତି ଲୋମ ଛାଟେସେ ।
ପ୍ରେମଶୀଳା ଅଳାପ ହେ କରଇ ଗୁଞ୍ଜରି
ତା ନାନାନା ଶର ମିଳାଅନ୍ତୁ ଯତ ଧରେସେ ।
( ମୋ.ଆ. [illegible]ମଛାନ୍ଦ )

ସେତେବେଳେ ସମାଜରେ ନାରୀମାନଙ୍କ ସ୍ଥାନ ପୁରୁଷ ମାନଙ୍କ ଅପେକ୍ଷା ନ୍ୟୂନ ଥିଲା । ନାରୀମାନେ ପୁରୁଷର ଏକପ୍ରକାର ବିଳାସ ସାମଗ୍ରୀ ଭାବରେ ବିବେଚିତ ହେଉଥିଲେ । ପତି ଯାହା ହେଲେମଧ୍ୟ ପତ୍ନୀ ପାଇଁରେ ସାକ୍ଷାତ ଦେବତା । ସ୍ୱାମୀର ଦୋଷଗୁଣ ବାଛିବା ତାର ବିଚାର ବାହାରେ । ପାତିବ୍ରତ୍ୟ ପାଳିବାହିଁ ପତ୍ନୀର ସର୍ବଶ୍ରେଷ୍ଠ ଧର୍ମ । ସ୍ୱାମୀ ଚରଣରେ ସର୍ବାନ୍ତଃକରଣରେ ଆତ୍ମନିବେଦନ କରିବାରେ ହିଁ ତା ଜୀବନର ଚରମ ସାର୍ଥକତା ।

"ସ୍ୱାମୀଗୁଣ ଦୋଷ । ଦୋଷିବା ଯିଏ ସେନିନ୍ଦ୍ୟ ମାନସ ।
ପତ୍ନୀର ପତିବ୍ରତାଧର୍ମ ମୂଳ··········· ·········"
( ନ. ମ. ୭/୪ )

ଏହିପରି ସାମାଜିକ ଜୀବନରେ ବହୁ ଚିତ୍ର ଅବିକଳ ଭାବେ ସଦାନନ୍ଦଙ୍କ ପ୍ରାୟ ସବୁ କାବ୍ୟରେ ଦେଖିବାକୁ ମିଳେ । ଯେଉଁଥିରୁ ସେ ସମୟର ଜନଜୀବନ ବିଷୟରେ ଗୋଟିଏ ସ୍ଥୂଳ ଧାରଣା କରିହୁଏ ।

**ଅଳଙ୍କାର**

ପ୍ରଥମେ ସଦାନନ୍ଦ ତାଙ୍କ କାବ୍ୟ ରଚନାର ଅଭିମୁଖ୍ୟ ଘୋଷଣା କରି ଲେଖିଥିଲେ—

'ନାଗରୀ ନାରୀ ପ୍ରକାରେ ଏ ଗୀତ ହୋଇବ
ଅଳଙ୍କାରେ ଯୁକ୍ତ ବକ୍ର ଉକ୍ତି ଯେଣୁଥିବ'
( ଲ . ଲେ . ୧ମ ଛାନ୍ଦ )

'ହେବ ରସ ଅଳଙ୍କାର ଚନ୍ଦନେ ଭୂଷଣ'
( ମୋ କ . ୧ମ ଛାନ୍ଦ )

ଏଥିରୁ ରୀତିକାବ୍ୟ-ପରମ୍ପରା-ସ୍ପୃଷ୍ଟ କବିପାଣସର ଅଳଙ୍କାର ସଂଯୋଜନା ପ୍ରତି ପକ୍ଷପାତିତା ସ୍ପଷ୍ଟ । କିନ୍ତୁ ପରବର୍ତ୍ତୀ ସମୟରେ କବିଙ୍କ ମନ 'କାଳନା ଛାଡ଼ିଛି' । ଯଦି ନାନା ପ୍ରକାରର କଷ୍ଟକଳ୍ପିତ ଅଳଙ୍କାର ଦ୍ୱାରା ତାହାଙ୍କର କବିତା ସୁନ୍ଦରୀ ଅଳଙ୍କୃତ ହୁଅନ୍ତି, ତେବେ 'କ୍ଳିଷ୍ଟ ହୋଇବ ବୁଝି ନୋହିବ ନ

ଯେମନ୍ତେ 'ସର୍ବଜନ' ବୋଲି ତାଙ୍କର ଦୃଢ଼ବୋଧ ହୋଇଛି । ଏଣୁ ଅଳଙ୍କାରିକ ପରିକଳ୍ପନାରେ ଯଦ୍ୟପି କବି ସାମର୍ଥ୍ୟ ପ୍ରତିଷ୍ଠା ଲାଭ କରେ, 'ମହାକବି' ସ୍ତବରେ ଖ୍ୟାତି ଲାଭ କରିବାର ଅପୂର୍ବ ସୁଯୋଗ ମିଳେ, ତଥାପି ସମର୍ଥ କବି ସେଥିରେ ସ୍ୱୀୟ ତାତ୍କାଳିକ ପ୍ରୟୋଜନର କୌଣସି ସାର୍ଥକତା ନ ଦେଖି ତହିଁରୁ ନିଜ ମାନସକୁ ନିବୃତ୍ତ କରି ଶବ୍ଦଗୂଢ଼ ଅର୍ଥଗୂଢ଼ ପରିକଳ୍ପନା ଛାଡ଼ି ସରଳ କବିତା ରଚନାରେ ମନୋନିବେଶ କରିଛନ୍ତି । କବିଙ୍କ ଭାଷାରେ—

"ଅପଣ୍ଡିତ୍ୟାଳଙ୍କାରାଦି ସାମଗ୍ରୀ ବହୁତ
କବି ସାମର୍ଥ୍ୟ ଯଦ୍ୟପି ତହିଁରେ ପ୍ରତୀତ
ମହାକବି ନାମ ଖ୍ୟାତ ପ୍ରତିଷ୍ଠାଦି ଯହିଁ
ତେବେ ହେଲେ ତହିଁରେ ମୋ ପ୍ରୟୋଜନ ନାହିଁ
ତହିଁରୁ ନିବୃତ୍ତ ହେଲା ମାନସ ଏଥର
ମୋହନ ହେଲେହେଁ ତହିଁ ବିଦ୍ୟାବନ୍ତ ନର ।
କୃଷ୍ଣଭକ୍ତ ବୁଝିବେ ମୋ ଶ୍ରମ ସାର୍ଥ ଏହି
ଶବ୍ଦ ଗୂଢ଼େ ଅର୍ଥ ଗୂଢ଼େ ପ୍ରୟୋଜନ ନାହିଁ ।
—(ନ. ମା. ୧ମ ଛାନ୍ଦ)

'ତହିଁରୁ ନିବୃତ୍ତ ହେଲା ମାନସ ଏଥର ।' ଏହି 'ଏଥର' ଶବ୍ଦଟି ସ୍ପଷ୍ଟ କରିଦେଉଛି ଯେ, କବି ନିଷ୍କାମଲମଣି ଗ୍ରନ୍ଥ ଲେଖିବା ପୂର୍ବରୁ ଯାହା ଲେଖିଥିଲେ ସେଥିରେ କବି ସାମର୍ଥ୍ୟ ଦ୍ୟୋତକ ବହୁ ଅଳଂକାର, ଶବ୍ଦଗୂଢ଼ ଓ ଅର୍ଥଗୂଢ଼ ପ୍ରୟୋଗ କରିଥିଲେ, କିନ୍ତୁ ଏବେ ସେ ଯାହା ଲେଖିଛନ୍ତି ସେଥିରେ ଏସବୁ କିଛି ନାହିଁ । କାରଣ ବର୍ତ୍ତମାନର କାବ୍ୟାଭିମୁଖ୍ୟ ହେଉଛି—'ସରଳ ଅଳପ ହେଲେ ହୁଅଇ ରୁଚିର' । ଏହରୁ କବିବାଣୀ ବିସ୍ତରକୁ ନେଇ ପର୍ଯ୍ୟାଲୋଚନା କଲେ ଜଣାଯାଏ ଯେ କବି ପୂର୍ବାଶ୍ରମରେ ଯେଉଁ କାବ୍ୟ ରଚନା କରିଥିଲେ ସେଥିରେ ରୀତି ଯୁଗୀୟ କାବ୍ୟାଦର୍ଶ ଦୃଷ୍ଟିରୁ ବହୁ ଶବ୍ଦାଲଙ୍କାର ଓ ଅର୍ଥାଲଙ୍କାରର ପ୍ରୟୋଗ କରିଛନ୍ତି । ଯୁଗଳ ରସାମୃତ ଭଉଁରି କାବ୍ୟର ସତରୁଳଣି ଛାନ୍ଦରେ ନିରୋଷ୍ଠକ, ସରୋଷ୍ଠକ, ମହାପ୍ରାଣ, ମିଶ୍ରାକ୍ଷର, ତାଲବ୍ୟ ନିୟମ, ମୂର୍ଦ୍ଧନ୍ୟ ନିୟମ, ଦନ୍ତ୍ୟ ନିୟମ, ଅନୁନାସିକ୍ୟ ନିୟମ ଇତ୍ୟାଦି ବହୁ ଶବ୍ଦାଲଙ୍କାରର ପୁନଃପୁନ ବିନ୍ୟାସ ଦେଖିବାକୁ ମିଳେ । ପୁଣି ଆଦ୍ୟାନୁପ୍ରାସ (ଯୁ. ର. ଲ. ୨/୧-୨୬) ମଧ୍ୟାନୁପ୍ରାସ) (ଯୁ. ର. ଭ ୩୦/୧-୨୬), ଅନୁପ୍ରାସ (ଲ. ଲେ, ୩୪/୩୧-୩୩), ଲାଟାନୁପ୍ରାସ (ଯୁ. ର. ଭ. ୩୬।୧-୨୨), ଆଦ୍ୟଯମକ—୧୨।୧-୮, ପ୍ରାନ୍ତଯମକ-୧୪।୧-୬, ସର୍ବଯମକ - ୧୬।୩୦, ମହାଯମକ ଯୁ. ର. ଭ. ୧୯।୨୨-୨୪, ରୂପକ ୨୦।୧-୩ ଚରେଧାକ୍ଷର ୪୪।୧-୪, ଅନ୍ତଲପି ଓ ବହିଲପି ୪୬।୧୨-୧୬ । ପ୍ରତିଲୋମାନୁ-

ଲେମ ୪୮/୨୩-୪୨, ଲେମ, ପ୍ରତିଲେମ, ବିଲେମ, ମୁ. ର. ଲ. ୪୬/୫-୮, ଏକାକ୍ଷର ଅନ୍ତ୍ୟମ ମ୍. ର. ଭ. ୬୨୧-୧୨, ଏକ ଶବ୍ଦର ପୁନରୁକ୍ତି ମୁ, ର. ଲ. ୭ମ ଛାନ୍ଦ ; ଏହିପରି ଚକ୍ରବନ୍ଧ, ଦନ୍ତ ଚ୍ୟୁତାକ୍ଷର, ଗୋମୂତ୍ରିକା ଶୃଙ୍ଖଳା, ମେଘଯୁକ୍ତ, ଛନ୍ଦ, ଶ୍ଳେଷ ଓ ବକ୍ରବାଣୀ ( ଲ. ଲେ, ୧୦ମ ଛାନ୍ଦ ) ଇତ୍ୟାଦି ଶବ୍ଦାଳଙ୍କାରମାନଙ୍କର ପରିକଳ୍ପନା ଦେଖିବାକୁ ମିଳେ । କିନ୍ତୁ ବାସ୍ତବରେ ଏହାଦ୍ୱାରା କେବଳ କବି ସମସ୍ତ ପ୍ରସିଦ୍ଧି ପ୍ରତି ସମ୍ମାନ ପ୍ରଦର୍ଶନ ବ୍ୟତୀତ ଅନ୍ୟ କୌଣସି କାବ୍ୟିକ ମହତ୍ତ୍ୱ ପ୍ରତିପାଦିତ ହୋଇନାହିଁ । ଏହା ବ୍ୟତୀତ ବହୁ ଅର୍ଥାଳଙ୍କାରର ପ୍ରୟୋଗ ମଧ୍ୟ ଯଥା ସ୍ଥାନରେ କରାଯାଇଛି । କିନ୍ତୁ ଶବ୍ଦାଳଙ୍କାର ଗୁଡ଼ିକର ପରିକଳ୍ପନା ଅପେକ୍ଷା ଅର୍ଥାଳଙ୍କାରଗୁଡ଼ିକର ଧ୍ୱନ୍ୟାତ୍ମକ ପ୍ରୟୋଗ ବେଶ୍ ମନୋଜ୍ଞ ଓ ସୁଖ ପାଠ୍ୟ ହୋଇପାରିଛି ।

## ଭାଷା ପ୍ରୟୋଗ

ଓଡ଼ିଆ ମଧ୍ୟ ଯୁଗୀୟ କବିମାନେ କାବ୍ୟିକ ଭାଷା ପ୍ରୟୋଗରେ ଅତ୍ୟନ୍ତ ସଚେତନ ଥିଲେ । ସେମାନେ ଓଡ଼ିଆରେ ଲେଖିଥିଲେ ମଧ୍ୟ ସଂସ୍କୃତ ଭାଷା ପ୍ରତି ଯେ ସେମାନଙ୍କର ଯଥେଷ୍ଟ ସମ୍ଭ୍ରମତା ଥିଲା, ଏଥିରେ କୌଣସି ସନ୍ଦେହ ନାହିଁ । ଧାର୍ମିକ ସାହିତ୍ୟ ଲୋକ ଭାଷାରେ ହିଁ ଲେଖାଯିବା ଦରକାର । ଏ ବିଷୟରେ ସମସ୍ତେ ସଚେତନ ଥିଲେ ମଧ୍ୟ ସଂସ୍କୃତ ଛାଡ଼ି ଓଡ଼ିଆରେ ଲେଖିବା ସତେ ଯେପରି ଗୋଟାଏ ଅପରାଧ ଭାବରେ ବିବେଚିତ ହେଉଥିଲା । ପ୍ରାକୃତ ଭାଷାର କବିମାନେ ସେଥିପାଇଁ ଅତ୍ୟନ୍ତ ସନ୍ତର୍ପିତ ଢଙ୍ଗରେ ଲେଖିଯାଇଛନ୍ତି ଯେ, ମା ଶାରଳା, କୃଷ୍ଣ ଅଥବା ଜଗନ୍ନାଥ ଯାହା କହିଲେ ସେମାନେ କେବଳ ତାହା ରେକର୍ଡ କରିଛନ୍ତି, ନିଜେ କିଛି ଲେଖିନାହାନ୍ତି । ଏହିପରି ନିଜର କୃତିତ୍ୱକୁ କୃଷ୍ଣଙ୍କ ନିକଟରେ ସମର୍ପିଦେଇ ତତ୍‌କାଳୀନ ତଥାକଥିତ ପିଶୁନମାନଙ୍କ ସମାଲୋଚନାରୁ ନିଜକୁ ନିରାପଦ ଦୂରତ୍ୱରେ ରଖିବାକୁ ସେମାନେ ପସନ୍ଦ କରୁଥିଲେ । ସଦାନନ୍ଦ ମଧ୍ୟ ଯୁଗଳ ରସାମୃତ ଲହରୀରେ ଲେଖିଛନ୍ତି—

ଏ ମୋର କୃତ୍ୟ ବୋଲି ନମଣି, ଏ ସନାତନ ହେ ।
ଏ ସିନ୍ଧୁ ଧ୍ୱଇଛା ଏ ଉଦ୍‌ଭେପନ୍ନ ହେ ।
କର୍ଣ୍ଣ ହେଉନ୍ତେ ଅନାଗଳ ସ୍ରୁନ ହେ ।

ପ୍ରେମ ପଞ୍ଚାମୃତରେ ଭୂପତି ପଣ୍ଡିତ କାବ୍ୟଭାଷା ବିଷୟରେ ଯାହା ବ୍ୟକ୍ତ କରିଛନ୍ତି, ତାହା ସେ ସମୟର ଭାଷା ବିଷୟକ ଚେତନାର ଯଥାର୍ଥ ପ୍ରତିନିଧିତ୍ୱ କରେ

ଯେବେ ନ ଥାଇ କୁଷ୍ଟରେ        ସେ ସଂସ୍କୃତେ କାର୍ଯ୍ୟ କିସ ।
ପାଟ ବସନେ ଗୁଞ୍ଜ ଫଳ        ଥିଲେ ନୁହଇ ବହୁମୂଲ୍ୟ ।
ଶିଶ କନାରେ ମାଣିକର        ଥିଲେ ନ ଟୁଟେ ମୂଲ୍ୟତାର
କ୍ଳେଶେ ହୁଅଇ ରସଦୋଷ        ସବୁଙ୍କୁ ନୋହେ ଉପଯୋଗ ।

କବିଙ୍କ ମତରେ ସଂସ୍କୃତ ଯେ 'ପାଟବସନ' ଓ ଓଡ଼ିଆ 'ଶିଶକନା' ଏ କଥାଟି ଅତି ସ୍ପଷ୍ଟ । ସେଥିପାଇଁ ଓଡ଼ିଆ କାବ୍ୟ କବିତା ଲେଖିବା ବେଳେ କବି ମାନେ 'କଥା ନୋହେ ଦିବ୍ୟ ଅଦିବ୍ୟ ସମ', 'ଦିବ୍ୟ ଅଦିବ୍ୟ ଭାଷାରେ ପଦ ହେବ ସିଦ୍ଧି' ଇତ୍ୟାଦି ଘୋଷଣା କରିଛନ୍ତି । ସଦାନନ୍ଦ ମଧ୍ୟ ଏକଥା ସହିତ ସମତାଳ ଦେଇ ଲେଖିଛନ୍ତି—

"ବହୁ ଛନ୍ଦ ବନ୍ଧ କାବ୍ୟ ପ୍ରାକୃତ ମତେ
ମୋ ମୁଖେ ପ୍ରକାଶିଲ ସଂସ୍କୃତ ସମ୍ମତେ" ।

କିନ୍ତୁ ଏ ପ୍ରାକୃତ ( ଓଡ଼ିଆ ) ଓ ସଂସ୍କୃତ ସମ୍ମିଳିତ ଭାଷାରେ କେତେ ଖଣ୍ଡି କାବ୍ୟ ଲେଖି ସାରିବା ପରେ ସଦାନନ୍ଦଙ୍କ ଭାଷାର ଆଭିମୁଖ୍ୟଟି ବଦଳି ଯାଇଛି । ସେ ପରବର୍ତ୍ତୀ କାଳରେ 'ଗ୍ରାମ୍ୟ ଶବ୍ଦ ନୋହେ ଦୂଷିତ' ବୋଲି କହି ଯଥାସମ୍ଭବ ସରଳ ଓଡ଼ିଆ ଭାଷାରେ ଗୋଟିକ ପରେ ଗୋଟିଏ ବ୍ରଜଲୀଳାତ୍ମକ କାବ୍ୟ ଲେଖିଛନ୍ତି । ତାଙ୍କ ଦୃଷ୍ଟିରେ ଶବ୍ଦଗୂଢ଼ ଓ ଅର୍ଥ ଗୂଢ଼ ପରିକଳ୍ପନାର ଆଉ କୌଣସି ପ୍ରୟୋଜନ ନାହିଁ । ସରଳ ଭାଷାରେ ସଂକ୍ଷିପ୍ତ ଭାବରେ ବିଷୟ ବିନ୍ୟାସ କରି ସେ କାବ୍ୟ ଗୁଡ଼ିକ ସମ୍ପାଦନ କରିଛନ୍ତି । 'ସରଳ ଅଳପ ହେଲେ ହୁଅଇ ରୁଚିର,' ବୋଲି ଘୋଷଣା କରିବା ସଙ୍ଗେ ସଙ୍ଗେ କାବ୍ୟକଥନର ଆଭିମୁଖ୍ୟ ବିଷୟରେ ସୂଚନା ଦେଇ ଲେଖିଛନ୍ତି—

ଯାର ଯେମନ୍ତ ସ୍ୱଭାବ ମତି,        ସେ ରଙ୍ଗେ ମନ ହରିବା'
( ନୂ . ବ୍ର . ଲ . ଶାସ୍ତ୍ର ଛାନ୍ଦ )

ସରଳ ଓ କଠିନ ସଂସ୍କୃତ ଶବ୍ଦ ଭାଷାର ନିପୁଣ ପ୍ରୟୋଗରେ ମୋହନ କଳ୍ପଲତା କାବ୍ୟର ସପ୍ତମ ଛାନ୍ଦଟି ଭୁକ୍ତିମନ୍ତ । ଯୁଗଳ ରସାମୃତ ଲହରୀର ଷଷ୍ଠ ଛାନ୍ଦରେ ପ୍ରଯୁକ୍ତ କ୍ଲିଷ୍ଟ ଭାଷା ବ୍ୟବହାର ସହିତ ସେହି କାବ୍ୟର ପଞ୍ଚମ ଛାନ୍ଦର ସରଳ ତରଳ ଭାଷା ତୁଳନା କଲେ ଭାବାନୁଯାୟୀ କାବ୍ୟଭାଷା ପ୍ରୟୋଗରେ କବିଙ୍କ କଳାକୁଶଳତାର ଅପୂର୍ବ ଦକ୍ଷତା ଅନୁଭବ କରିହୁଏ । ସରଳ ଭାଷାର ସୁଷ୍ଠୁ ପ୍ରୟୋଗ କରି ଯୁଗଳରସାମୃତ ଲହରୀର ଚତୁର୍ଥ ଓ ପଞ୍ଚମ ଛାନ୍ଦରେ ସେ ଯେଉଁ ଭାବମାଧୁର୍ଯ୍ୟ ସୃଷ୍ଟି କରିଛନ୍ତି, ତାହା ଓଡ଼ିଆ ସାହିତ୍ୟର ଗୋଟିଏ ଅମଳିନ ଗର୍ବ ଓ ଗୌରବ ଭାବରେ ସବୁଦିନ ପାଇଁ ଦେଦୀପ୍ୟମାନ ହୋଇ ରହିଥିବ ।

—o—

# ଚତୁର୍ଥ ପରିଚ୍ଛେଦ

## ଧର୍ମ ଚେତନା

### ରାଧାକୃଷ୍ଣ ଲୀଳା ଓ ପ୍ରେମଭକ୍ତି

"ଦେବଲୀଳାମୃତାବ୍ଧିକୁ ଲଭୁ ଏ କିଙ୍କର"
( ସ୍ତୋ ୬ )

—ସଦାନନ୍ଦ

ସଦାନନ୍ଦ ବହୁ ସ୍ଥଳରେ ଭଗବଲ୍ଲୀଳା ଦର୍ଶନ ପାଇଁ ଭକ୍ତ ଗଦ୍‌ଗଦ୍ ଚିତ୍ତରେ ପ୍ରାର୍ଥନା କରିଛନ୍ତି । ପ୍ରଶ୍ନ ହେଉଛି ଲୀଳା କ'ଣ ? ଏହାର ସଂକ୍ଷିପ୍ତ ଉତ୍ତର ଦିଆଯାଇ ପାରେ— ଲୀଳା ଈଶ୍ୱରୀୟ ଭକ୍ତମାନଙ୍କର ଗୋଟିଏ ଅସ୍ୱାଦନୀୟ ଉକ୍ତିର ପରିକଳ୍ପନା । ଏହା ସୁବିଦିତ ଯେ, ଭଗବାନ ଅନନ୍ତ, ଅଗୋଚର, ଅସୀମ ଓ ଅଗମ୍ୟ କିନ୍ତୁ ଏହା ମଧ୍ୟ ଭକ୍ତମାନଙ୍କୁ ଭଲଭାବେ ଜଣା ଯେ, ସେ ଅନୁଭବୈକଗମ୍ୟ । ସାଧକ ତାଙ୍କୁ ଦେଖେ, ଅନୁଭବ କରେ କିନ୍ତୁ କହିପାରେନା । ତେଣୁ ଭଗବାନଙ୍କୁ ଅନିର୍ବଚନୀୟ 'ଜଡ଼ାର ଗୁଡ଼' କୁହାଯାଏ । ଜଡ଼ା ଗୁଡ଼ର ସ୍ୱାଦ ଚାଖି ପାରେ କିନ୍ତୁ କହିପାରେନା । ଭଗବାନ ଜ୍ଞାନ ଗମ୍ୟ ନୁହନ୍ତି । କାରଣ ଜ୍ଞାନ ବୁଦ୍ଧିର ବିଷୟ ଓ ବୁଦ୍ଧି ଆମର ସୀମା ବିଷୟରେ ସଚେତନ କରାଇଦେଇ ନିବୃତ୍ତ ହୁଏ । ବୁଦ୍ଧି ଠାରୁ ଆତ୍ମା ବଡ଼ । 'ବୁଦ୍ଧେରାତ୍ମା ମହାନ ପରଃ' । ଭଗବାନଙ୍କ ସ୍ୱରୂପ ଆତ୍ମାଦ୍ୱାରା ଜଣାଯାଏ, ଅନୁଭବ କରିହୁଏ । ସେ ସତ୍ ଚିତ୍ ଆନନ୍ଦମୟ । ସେ ସ୍ୱୟଂ ଆନନ୍ଦ ରୂପ ଅମୃତ । 'ଆନନ୍ଦ ରୂପମମୃତଂ ଯଦ୍

ଷାଦ୍ଧତି' । ସେ ରସ ସ୍ୱରୂପ । 'ରସୋ ବୈ ସଃ' । କିନ୍ତୁ ସେ ରସ ପାଇ ଆନନ୍ଦୀ ହୁଅନ୍ତି । 'ରସହ୍ୟେବାୟଂ ଲବ୍ଧ୍ୱାନନ୍ଦୀ ଭବତି' । କାରଣ, ଏହା ହେଉଛି ଅପୂର୍ବ ଲୀଳାଧରଙ୍କ ଲୀଳା । ଲୀଳାହିଁ ଲୀଳାର କାରଣ, ଲୀଳାହିଁ ଲୀଳାର ଲକ୍ଷ୍ୟ । ଭକ୍ତ ନିକଟରେ କେବଳ ଭଗବତ ସାକ୍ଷାତ୍କାର, ଭଗବତ୍ ପ୍ରେମହିଁ ବଡ଼ କଥା । ଭଗବାନଙ୍କ ପ୍ରତି ଏକାନ୍ତ ପ୍ରେମଭକ୍ତି ହେଉଛି ପ୍ରେମର ପ୍ରକର୍ଷ । ମାତା, ପିତା, ସଖା, କାନ୍ତା ଭାବରେ ଭକ୍ତ ଭଗବାନଙ୍କ ସହିତ ସମ୍ପର୍କ ସ୍ଥାପନ କରେ । ଏହି ସବୁ ସମ୍ବନ୍ଧ ତାଙ୍କର ପ୍ରେମ ପ୍ରକଟ କରନ୍ତି । 'ତ୍ୱମେବ ମାତା ଚ ପିତା ତ୍ୱମେବ, ତ୍ୱମେବ ବନ୍ଧୁ ଶ୍ଚ ସଖା ତ୍ୱମେବ,' । ଭକ୍ତମାନେ ଏହିପରି ନାନା ସମ୍ବନ୍ଧ କଳ୍ପନା କରି ସେଥିରେ ତନ୍ମୟ ହୋଇ ନିଜ ହୃଦୟରେ ଭଗବାନଙ୍କ ସାକ୍ଷାତକାର କରନ୍ତି । ସମ୍ବନ୍ଧର ଏକନିଷ୍ଠ ଅଭିମାନ ଯୋଗୁଁ ଭକ୍ତର ଭକ୍ତି ଦୃଷ୍ଟି ପ୍ରେମାଞ୍ଜନରେ ଅନୁରଞ୍ଜିତ ହୁଏ ଏବଂ ଆରାଧ୍ୟ କୃଷ୍ଣଙ୍କୁ ନିଜର ମାନସ ଭୂମିରେ ସେହି ଅନୁରଞ୍ଜିତ ରୂପରେ ଦେଖେ ।

ଏ ପ୍ରସଙ୍ଗରେ ଚୈତନ୍ୟ ଚରିତାମୃତର ଗୋଟିଏ ସୁନ୍ଦର ଘଟଣା ଉଲ୍ଲେଖ କରିଯାଇ ପାରେ । ଥରେ ଚୈତନ୍ୟ ମହାପ୍ରଭୁ ଦାକ୍ଷିଣାତ୍ୟ ଭ୍ରମଣରେ ଯାଇ ରାଜମାହେନ୍ଦ୍ରୀର ଗଙ୍ଗାକୂଳରେ ପହଞ୍ଚିଲେ । ସେଠାରେ ଉତ୍କଳ ଗଜପତିଙ୍କ ଷରପ୍ରାପ୍ତ ଶାସକ ଭକ୍ତ ପ୍ରବର ରାୟ ରାମାନନ୍ଦଙ୍କ ସହିତ ତାଙ୍କର ସାକ୍ଷାତ ହେଲା । ଭଗବାନ ଓ ଭକ୍ତର ସମ୍ବନ୍ଧ ଜିଜ୍ଞାସା କରି ଚୈତନ୍ୟ ରାମାନନ୍ଦଙ୍କୁ ପଚାରିଲେ— ଭକ୍ତି କାହାକୁ କହନ୍ତି । ରାୟ ଉତ୍ତର ଦେଲେ ସ୍ୱଧର୍ମାଚରଣହିଁ ଭକ୍ତି । ପୁଣି ପ୍ରଶ୍ନ ହେଲ — ଏତ ବାହ୍ୟ କଥା, ଭିତର କଥା କହ । ଉତ୍ତର - ଶ୍ରୀକୃଷ୍ଣଙ୍କ ଠାରେ ସମସ୍ତ କର୍ମ ଅର୍ପଣ କରି ଦେବାହିଁ ଭକ୍ତି । ଏତ ବାହ୍ୟ କଥା, ଆହୁରି ଭିତର କଥା କହ । ସବୁ କର୍ମ ପରିତ୍ୟାଗ ପୂର୍ବକ ଭଗବାନଙ୍କ ଠାରେ ଶରଣ ପଶିବାହିଁ ଭକ୍ତି । ଏହା ମଧ୍ୟ ବାହ୍ୟକଥା ପରବର୍ତ୍ତୀ କଥା କହ । ଭଗବାନଙ୍କ ପ୍ରତି ପରମ ପ୍ରେମହିଁ ଭକ୍ତି । ଏହା ମଧ୍ୟ ସ୍ଥୂଳକଥା । ଆହୁରି ଭିତର କଥା କହ । ଦାସ୍ୟ ପ୍ରେମହିଁ ଭକ୍ତି । ଏହା ମଧ୍ୟ ସ୍ଥୂଳ କଥା, ଆହୁରି ଗୂଢ଼ କଥା କହ । ସଖ୍ୟ ପ୍ରେମହିଁ ଭକ୍ତି । ଠିକ୍ ତଥାପି ପରବର୍ତ୍ତୀ କଥା କହ । କାନ୍ତାଭାବ ପ୍ରେମ ହିଁ ଭକ୍ତି । ଅତି ଉତ୍ତମ, କିନ୍ତୁ ଆହୁରି ଭିତର କଥା କହ । ରାଧାଭାବ ପ୍ରେମହିଁ ପରମଭକ୍ତି । ହିଁ ରାଧାଭାବ ହିଁ ଶ୍ରେଷ୍ଠ, କିନ୍ତୁ ଏଥିରେ ପ୍ରମାଣ କ'ଣ ଅଛି ?

ଏଇଠି ଲକ୍ଷ୍ୟ କରିବାର କଥା ଯେ ଚୈତନ୍ୟ ମହାପ୍ରଭୁ କେବଳ ଅନ୍ତିମ ଉତ୍ତର ପାଇଁ ପ୍ରମାଣ ଜିଜ୍ଞାସା କରିଥିଲେ । ତା ପୂର୍ବରୁ ସେ ଯେଉଁ ସବୁ ଉତ୍ତର ପାଇଥିଲେ, ସେ ସବୁ ତାଙ୍କର ଜଣା ଶୁଣା କଥା । ଶ୍ରୀମଦ୍ ଭଗବଦ୍ ଗୀତା ଓ ଶ୍ରୀମଦ୍ ଭାଗବତ ମହାପୁରାଣରେ ତାହାର ଭୂରି ଭୂରି ପ୍ରମାଣ ରହିଛି । କିନ୍ତୁ ଗୀତାରେ କିମ୍ବା ଭାଗବତରେ ରାଧାଭାବ କଥା ନାହିଁ । ବୈଷ୍ଣବମାନଙ୍କ ପାଇଁ ଭଗବତ ବେଦବତ୍ ଗ୍ରାହ୍ୟ । 'ଶାସ୍ତ୍ରଂ ଭାଗବତଂ ପୁରାଣମମଳଂ' । କିନ୍ତୁ ସେଥିରେ ରାଧାଭାବ ତ ଦୂରର କଥା ରାଧାଙ୍କ ନାମର ମଧ୍ୟ ଉଲ୍ଲେଖ ନାହିଁ । ଭକ୍ତିଶାସ୍ତ୍ର ଭାଗବତରେ ଯାହା ନାହିଁ ତାହା ପୁଣି ସର୍ବଶ୍ରେଷ୍ଠ ଭକ୍ତି କିପରି ? ରାୟ ରାମାନନ୍ଦ ଗୀତଗୋବିନ୍ଦରୁ ପ୍ରମାଣ ଉଦ୍ଧୃତ କରି କହିଲେ—

କଂସାରିରପି ସଂସାର ବାସନାବଦ୍ଧ ଶୃଙ୍ଖଳାମ୍
ରାଧାମାଧାୟ ହୃଦୟେ ତତ୍ୟାଜ ବ୍ରଜସୁନ୍ଦରୀଃ

ଅର୍ଥାତ୍ ଭଗବାନ୍ କୃଷ୍ଣ ରାଧାଙ୍କୁ ହୃଦୟରେ ଧାରଣ କରି ଅନ୍ୟ ସମସ୍ତ ଗୋପିକାଙ୍କୁ ପରିତ୍ୟାଗ କରିଥିଲେ । ଏଥିରୁ ଏହା ପ୍ରମାଣିତ ହେଉଛି ଯେ କାନ୍ତାଭାବରେ ମଧ୍ୟ 'ରାଧାଭାବ' ସର୍ବୋତ୍ତମ । ସାର କଥା ହେଉଛି ଯେ, ଭଗବାନଙ୍କ ଠାରେ ଭକ୍ତ ଯେତେ ପ୍ରକାର ସମ୍ବନ୍ଧ କଳ୍ପନା କରିପାରେ ତା ମଧ୍ୟରେ କାନ୍ତାଭାବମୟ ପ୍ରେମ ହିଁ ଶ୍ରେଷ୍ଠ । ବୈଷ୍ଣବ ଭକ୍ତ କବିମାନେ ଏହି ସମ୍ବନ୍ଧକୁ ଏତେ ମାର୍ମିକ ଓ ଜୀବନ୍ତ ଭାବରେ ବର୍ଣ୍ଣନା କରିଛନ୍ତି ଯେ, ସମଗ୍ର ଭାରତୀୟ ସାହିତ୍ୟରେ ଏହି ଅନନ୍ୟ ସାଧାରଣ ଅଲୌକିକ ପ୍ରେମଭକ୍ତିର ଆଉ ଦୃଷ୍ଟାନ୍ତ ନାହିଁ । ଏହାହିଁ ହେଉଛି ଚୈତନ୍ୟପନ୍ଥୀ ବୈଷ୍ଣବ ଭକ୍ତ କବିମାନଙ୍କର ଜୀବନ ବ୍ୟାପୀ ଚରମ ସାଧନାର ମର୍ମକଥା ।

## ଶ୍ରୀକୃଷ୍ଣ

ବୈଷ୍ଣବମାନେ କୃଷ୍ଣଙ୍କ ଉପାସକ । ଭଗବାନଙ୍କ ଅଠରଶଟି ଅବତାର ମଧ୍ୟରୁ କୃଷ୍ଣାବତାର ଗୋଟିଏ ମୁଖ୍ୟ ଅବତାର । ଲୀଳା ବହୁଳତା ଯୋଗୁ ହିଁ କୃଷ୍ଣାବତାରର ପ୍ରାଧାନ୍ୟ ସ୍ୱୀକୃତ ହୋଇଛି । ପ୍ରଥମେ ଶ୍ରୀକୃଷ୍ଣ ଦୁଷ୍ଟ ସଂହାରକ ଓ ଶିଷ୍ଟ ପାଳକ ଭାବରେ ପରିଚିତ ଥିଲେ । କିନ୍ତୁ ଧୀରେ ଧୀରେ ଲୀଳାମୟ ରୂପରେ ହିଁ ବିଶେଷ ଭାବରେ ପରିକଳ୍ପିତ ହେଲେ । ସମଗ୍ର ପୁରାଣ ସାହିତ୍ୟରେ କୃଷ୍ଣଙ୍କର

ଦୁଇଟି ରୂପ ଦେଖିବାକୁ ମିଳେ । ପ୍ରଥମେ ସେ ଯଦୁକୁଳ ଶ୍ରେଷ୍ଠ, ବୀର, ରାଜା ଓ କଂସାରି । ଦ୍ୱିତୀୟରେ ସେ ଗୋପାଳ, ଗୋପୀଜନ ବଲ୍ଲଭ, ରାଧାଧର ସୁଧାପାନ ଶାଳୀ ବନମାଳୀ । ପ୍ରଥମ ରୂପଟି ବହୁ ପୁରାତନ ଓ ଦ୍ୱିତୀୟ ରୂପ ଅପେକ୍ଷାକୃତ ନବୀନ । କିନ୍ତୁ ଧୀରେ ଧୀରେ ପୁରାତନ ରୂପର ଗୌଣତା ଓ ନୂତନ ରୂପର ପ୍ରଧାନତା ପ୍ରତିଷ୍ଠିତ ହୋଇଛି । ଅଶ୍ୱଘୋଷ ଓ କାଳିଦାସଙ୍କ ରଚନାରେ ମହାଭାରତ ଓ ହରିବଂଶରେ ଗୋପାଳକୃଷ୍ଣଙ୍କ ବର୍ଣ୍ଣନା ଦେଖିବାକୁ ମିଳେ । ହରିବଂଶରେ ବୃନ୍ଦାବନ ବିହାରୀ କୃଷ୍ଣଙ୍କ ଶକଟ, ପୂତନା, ଧେନୁକ, କେଶୀ ଓ ପ୍ରଲମ୍ବାସୁର ବଧ ଓ ହଲ୍ଲୀସକ ନୃତ୍ୟ କଥା ବର୍ଣ୍ଣନା କରାଯାଇଛି । ବିଷ୍ଣୁପୁରାଣରେ ମଧ୍ୟ ଏସବୁର ଉଲ୍ଲେଖ ଅଛି । ହରିବଂଶର ହଲ୍ଲୀସକ କ୍ରୀଡ଼ା ଭାଗବତରେ ରାସକ୍ରୀଡ଼ାରେ ପରିଣତ ହୋଇଛି । ଭାଗବତର ରାସପଞ୍ଚାଧ୍ୟାୟୀରେ ବର୍ଣ୍ଣିତ ରାସକ୍ରୀଡ଼ାରେ କବିତ୍ୱପୂର୍ଣ୍ଣ ଭକ୍ତିଭାବର ମହତ୍ତ୍ୱ ଯଥେଷ୍ଟ ବେଶୀ, ହରିବଂଶରେ ବର୍ଣ୍ଣିତ ସ୍ଥୂଳ ଦେହଭାବ ଭାଗବତରେ ମାଧୁର୍ଯ୍ୟ ବିମଣ୍ଡିତ କଳାତ୍ମକ ରୂପ ପରିଗ୍ରହ କରିଛି । ପରବର୍ତ୍ତୀ ସାହିତ୍ୟରେ ଓ ଚିତ୍ରକଳାରେ ଏହି ବିରହ ମିଳନର ଚିତ୍ରଟି ତାର ଶତ ବର୍ଣ୍ଣାଢ଼୍ୟ ବେଶରେ ଅନୁରଞ୍ଜିତ ହୋଇ ଉଠିଛି ।

ଦଶମ ଶତାବ୍ଦୀର ଲେଖକ କ୍ଷେମେନ୍ଦ୍ର ଓ ଅନ୍ୟାନ୍ୟଙ୍କ 'ଦଶାବତାର ଚରିତ'ରେ ଶ୍ରୀକୃଷ୍ଣଙ୍କ ପ୍ରାଧାନ୍ୟ ପ୍ରଣିଧାନ ଯୋଗ୍ୟ । କୃଷ୍ଣ ମନୁଷ୍ୟ ରୂପରେ ଆବିର୍ଭୂତ ହୋଇଥିବାରୁ ଏବଂ ଜନସାଧାରଣଙ୍କୁ ତାଙ୍କର ଲୀଳା ମାଧୁର୍ଯ୍ୟ ପ୍ରଭାବିତ କରିଥିବାରୁ ଏହି ଅବତାରର ପ୍ରାଧାନ୍ୟ ସ୍ୱୀକୃତ ହୋଇଛି । କୃଷ୍ଣଲୀଳାରେ ଅଦ୍ଭୁତ ମାନବିକ ଅନୁଭୂତିର ସ୍ପର୍ଶ ରହିଛି । ଏହି ମାନବିକ ଆବେଦନକୁ ପୁଷ୍ଟ କରି ଭକ୍ତ କବିମାନେ କେତେ ଯେ ପାରମାର୍ଥୀ ଧନ ଅର୍ଜନ କରିଛନ୍ତି ତାହାର ଇୟତ୍ତା ନାହିଁ । ମନୁଷ୍ୟର ଅସଂଖ୍ୟ ସଙ୍କୀର୍ଣ୍ଣ ଇଚ୍ଛା, ଆକାଙ୍କ୍ଷା, ରାଗ, ଅନୁରାଗ ସବୁ ଭଗବାନଙ୍କ ଉଦ୍ଦେଶ୍ୟରେ ପ୍ରେରିତ ହେଲେ, ସେଗୁଡ଼ିକ କ୍ଷୁଦ୍ରତା ପରିହାର କରି ମହାନ୍ ହୋଇ ଉଠନ୍ତି । ଏହି ତତ୍ତ୍ୱରେ ଅନୁପ୍ରାଣିତ ହୋଇ କବିମାନେ ସମସ୍ତ ମାନବିକ ଅନୁରାଗକୁ ଭଗବତ୍ ଉଦ୍ଦେଶ୍ୟରେ ପ୍ରେରିତ କରିବା ପାଇଁ ପ୍ରୟାସ କରିଛନ୍ତି । ସାଧାରଣତଃ ମନୁଷ୍ୟ ସ୍ତ୍ରୀ, ପୁତ୍ର, ଧନ, ଜନ, ଯଶ କୀର୍ତ୍ତି ଅର୍ଜନ ପାଇଁ ଯାହା କିଛି କରେ, ସେ ସବୁ ସଙ୍କୀର୍ଣ୍ଣ ବୈଯକ୍ତିକ ସୁଖ ସ୍ୱାଚ୍ଛନ୍ଦ୍ୟ ଉଦ୍ଦେଶ୍ୟରେ ଉଦ୍ଦିଷ୍ଟ ଥିବାରୁ ସେଥିରେ କ୍ଷୁଦ୍ରତା ଓ ସଙ୍କୀର୍ଣ୍ଣତା ରହିଯାଏ । କିନ୍ତୁ ଯଦି ତାହା

ପୂର୍ଣ୍ଣତମ ଭଗବାନଙ୍କ ଉଦ୍ଦେଶ୍ୟରେ ପ୍ରବୃତ୍ତ ହୁଏ, ତେବେ ସେ ସବୁ ସମସ୍ତ ଜଗତରେ ମଙ୍ଗଳ ସାଧାଧ୍ୟକ ହୋଇଯାଆନ୍ତି । ସେଥିପାଇଁ ସବୁ ଭକ୍ତ କବିମାନେ ସମସ୍ତ ମାନବୀୟ ମନୋଭାବ ଗୁଡ଼ିକୁ ଭଗବତ୍ ପରାୟଣ କରିବାରେ ସେମାନଙ୍କର ସମସ୍ତ ଶକ୍ତି ବିନିଯୋଗ କରିଛନ୍ତି । ଭାଗବତରେ ଏହି କଥା ଟି ଅତି ସୁନ୍ଦର ଭାବରେ ବିଶ୍ଳେଷିତ ହୋଇଛି—

ଯଦ୍ ଯୁଜ୍ୟତେଽସୁବସୁ କର୍ମ ମନୋବଚୋଭି
ର୍ଦେହାତ୍ମଜାଦିଷୁ ନୃଭି ସ୍ତଦସତ୍ ପୃଥକ୍ତ୍ୱାତ୍ ।
ତୈରେବ ସଦ୍ଭବତି ଯେତ୍ କ୍ରିୟତେଽପୃଥକ୍ତ୍ୱାତ୍
ସର୍ବସ୍ୟ ତଦ୍ ଭବତି ମୂଳ ନିଷେଚନ ଯତ୍ ।

ମାନବୀୟ ଅନୁରାଗମାନଙ୍କ ମଧ୍ୟରେ ସବୁଠାରୁ ପ୍ରବଳ ମନୋରାଗ ହେଉଛି ଦାମ୍ପତ୍ୟ ଓ ବାତ୍ସଲ୍ୟ । ଶ୍ରୀକୃଷ୍ଣଲୀଳାରେ ଏହି ମନୋରାଗର ଉପାଦାନ ପ୍ରଚୁର ମାତ୍ରାରେ ଉପଲବ୍ଧ । ଭକ୍ତ କବିମାନେ ଏହି ମାନବୀୟ ରାଗ ଅନୁରାଗ ଗୁଡ଼ିକୁ କୃଷ୍ଣଲୀଳା ଗାନରେ ପ୍ରୟୋଗ କରି ପ୍ରାଣ ପ୍ରାଚୁର୍ଯ୍ୟରେ ପରିପୂର୍ଣ୍ଣ ସୃଷ୍ଟିସମ୍ଭାର ଛାଡ଼ି ଯାଇଛନ୍ତି ।

## ଶ୍ରୀରାଧା : ସୃଷ୍ଟି, ସ୍ଥିତି ଓ ବ୍ୟାପ୍ତି

'ରାଧା' ହେଉଛି ସାହିତ୍ୟ ଓ ଧର୍ମ ଗ୍ରନ୍ଥରେ ଗୋଟିଏ ଅନବଦ୍ୟ ସୃଷ୍ଟି । କେବଳ ଯେ ସାହିତ୍ୟରସିକ ଓ ରାଗାନୁଗା ଭକ୍ତ ଜଗତ ଶହଶହ ବର୍ଷ ଧରି ଗୋଟିଏ ରାଧା ଶବ୍ଦର କାଞ୍ଚିସ୍ପର୍ଶରେ ଆଶ୍ଚର୍ଯ୍ୟ-ଚକିତ, ପୁଲକିତ ଓ ବିମୋହିତ ହୋଇଛନ୍ତି, ତାହା ଉପଯୁକ୍ତ ନାହିଁ । ରାଧାର ପ୍ରେମମୟ ମଧୁର ରୂପ ପରିକଳ୍ପନା ଓ ରାଧା ଭାବର ସ୍ୱର୍ଗୀୟ ଚେତନା ସୃଷ୍ଟି କରିବାରେ ଏ ଦେଶର ଅଗଣିତ ମନୀଷୀ କବି, ସେମାନଙ୍କ ପ୍ରଚଣ୍ଡ ପ୍ରତିଭା ପ୍ରସୂତ କବିତ୍ୱ ପୂର୍ଣ୍ଣ ଦକ୍ଷତା ପ୍ରଦର୍ଶନରେ ଯେଉଁ କୃତିତ୍ୱ ଅର୍ଜନ କରିଯାଇଛନ୍ତି । ତାହା ଯୁଗେ ଯୁଗେ ଜନତାର ଧର୍ମଧାରଣା ଓ ସାହିତ୍ୟ ଜିଜ୍ଞାସାକୁ ଚରିତାର୍ଥ କରିବାରେ ଅପୂର୍ବ ସଫଳତା ହାସଲ କରି ଆସିଛି ।

ଯେଉଁ ରାଧାର ପ୍ରେମମୟ ମୂର୍ତ୍ତି ଆଜି ସର୍ବବାଦୀତ ଓ ଯେଉଁ ରାଧାର

ଐକାନ୍ତିକ ପ୍ରେମ ନିଷ୍ଠା ପରିପ୍ରକାଶରେ ସମଗ୍ର ଭାରତୀୟ ସାହିତ୍ୟ ମୁଖରିତ, ସେ ରାଧାର ଐତିହ୍ୟ କ'ଣ, ଉତ୍ପତ୍ତି କେଉଁଠି ଏବଂ କିପରି ସେ ଅମର ଏତେ ଆପଣାର ହୋଇ ଉଠିଲେ, ସେ କଥା ଏବେ ଆଲୋଚକମାନଙ୍କର ଗବେଷଣାର ବିଷୟ । ଆଲୋଚନାର ଅନ୍ତ ନାହିଁ, କିନ୍ତୁ ନିର୍ଦ୍ଦିଷ୍ଟ ସିଦ୍ଧାନ୍ତର ସୂଚନା ମିଳୁନି । ସେଥିପାଇଁ କୃଷ୍ଣକୈନ୍ଦ୍ରିକ ବୈଷ୍ଣବ ଭକ୍ତି ଧର୍ମଶାସ୍ତ୍ରଗୁଡ଼ିକ ନିଜ ନିଜର ସାମ୍ପ୍ରଦାୟିକ ଆବଶ୍ୟକତା ଦୃଷ୍ଟିରୁ ରାଧାଙ୍କ ସ୍ୱରୂପ ଓ ଶକ୍ତି ବିଷୟରେ ନିର୍ଦ୍ଦିଷ୍ଟ ମତ ନିରୂପଣ କରିଛନ୍ତି । ଏହି ସାମ୍ପ୍ରଦାୟିକ ଧାର୍ମିକ ଚେଷ୍ଟାରେ ଭକ୍ତମାନେ ଐକାନ୍ତିକ ଭକ୍ତି ପ୍ରକାଶ କରୁଥିଲେ ମଧ୍ୟ, ସାଧାରଣ ଆଲୋଚକ ସେହି ଭକ୍ତିପୁଷ୍ଟ ରାଧାତତ୍ତ୍ୱରେ ଆଦୌ ସନ୍ତୁଷ୍ଟ ନୁହନ୍ତି । ତେଣୁ ସେ ରାଧାଙ୍କୁ ଜଣେ ଅସାମାନ୍ୟା ପ୍ରେମମୟୀ ନାରୀ ଭାବରେ ଦେଖିଛି । ସେଥିରେ ସେ ପାଇଛି ଚିରନ୍ତନ ନାରୀର ଅନନ୍ତ ରୂପପିପାସା, ଓ ଜୀବନ୍ତ ଦେହର ଅସରନ୍ତି କ୍ଷୁଧା । କିନ୍ତୁ ପ୍ରଶ୍ନ ଉଠେ, ରାଧା ଯଦି ଜଣେ ସାମାନ୍ୟା ନାରୀ ତେବେ ତାଙ୍କର ଜନ୍ମସ୍ଥାନ କେଉଁଠି ? ବଂଶ, ପରିବାର ତଥା ଗୋତ୍ର କ'ଣ ? କେଉଁ ଦେଶରେ ଓ କେତେବେଳେ ସେ ଜନ୍ମ ଗ୍ରହଣ କରିଥିଲେ— ଏ ସମସ୍ତ ଐତିହାସିକ ତଥ୍ୟର ଉନ୍ମୋଚନ କରିବା କାହା ପକ୍ଷରେ ହେଲେ ସମ୍ଭବପର ହୋଇନାହିଁ । ଯଦି ରାଧାଙ୍କୁ ଉପାସ୍ୟା — ପ୍ରେମମୟୀ — ଦେବୀ କହିବା, ତେବେ ବି ସାହିତ୍ୟରେ ଓ ଧର୍ମଚେତନାରେ ତାଙ୍କର ଆବିର୍ଭାବ, ଜିଜ୍ଞାସାର ବିଷୟ ହୋଇ ରହିଛି । ନାନା ମୁନିଙ୍କ ନାନାମତ, ବିଷୟଟିକୁ ଅତ୍ୟନ୍ତ ଜଟିଳ କରି ପକାଇଛି ।

ଭାରତୀୟ ସାହିତ୍ୟ ଓ ଧର୍ମୀୟ ଚେତନାରେ ରାଧାଙ୍କ ଆଦ୍ୟ ଉନ୍ମେଷ ବିଷୟ ନେଇ ଡ଼କ୍ଟର ଭଣ୍ଡାରକର କହନ୍ତି, ସିରିଆରୁ ଆସିଥିବା ଆଭୀର ସମ୍ପ୍ରଦାୟରେ ପ୍ରଚଳିତ ବାଳକୃଷ୍ଣ ପୂଜା ଓ ପ୍ରେମମୟୀ ରାଧା, କାଳକ୍ରମେ ଆର୍ଯ୍ୟ ଧର୍ମଧାରଣାରେ ପ୍ରବେଶ ଲାଭ କରିଛନ୍ତି । (୧) । କେତେକଙ୍କ ମତରେ ସାଂଖ୍ୟ ଦର୍ଶନର ପ୍ରକୃତି ପୁରୁଷ ବାଦ (୨) ରାଧାକୃଷ୍ଣ ପରିକଳ୍ପନାର ମୂଳାଧାର । ଶ୍ରୀ ଯୋଗେଶଚନ୍ଦ୍ର ରାୟ କୃଷ୍ଣଲୀଳା ସହିତ ସମ୍ପୃକ୍ତ ସମସ୍ତ ନାମାବଳୀ, ଯଥା— ଅନୁରାଧା, ଜ୍ୟେଷ୍ଠା, ଚିତ୍ରା, କୃତ୍ତିକା (କାର୍ତ୍ତିକା), ରୋହିଣୀ, ରେବତୀ ଇତ୍ୟାଦିର ସମ୍ପର୍କ ଜ୍ୟୋତିଃ ଶାସ୍ତ୍ର-ଗତ ନକ୍ଷତ୍ର ବିଦ୍ୟାରେ ଉପଲବ୍ଧ ହେଉଥିବାରୁ, ରାଧାଙ୍କ ଉତ୍ପତ୍ତି ତତ୍ତ୍ୱ ଜ୍ୟୋତିଃ ଶାସ୍ତ୍ରପରକ ବୋଲି କେତେକ ଯୁକ୍ତି ଉପସ୍ଥାପିତ କରିଛନ୍ତି ।(୩) କିନ୍ତୁ ଏ ସମସ୍ତ ପରିକଳ୍ପନା ବାସ୍ତବ ସମସ୍ୟାର ସମାଧାନରେ ଯୁକ୍ତିସିଦ୍ଧ ଦିଗ୍‌ଦର୍ଶନ ଦେଇ ପାରିନଥିବାରୁ ଏଗୁଡ଼ିକ ଆଜି ପ୍ରାୟ ପରିତ୍ୟକ୍ତ ବୋଲି କହିଲେ ଅତ୍ୟୁକ୍ତି ହେବନାହିଁ । ବିଷୟ ବସ୍ତୁର ବ୍ୟାପକତା ଦୃଷ୍ଟିରୁ ଏତଦ୍ ସମ୍ପର୍କୀୟ ସମସ୍ତ ତଥ୍ୟ

ଏହି ପ୍ରବନ୍ଧରେ ଧାର୍ମିକ କଳେବର ମଧ୍ୟରେ ଉପସ୍ଥାପିତ କରାଯାଇ ପାରିବନାହିଁ । ଏଣୁ ଆଲୋଚନାର ସୌକର୍ଯ୍ୟ ଦୃଷ୍ଟିରୁ ରାଧାଙ୍କ ବିଷୟ ଆଲୋଚିତ ହୋଇଥିବା ସମଗ୍ର ସଂସ୍କୃତ, ପ୍ରାକୃତ ଓ ପ୍ରାଦେଶିକ ସାହିତ୍ୟକୁ ସମୟାନୁକ୍ରମେ ତିନି ସ୍ତରରେ ବିଭକ୍ତ କରାଯାଇ ପାରେ ।

ରାଧା କଥା ଚର୍ଚ୍ଚା କରିବାକୁ ଗଲେ ସର୍ବପ୍ରଥମେ ଜୟଦେବଙ୍କ 'ଗୀତଗୋବିନ୍ଦ' କାବ୍ୟ ମନକୁ ଆସେ । କୃଷ୍ଣାଶ୍ରୟୀ ବୈଷ୍ଣବ ସମ୍ପ୍ରଦାୟର ଭକ୍ତଗଣ ଓ ସାହିତ୍ୟ ରସିକ ପାଠକମାନେ 'ଗୀତଗୋବିନ୍ଦ'ରେ ପ୍ରେମମୟୀ ମୂର୍ତ୍ତି ରାଧାଙ୍କର ଯେଉଁ ଚମତ୍କାର ତଥା ସର୍ବାଙ୍ଗୀନ ଚିତ୍ର ଦେଖିବାକୁ ପାଆନ୍ତି, ତାହା ତା ପୂର୍ବରୁ କେଉଁଠି ହେଲେ ଚିତ୍ରିତ ହୋଇ ନ ଥିଲା । ଖ୍ରୀଷ୍ଟାବ୍ଦ ୧୧୫୦ ବେଳକୁ ଉତ୍କଳର ଗଙ୍ଗବଂଶୀ କାମାର୍ଣ୍ଣବ ଦେବଙ୍କ ସମୟରେ 'ଗୀତଗୋବିନ୍ଦ' ରଚିତ ହୋଇଥିବାର ନିର୍ଦ୍ଦିଷ୍ଟ ପ୍ରମାଣ ରହିଛି (୮) । ଅବଶ୍ୟ ତା ପୂର୍ବରୁ ପ୍ରଥମ ଶତାବ୍ଦୀ ଠାରୁ ଦ୍ୱାଦଶ ଶତାବ୍ଦୀ ମଧ୍ୟରେ ଲିଖିତ ଏକୋଇଶିଟି ସଂସ୍କୃତ ଓ ପ୍ରାକୃତ ଗ୍ରନ୍ଥ, ଶିଳାଲେଖ ତଥା ତାମ୍ର ଶାସନରେ ରାଧାଙ୍କ ନାମୋଲ୍ଲେଖ ଦେଖିବାକୁ ମିଳେ (୫) । ଏହି ଗ୍ରନ୍ଥମାନଙ୍କରେ ଥିବା କୌଣସି କୌଣସି ଶ୍ଳୋକର ସାମାନ୍ୟତମ ବର୍ଣ୍ଣନାରୁ ରାଧାଙ୍କ ବିଷୟରେ ଏତିକି ଧାରଣା କରି ହୁଏଯେ ରାଧା ଗୋକୁଳର ଜଣେ ଅପରୂପ ସୁଷମା ବିମଣ୍ଡିତା ଲାବଣ୍ୟମୟୀ ଗୋପିକା ଥିଲେ । କାଳିନ୍ଦୀ ସାଗର ପ୍ରାକୃତିକ ଶୋଭା ପରିପୂର୍ଣ୍ଣ ପରିବେଶରେ କେଳି କଦମ୍ବ ଲତା କୁଞ୍ଜରେ ଲୁଚି ଲୁଚି କୃଷ୍ଣଙ୍କ ସହିତ ଅହରହ ପ୍ରେମଲୀଳାରେ ମଗ୍ନ ଥିଲେ । କୃଷ୍ଣ ପର-ପୁରୁଷ ଥିଲେ ଓ ରାଧା ପରକୀୟା ନାରୀ ଥିଲେ । ତଥାପି ପ୍ରେମର ନିବିଡ଼ତା ଓ ପରସ୍ପର ପ୍ରତି ପ୍ରଚଣ୍ଡ ଆକର୍ଷଣ ଦ୍ୱାରା ସେମାନେ ସମସ୍ତ ବାଧାବିଘ୍ନ ଅତିକ୍ରମ କରି ବାରମ୍ବାର ମିଳିତ ହେଉଥିଲେ । ରାଧା ଗୋପିକାମାନଙ୍କ ମଧ୍ୟରେ ଶ୍ରେଷ୍ଠ ଥିଲେ, ଓ ବେଳେବେଳେ ସେ ଖଣ୍ଡିତା ନାୟିକା ଭାବରେ ଆତ୍ମମାନର ଗୁରୁତ୍ୱ ପ୍ରକାଶ କରୁଥିଲେ । ରାଧାଙ୍କ ବିଷୟରେ ଦ୍ୱାଦଶ ଶତାବ୍ଦୀ ପର୍ଯ୍ୟନ୍ତ ମିଳୁଥିବା ବିଭିନ୍ନ ସାହିତ୍ୟିକ ସୂଚନା ଓ ଐତିହାସିକ ତଥ୍ୟ ପର୍ଯ୍ୟାଲୋଚନା କରି ରାଧାଙ୍କର ଯେଉଁ ସାମଗ୍ରିକ ଚିତ୍ରଟି ଉପରେ ଉପସ୍ଥାପିତ କରାଯାଇଛି, ସେଥିରୁ ରାଧାଙ୍କ ଦେବୀତ୍ୱ ଆଦୌ ସୂଚିତ ହେଉନାହିଁ । ସେ ଯେ ଜଣେ କୃଷ୍ଣ ପ୍ରେମ-ପାଗଳିନୀ ନାରୀ ଥିଲେ, ଏହା ନିର୍ଦ୍ଦିଷ୍ଟ ଭାବରେ ନିର୍ଦ୍ୱନ୍ଦ୍ୱରେ ପ୍ରତିପାଦିତ ହେଉଛି ।

ଏଠାରେ ମନେରଖିବାର କଥା କେତେକ ଆଲୋଚକ ଅତ୍ୟଧିକ ଉତ୍ସାହର

ବଶବର୍ତ୍ତୀ ହୋଇ ବେଦରେ ରାଧାଙ୍କ ଅସ୍ତିତ୍ୱ ପ୍ରତିଷ୍ଠା କରିବା ପାଇଁ ଯଥେଷ୍ଟ ଉଦ୍ୟମ କରିଛନ୍ତି । କିନ୍ତୁ ସେମାନଙ୍କର ଏହି ପ୍ରଚେଷ୍ଟା ବ୍ୟର୍ଥତାରେ ପରିଣତ ହୋଇଛି । ଅନ୍ୟ ପକ୍ଷରେ କହିବାକୁ ଗଲେ ବେଦରେ ଶୃଙ୍ଗାରିକ (Passonate) ଭକ୍ତିର ଯଥେଷ୍ଟ ସୂଚନା ମିଳେ (୬) । ଏହି ପରମ୍ପରାର ସମୁଜ୍ଜ୍ୱଳ ନିଦର୍ଶନ ବହୁ ପ୍ରାଚୀନ ତାମିଲ ଭାଷାର 'ଆଲ ୱାର' ଭକ୍ତ ଙ୍କ (5th Cent) ରଚିତ ପ୍ରେମଗୀତିକାରେ ଦେଖିବାକୁ ମିଳେ (୭) । ପରବର୍ତ୍ତୀ ପୁରାଣ ମାନଙ୍କରେ ଏହି ପରମ୍ପରାର ସଂରକ୍ଷଣ ଓ ଯଥେଷ୍ଟ ଅଭିବୃଦ୍ଧି ସାଧିତ ହୋଇଛି । ଭାଗବତ ପୁରାଣ ଏ କ୍ଷେତ୍ରରେ ସର୍ବଶ୍ରେଷ୍ଠ ଏବଂ ଏହାହିଁ ପରବର୍ତ୍ତୀ ଅସଂଖ୍ୟ କୃଷ୍ଣଲୀଳାତ୍ମକ ସାହିତ୍ୟର ମୂଳ ଉତ୍ସ ଭାବରେ ସ୍ୱୀକୃତ ।

ଯଦ୍ୟପି 'ଆଲୱାର' ଭକ୍ତମାନଙ୍କ କବିତାରେ ସ୍ପଷ୍ଟ ଭାବରେ 'ରାଧା'ଙ୍କ ନାମୋଲ୍ଲେଖ କରାଯାଇ ନାହିଁ, ତଥାପି ସେମାନଙ୍କ ଦ୍ୱାରା ରଚିତ ପ୍ରାୟ ସୃଷ୍ଟିକାର ସ୍ତରରେ ଅନ୍ୟାନ୍ୟ ଗୋପିକାମାନଙ୍କ ସହିତ ଶ୍ରୀକୃଷ୍ଣ ଓ ଗୋଟିଏ ପ୍ରମୁଖ ଗୋପୀର ବର୍ଣ୍ଣନା ଦେଖିବାକୁ ମିଳେ । ଏହି ପ୍ରମୁଖ ଗୋପିକାର ନାମ "ନାପ୍‌ପିନାଇ" । ଅନୁମାନ କରାଯାଏ ଏହାର ପରବର୍ତ୍ତୀ ନାମାନ୍ତର ହିଁ ରାଧା । ଏହି ପଦ୍ୟମାନଙ୍କରେ ଶ୍ରୀକୃଷ୍ଣହିଁ ଏକମାତ୍ର ପୂଜ୍ୟ ପୁରୁଷ ଭାବେ ଚିତ୍ରିତ । ଭକ୍ତ କବିଗଣ ନିଜକୁ ନାୟିକା (ସ୍ତ୍ରୀ) ଭାବରେ ଗ୍ରହଣ କରି ନିଜ ନିଜର ଐକାନ୍ତିକ ପ୍ରେମ ନିବେଦନ କରିଛନ୍ତି । ତତ୍ ପରବର୍ତ୍ତୀ ଶ୍ରୀମଦ୍ ଭାଗବତରେ ଗୋପୀ କୃଷ୍ଣଲୀଳାର ବିଶଦ ବିସ୍ତାର ଦେଖିବାକୁ ମିଳେ । ଭାଗବତ ନୀତିଗତ ଭାବେ ଗ୍ରହଣ କରିଛି ଯେ, ଗୋପୀମାନେ କୃଷ୍ଣଙ୍କ ପ୍ରତି କେବଳ କାମଭାବ ପ୍ରକାଶ କରି ମୁକ୍ତି ପାଇଲେ (୮) । ଏଥିରେ ବର୍ଣ୍ଣିତ ରାସଲୀଳାରେ କୃଷ୍ଣ ଓ ଗୋପିକାମାନଙ୍କ ମଧ୍ୟରେ ଘଟିଥିବା ବହୁ ଦୁର୍ବାର ବାସନାଦୀପ୍ତ ଶୃଙ୍ଗାରିକ ସମ୍ଭୋଗ ବର୍ଣ୍ଣନା ଦେଖିବାକୁ ମିଳେ । ଏଥିରେ ମଧ୍ୟ ଗୋଟିଏ ବିଶିଷ୍ଟ ଗୋପିକାର କୃଷ୍ଣଙ୍କ ପ୍ରତି ଅନନ୍ୟ ଅନୁରକ୍ତି ପ୍ରକାଶିତ ହୋଇଅଛି । ସେହି ବିଶିଷ୍ଟ ଗୋପିକାଟି ନିଶ୍ଚିତଭାବେ 'ରାଧା' ବୋଲି ଆଲୋଚକମାନେ ମନେ କରନ୍ତି । ଏଠାରେ ଦେଖିବାର କଥା ଜୟଦେବଙ୍କ ଆବିର୍ଭାବ କାଳ ଦ୍ୱାଦଶ ଶତାବ୍ଦୀ ପୂର୍ବରୁ ଗୋପୀ ଓ କୃଷ୍ଣଙ୍କ ମଧ୍ୟରେ କାମଲୀଳା ପୂର୍ଣ୍ଣ ଶୃଙ୍ଗାରିକ ଭକ୍ତି ଚେତନାର ଯଥେଷ୍ଟ ବ୍ୟାପ୍ତି ଘଟିଥିଲେ ମଧ୍ୟ ଏ ବର୍ଣ୍ଣନା ପ୍ରବାହରେ ରାଧାଙ୍କ ନାମର ଉଲ୍ଲେଖ ନାହିଁ ।

ଅପର ପକ୍ଷରେ ପୂର୍ବରୁ ଆଲୋଚିତ ଏକୋଇଶିଟି ଗ୍ରନ୍ଥର ପ୍ରେମ ବ୍ୟାପାର ବର୍ଣ୍ଣନାରେ କୃଷ୍ଣଙ୍କ ସହିତ ରାଧାଙ୍କ ନାମ ଉଲ୍ଲେଖ ହୋଇଥିଲେ ମଧ୍ୟ ସେଥିରେ ଶୃଙ୍ଗାରିକ ଭକ୍ତି ଚେତନାର କୌଣସି ସୂଚନା ନାହିଁ । ଏତିକିବେଳେ କବି ଜୟଦେବ ଆବିର୍ଭୂତ ହୋଇ ତାଙ୍କର ସୃଜନାତ୍ମକ 'ଗୀତଗୋବିନ୍ଦ' ରେ ଏହି ଦୁଇ ତତ୍ତ୍ୱର ମଧୁର ସମନ୍ୱୟ ବିଧାନ କଲେ । ସାହିତ୍ୟ ଓ ଧର୍ମୀୟ ଚେତନାରେ ନୂତନ ଯୁଗ ପ୍ରବର୍ତ୍ତନ କଲେ, ସାହିତ୍ୟ ରାଜ୍ୟର ସୁପ୍ରସିଦ୍ଧ ପ୍ରେମମୟୀ ସାମାନ୍ୟ ନାରୀ ରାଧା, ଦେବୀତ୍ୱ ଗରିମା ଅର୍ଜନ କରିବା ସଙ୍ଗେ ସଙ୍ଗେ ଭକ୍ତମାନଙ୍କ ଦ୍ୱାରା ଆରାଧିକା ହୋଇ ଉଠିଲେ । ମାନବୀ ରାଧାଙ୍କୁ ଦେବୀତ୍ୱ ଦୀପ୍ତିରେ ଉଦ୍ଭାସିତ କରିବାରେ ଭକ୍ତ କବି ଜୟଦେବଙ୍କ ଅବଦାନ ଅବିସମ୍ବାଦିତ । ସାହିତ୍ୟ ରସିକ ମହଲରେ ଏବଂ ଶୃଙ୍ଗାରୀ ଭକ୍ତ ସମ୍ପ୍ରଦାୟମାନଙ୍କରେ 'ଗୀତଗୋବିନ୍ଦ'ର ସୃଜନାତ୍ମକ ପ୍ରଭାବ ବର୍ଣ୍ଣନାର ବିଷୟ ନୁହେଁ ।

ଏଠାରେ ପ୍ରଶ୍ନ ଉଠେ ଗୀତଗୋବିନ୍ଦର ପ୍ରଣେତା କବି ଜୟଦେବ ହରି ସ୍ମରଣ ଚେତନ ଭକ୍ତ ଓ ବିଳାସ କୁତୂହଳୀ ସାଧାରଣ ପାଠକମାନଙ୍କର ତୃପ୍ତି ସାଧନ ପାଇଁ ଯେଉଁ ଅନବଦ୍ୟ କାବ୍ୟ ଖଣ୍ଡିକ ସୃଷ୍ଟି କରିଗଲେ, ତାହା କ'ଣ ସ୍ୱାଭାବିକ ଭାବେ ଆତ୍ମପ୍ରକାଶ କରିଥିଲା ? ନା ରାଧା ଭାବର ଏହି ପରିଣତି ପାଇଁ କିଛି ଅନିବାର୍ଯ୍ୟ ଐତିହାସିକ, ସାମାଜିକ ତଥା ସାଂସ୍କୃତିକ ପରିବେଶ ଦାୟୀ ? ଏ ବିଷୟରେ ସମ୍ୟକ ଆଲୋଚନା ଅନ୍ୟତ୍ର କରାଯାଇଛି । ଏଠାରେ ଏତିକି କହିଲେ ଯଥେଷ୍ଟ ହେବ ଯେ, କେହି କେହି ଜୟଦେବଙ୍କୁ ବୈଷ୍ଣବ ସହଜିଆ ଭାବରେ ଗ୍ରହଣ କରି, ସହଜିଆ ଗୁହ୍ୟ ସାଧନାର ପରିପୋଷକ ତଥା ପ୍ରଚାରକ ଭାବରେ ଗୀତଗୋବିନ୍ଦର ମହତ୍ତ୍ୱ ପ୍ରତିପାଦନ କରନ୍ତି । ବୈଷ୍ଣବ ସହଜିଆ ଧର୍ମରେ ପୁରୁଷତତ୍ତ୍ୱ ଓ ସ୍ତ୍ରୀତତ୍ତ୍ୱର ପ୍ରତିପାଦନ ପ୍ରସଙ୍ଗରେ କୃଷ୍ଣଙ୍କ ଓ ରାଧାଙ୍କର ଉଲ୍ଲେଖ ଦେଖିବାକୁ ମିଳେ । ଏଠାରେ କୃଷ୍ଣ ଓ ରାଧା 'ରସ' ଓ 'ରତି' ଭାବରେ ସ୍ୱୀକୃତ । ଏହି ଗୁହ୍ୟ ସାଧନା ଅନୁସାରେ ପ୍ରତ୍ୟେକ ପୁରୁଷ ଓ ସ୍ତ୍ରୀ ନିଜ ନିଜର 'ସ୍ୱରୂପ' ବୋଧ ପାଇଁ ପ୍ରଥମେ ନିଜକୁ କୃଷ୍ଣ ଓ ରାଧା ଭାବରେ ଗ୍ରହଣ କରି ଲୌକିକ ରତିରେ ଲୀନ ହେବା ଏକାନ୍ତ ଆବଶ୍ୟକ । କ୍ରମଶଃ ଏହି ଲୌକିକ କାମ-ରତି ଅଲୌକିକ ପ୍ରେମରେ ପରିଣତ ହୋଇ ସ୍ୱର୍ଗୀୟ ଆନନ୍ଦ ସୃଷ୍ଟି କରେ । ଏହି ଆନନ୍ଦୋପଲବ୍ଧିର ମୁହୂର୍ତ୍ତ ଗୁଡ଼ିକରେ ପୁରୁଷ 'କୃଷ୍ଣତ୍ୱ' ଓ ସ୍ତ୍ରୀ 'ରାଧାତ୍ୱ' ରେ ସମନ୍ୱିତ ହୋଇ ସ୍ୱରୂପ ର ରହସ୍ୟ ହୃଦୟଙ୍ଗମ କରନ୍ତି । (୯) । ଏହି ଧାର୍ମିକ ପଦ୍ଧତି, ଲୌକିକ ପରକୀୟା ପ୍ରୀତିରେ କାମକଳାର ପ୍ରାଧାନ୍ୟ ସ୍ୱୀକାର କରି ତାହାର ମାଧ୍ୟମରେ ଅଲୌକିକ ପ୍ରେମ ପ୍ରାପ୍ତିରେ ବିଶ୍ୱାସ କରୁଥିବାରୁ

'ଗୀତଗୋବିନ୍ଦ'ର ଶୃଙ୍ଗାରିକ ଭକ୍ତିମୂଳକ ବୈଶିଷ୍ଟ୍ୟ ସହଜିଆ ଗୁହ୍ୟ ସାଧନାର ଅନୁକୂଳ ପରିକଳ୍ପନା ପରି ମନେହେବା ସ୍ୱାଭାବିକ । କିନ୍ତୁ କଷ୍ଟକଳ୍ପିତ ବାସ୍ତବରେ ତାହା ନୁହେଁ । ଜୟଦେବଙ୍କ ପରବର୍ତ୍ତୀ ସହଜିଆ ବୈଷ୍ଣବମାନେ ନିଜ ସାଧନା ପଦ୍ଧତିର ସ୍ୱୀକୃତି ଓ ଲୋକପ୍ରିୟତା ଅର୍ଜନ କରିବା ପାଇଁ ଜୟଦେବଙ୍କୁ "ଆଦିରସିକ" ବୋଲି ପ୍ରଚାର କରିଥିଲେ । କିନ୍ତୁ ଏଥିରେ ଐତିହାସିକ ସତ୍ୟତାର ଏକାନ୍ତ ଅଭାବ ପରିଲକ୍ଷିତ ହୁଏ । ଇତିହାସର ଛାତ୍ରମାନେ ଭଲଭାବେ ଜାଣନ୍ତି ଯେ, ଅପର ବୌଦ୍ଧ ସହଜିଆ ମତବାଦ ( ଯାହାକୁ ତାନ୍ତ୍ରିକ ବୌଦ୍ଧ ବାଦ ମଧ୍ୟ କୁହାଯାଏ ) ଜୟଦେବଙ୍କ ବହୁ ପରବର୍ତ୍ତୀ ସମୟରେ ବୈଷ୍ଣବ ସହଜିଆ ମତବାଦ ଭାବରେ ବିକାଶ ଲାଭ କରିଛି ।

ଅନ୍ୟ ପକ୍ଷରେ କବି ତାଙ୍କ 'ଗୀତଗୋବିନ୍ଦ'ରେ କପରି, କାହିଁକି ଓ କେଉଁ ପରିସ୍ଥିତିରେ ଲୌକିକ ରାଧାଙ୍କୁ ଅଲୌକିକତା ପ୍ରଦାନ କଲେ ଏ ସବୁ ବିଷୟରେ ସତ୍ୟାନୁସନ୍ଧାନ କରିବାକୁ ହେଲେ ଜୟଦେବଙ୍କ ଜନ୍ମସ୍ଥାନ, କର୍ମଭୂମି ସାଧନା ପଦ୍ଧତି ତଥା ଧର୍ମ ବିଶ୍ୱାସ ଉପରେ ଯଥେଷ୍ଟ ଆଲୋକପାତ କରିବାକୁ ହେବ । ଉତ୍କଳରେ ଜୟଦେବଙ୍କ ଜନ୍ମସ୍ଥାନ ଓ କର୍ମଭୂମି ଥିଲା - ଏ ବିଷୟରେ ବହୁ ଆଲୋଚନା ହୋଇସାରିଛି (୧୦) । ଦ୍ୱାଦଶ ଶତାବ୍ଦୀର ପ୍ରଥମାର୍ଦ୍ଧରେ ମହାପରାକ୍ରମୀ ଉତ୍କଳର ରାଜା ଅନଙ୍ଗଭୀମ ଦେବ ଦ୍ୱିତୀୟଙ୍କ ଦ୍ୱାରା ପୁରୀର ଜଗନ୍ନାଥ ମନ୍ଦିର ତିଆରି ହୋଇ ସାରିବା ପରେ ବହୁ ସାମ୍ପ୍ରଦାୟିକ ମତବାଦର ସମ୍ମିଶ୍ରଣରେ ସୁସମୃଦ୍ଧ ଜଗନ୍ନାଥ ଧର୍ମର ପ୍ରତିଷ୍ଠା ଓ ପ୍ରଚାର ହେବାକୁ ଲାଗିଲା । ଅନଙ୍ଗଭୀମ ଦେବ ପରମବୈଷ୍ଣବ ଓ ଦୁର୍ଗାଙ୍କ ବରପୁତ୍ର ଥିଲେ । ଏଣୁ ସେ ସମୟରେ ଶ୍ରୀବୈଷ୍ଣବ ଧର୍ମ ତଦାନୀନ୍ତନ ପ୍ରଚଳିତ ଶାକ୍ତ ଓ ବୌଦ୍ଧ ମହାଯାନୀ ଚିନ୍ତାଧାରାକୁ ନିଜର ଅନ୍ତର୍ଗତ କରିନେଇ ଥିଲା । ଜଗନ୍ନାଥ ମନ୍ଦିର ବେଢ଼ାରେ ବିମଳାଙ୍କ ମନ୍ଦିର ପ୍ରତିଷ୍ଠା ଜଗନ୍ନାଥ ଧର୍ମ ଦର୍ଶନରେ ନବଧର୍ମ ସମନ୍ୱୟର ଏକ ପ୍ରକୃଷ୍ଟ ଉଦାହରଣ । ଚୋଡ଼ଗଙ୍ଗ ଦେବ ଓ ତାଙ୍କ ପୁଅ କାମାର୍ଣ୍ଣବ ଦେବ ଶ୍ରୀବୈଷ୍ଣବ ଧର୍ମ ସମ୍ପ୍ରଦାୟର ପ୍ରବର୍ତ୍ତକ ରାମାନୁଜଙ୍କ ଶିଷ୍ୟ ଥିଲେ । ବର୍ତ୍ତମାନର ଆନ୍ଧ୍ରପ୍ରଦେଶ ଶ୍ରୀକାକୁଲମ ଜିଲ୍ଲାରେ ଶ୍ରୀକୂର୍ମମ ପ୍ରଥମେ ଶ୍ରୀ ସମ୍ପ୍ରଦାୟର ଓ ବିଶେଷ କରି ସମ୍ମିଳିତ ଜଗନ୍ନାଥ ଧର୍ମର ପ୍ରଧାନ ପୀଠ ଥିଲା । ଗଙ୍ଗରାଜା ମାନେ ଏହାର ପୃଷ୍ଠପୋଷକ ଥିଲେ । ବୈଷ୍ଣବ ଗୁରୁମାନେ ଏହି ଆସ୍ଥାନରେ ରହି ଧର୍ମ ପ୍ରଚାର କାର୍ଯ୍ୟରେ ଲିପ୍ତ ଥିଲେ । କବି ଜୟଦେବ ମଧ୍ୟ ଏହି ପୀଠ ସହିତ ସମ୍ପୃକ୍ତ ଥିଲେ । ଜଗନ୍ନାଥ ଧର୍ମ ମଧ୍ୟରେ ଶୈବ, ଶାକ୍ତ ଓ ବୌଦ୍ଧ ଚିନ୍ତାଧାରାକୁ ଉଦାରଭାବେ ଅନ୍ତର୍ଭୁକ୍ତ କରାଯାଇଥିଲା । ଜୟଦେବ ଜଣେ କୃଷ୍ଣଭକ୍ତ ବୈଷ୍ଣବ

କରୁ ଥିଲେ ଏବଂ କୃଷ୍ଣ ସ୍ୱୟଂ ଜଗନ୍ନାଥ ଭାବେ ଆଗରୁ ସ୍ୱୀକୃତ ହୋଇ ସାରିଥିଲେ । ବୈଷ୍ଣବମାନେ ବିଷ୍ଣୁଙ୍କ ଶକ୍ତି ଭାବରେ 'ଯୋଗମାୟାଙ୍କୁ ' ପରିକଳ୍ପନା କରିଛନ୍ତି । ପରେ ଶ୍ରୀବୈଷ୍ଣବମାନଙ୍କ ଦ୍ୱାରା ଜଗନ୍ନାଥ ଯେତେବେଳେ ନାରାୟଣ ରୂପରେ ଦେଖା ଦେଲେ ସେତେବେଳେ ଯୋଗମାୟା ଲକ୍ଷ୍ମୀରୂପେ ନାରାୟଣଙ୍କ ଶକ୍ତି ଭାବରେ ସ୍ୱୀକୃତ ହେଲେ । ପୁଣି ପରମ୍ପରା କ୍ରମେ ଜଗନ୍ନାଥଙ୍କୁ କୃଷ୍ଣ ଭାବରେ ଗ୍ରହଣ କରାଗଲେ ମଧ୍ୟ କୃଷ୍ଣଙ୍କ କୌଣସି ଶକ୍ତି ପ୍ରତିଷ୍ଠା କରାଯାଇ ନଥିଲା । ସେତେବେଳେ ଧର୍ମ ଜଗତରେ ଶକ୍ତି ଧାରଣାଟି ଏତେ ପ୍ରବଳ ଥିଲା ଯେ ବିନା ଶକ୍ତିର ସାହଚର୍ଯ୍ୟରେ 'ଶକ୍ତିମାନ' ର ପରିକଳ୍ପନା ଅସମ୍ଭବ ଥିଲା । ଏଣୁ କୃଷ୍ଣଭକ୍ତ କବି ଜୟଦେବ ସୁପ୍ରସିଦ୍ଧା କୃଷ୍ଣ ପ୍ରେମିକା - ନାରୀ ରାଧାଙ୍କୁ କୃଷ୍ଣଙ୍କ ଶକ୍ତି ଭାବରେ ପ୍ରତିଷ୍ଠା କରି ଦେବାର ଗୌରବ ଅର୍ଜନ କଲେ । ଫଳରେ ରାଧା-କୃଷ୍ଣ ଯୁଗଳ ମୂର୍ତ୍ତିର ଆରାଧନା, ଯୋଗମାୟା-ବିଷ୍ଣୁ, ଲକ୍ଷ୍ମୀ-ନାରାୟଣଙ୍କ ପରି ପ୍ରତିଷ୍ଠା ଲାଭ କଲା । ଶ୍ରୀବୈଷ୍ଣବମାନଙ୍କ ସାମ୍ପ୍ରଦାୟିକ ଦର୍ଶନରେ ପ୍ରତିଷ୍ଠିତ 'ଲକ୍ଷ୍ମୀ ' ହିଁ ଜୟଦେବଙ୍କ ' ଗୀତଗୋବିନ୍ଦ ' ର ' ରାଧା ' ଭାବରେ ଦେଖା ଦେଇଛନ୍ତି । ଏହାର ପ୍ରମାଣ ସ୍ୱରୂପ ରାମାନୁଜଙ୍କ ଶ୍ରୀବୈଷ୍ଣବ ଧର୍ମର ବହୁ ପ୍ରଭାବ ' ଗୀତଗୋବିନ୍ଦ ' ର ଛତ୍ରେ ଛତ୍ରେ ଦେଖିବାକୁ ମିଳେ । ଉଦାହରଣ ସ୍ୱରୂପ ' ଗୀତଗୋବିନ୍ଦର ' ର ଦ୍ୱାଦଶ ସର୍ଗର ଏକବିଂଶତ ଶ୍ଳୋକଟି ଉଦ୍ଧାର କରାଯାଇ ପାରେ । ସେଥିରେ କୃଷ୍ଣ ରାଧାଙ୍କୁ କହିଛନ୍ତି ଯେ, ସେ ( ରାଧା ) ପୂର୍ବ ଜନ୍ମରେ ଲକ୍ଷ୍ମୀ ଥିଲେ । ସମୁଦ୍ର ବେଳାରେ ସେ (ରାଧା) ତାଙ୍କୁ (କୃଷ୍ଣଙ୍କୁ) ସ୍ୱାମୀ ଭାବରେ ବରଣ କରିବାରୁ ଶିବ ମର୍ମାହତ ହୋଇ ବିଷପାନ କରିଥିଲେ । ଏହା ବ୍ୟତୀତ ଗୀତ ଗୋବିନ୍ଦରେ କୃଷ୍ଣଙ୍କ ଉଦ୍ଦେଶ୍ୟରେ 'ମାଧବ' ଶବ୍ଦଟିର ବହୁ ପ୍ରଚଳନ ଦେଖାଯାଏ । 'ମା' ମାନେ 'ଲକ୍ଷ୍ମୀ' 'ଧବ' ମାନେ 'ସ୍ୱାମୀ' । ମାଧବ (କୃଷ୍ଣ)ଅର୍ଥ ଲକ୍ଷ୍ମୀଙ୍କ ସ୍ୱାମୀ । ଏଠାରେ 'ଲକ୍ଷ୍ମୀ' ରାଧାଙ୍କ ବ୍ୟତୀତ ଆଉ କେହି ନୁହନ୍ତି (୧୧) ।

ଏଣୁ 'ଗୀତଗୋବିନ୍ଦ' ର ' ରାଧାମାଧବ ' ଙ୍କୁ ରାମାନୁଜଙ୍କ ' ଲକ୍ଷ୍ମୀ-ନାରାୟଣ ' ଙ୍କ ସହିତ ସହଜରେ ତୁଳନା କରାଯାଇପାରେ । ସେତେବେଳେ ଶ୍ରୀବୈଷ୍ଣବମାନଙ୍କ ଧର୍ମପୀଠ ଶ୍ରୀକୂର୍ମ ଠାରୁ ମାଧବ ପୂଜା ପଦ୍ଧତି ଓଡ଼ିଶାର ପୁରୀ ଓ କଟକ ଜିଲ୍ଲାରେ କପରି ପ୍ରସାର ପ୍ରତିଷ୍ଠା ଲାଭ କରିଥିଲା ତାର ବହୁ ଐତିହାସିକ ପ୍ରମାଣ ରହିଛି (୧୨) । ଏହିପରି ଭାବେ ଲୌକିକ ସାହିତ୍ୟର କୃଷ୍ଣପ୍ରିୟା ରାଧା ଜୟଦେବଙ୍କ ଦ୍ୱାରା କୃଷ୍ଣପ୍ରିୟା ଦେବୀ ଭାବରେ ଅଧିଷ୍ଠିତା

ହୋଇସାରିବା ପରେ ନିମ୍ବାର୍କ, ବିଷ୍ଣୁସ୍ୱାମୀ ଓ ମାଧ୍ୱାଚାର୍ଯ୍ୟ ସେମାନଙ୍କର ଦାର୍ଶନିକ ସିଦ୍ଧାନ୍ତ ମାଧ୍ୟମରେ 'ରାଧାକୃଷ୍ଣ' ତତ୍ତ୍ୱଧାରାକୁ ପ୍ରତିଷ୍ଠିତ କରିବା ପାଇଁ ଚେଷ୍ଟା କରିଛନ୍ତି ! ଏହା ସତ୍ତ୍ୱେ ବହୁ ଐତିହାସିକ କାରଣ ଯୋଗୁଁ ରାଧା, ଚୈତନ୍ୟଙ୍କ ପୂର୍ବ ଆଗମନ ଯାଏଁ ସମସ୍ତଙ୍କ ଆଦରର ପାତ୍ରୀ ହୋଇ ପାରି ନଥିଲେ । ଚୈତନ୍ୟଙ୍କ ଆବିର୍ଭାବ [୧୫୦୯ ଖ୍ରୀଷ୍ଟାବ୍ଦ] ରାଧା ଭାବର ଭୂୟୋ ବିକାଶ ଘଟାଇଲା । ତଥାପି ଚୈତନ୍ୟଙ୍କ 'ଅଚିନ୍ତ୍ୟ ଭେଦାଭେଦ - ବାଦ'ର ଦାର୍ଶନିକ ସିଦ୍ଧାନ୍ତ ଦୃଷ୍ଟିରୁ ପ୍ରଚଳିତ ପ୍ରସ୍ଥାନ ତ୍ରୟୀ ଉପରେ ଭାଷ୍ୟ ଉପସ୍ଥାପିତ କରାଯାଇ ନଥିବାରୁ ସେ ସମୟର ପଣ୍ଡିତ ମଣ୍ଡଳୀ ଚୈତନ୍ୟଙ୍କ ମତକୁ ଗୋଟିଏ ଦାର୍ଶନିକ ସାମ୍ପ୍ରଦାୟିକ ସିଦ୍ଧାନ୍ତ ଭାବେ ଗ୍ରହଣ କରି ନ ଥିଲେ । ୧୭୪୦ ଖ୍ରୀଷ୍ଟାବ୍ଦରେ ରାଜସ୍ଥାନର ଜୟପୁରଠାରେ ଅନୁଷ୍ଠିତ ହୋଇଥିବା ମହାଭାରତୀୟ ଧର୍ମ ସମ୍ମେଳନରେ ଓଡ଼ିଶାର ଚୈତନ୍ୟପନ୍ଥୀ ବୈଷ୍ଣବ ଦାର୍ଶନିକ ଶ୍ରୀବଳଦେବ ବିଦ୍ୟାଭୂଷଣ ଚୈତନ୍ୟ ମତବାଦ ଦୃଷ୍ଟିରୁ ପ୍ରସ୍ଥାନତ୍ରୟୀ ଉପରେ ପାଣ୍ଡିତ୍ୟପୂର୍ଣ୍ଣ 'ଗୋବିନ୍ଦଭାଷ୍ୟ' ଉପସ୍ଥାପିତ କରି ସାରିବା ପରେ ଏହା ଏକ ସାମ୍ପ୍ରଦାୟିକ ଦର୍ଶନ ଭାବେ ସ୍ୱୀକୃତ ଓ ମର୍ଯ୍ୟାଦା ଲାଭ କରିବାକୁ ସମର୍ଥ ହେଲା । ସେହିଦିନଠାରୁ ବିଶେଷ ଭାବରେ ପୂର୍ବଭାରତୀୟ ପ୍ରାନ୍ତରେ ରାଧାକୃଷ୍ଣ ଯୁଗଳ ମୂର୍ତ୍ତି ଉପାସନା ସ୍ୱୀକୃତ ହେଲା ଓ ରାଧାକୃଷ୍ଣାଶ୍ରିତ ଶୃଙ୍ଗାର ଭକ୍ତି ଚେତନାର ବନ୍ୟା ସମସ୍ତ ଭାରତ ବର୍ଷରେ ଏପରି ପ୍ରବାହିତ ହେଲା ଯେ, ଲୌକିକ ତଥା ଭକ୍ତ ସମସ୍ତ କବି ରାଧାକୃଷ୍ଣଙ୍କୁ କେନ୍ଦ୍ରକରି ଅହରହ ସାହିତ୍ୟର ଅମୃତ ପ୍ରବାହ ସୃଷ୍ଟି କରିଗଲେ । ସେହିଦିନ-ଠାରୁ ପୂଜା ଓ ଆରାଧନା କ୍ଷେତ୍ରରେ ମଧ୍ୟ ରାଧାକୃଷ୍ଣ ଯୁଗଳ ମୂର୍ତ୍ତିର ପ୍ରଚଳନ ଦେଖିବାକୁ ମିଳେ । ଓଡ଼ିଶାରେ ରାଧାଭାବର ଏତେ ଲୋକପ୍ରିୟତା ସତ୍ତ୍ୱେ ୧୭୪୦ ଖ୍ରୀଷ୍ଟାବ୍ଦ ପୂର୍ବରୁ କେଉଁଠି ହେଲେ ଗୋଟିଏ ରାଧାକୃଷ୍ଣ ଯୁଗଳମୂର୍ତ୍ତିର ସନ୍ଧାନ ଆଜି ପର୍ଯ୍ୟନ୍ତ ମିଳିନାହିଁ । ଏହି ରାଧାକୃଷ୍ଣ ଲୀଳାର ଦାର୍ଶନିକ ସ୍ୱୀକୃତି ବହୁ ଭକ୍ତ କବିଙ୍କୁ ବାତୁଳ କରିଛି ଓ ଶୃଙ୍ଗାରୀ ମଣିଷର ମନ ଓ ଚୈତନ୍ୟର ଦ୍ୱାରବନ୍ଧର ଉଦ୍‌ଘାଟନ କରି ସେଗୁଡ଼ିକୁ ଲଳିତ-କଳାତ୍ମକ ସଫଳ- ରୂପ ପ୍ରଦାନରେ ଅପୂର୍ବ ସୁଯୋଗ ଦେଇଛି ।

ଉପରୋକ୍ତ ଆଲୋଚନାରୁ ସ୍ପଷ୍ଟ ପ୍ରତୀତ ହେଉଛି ଯେ, ଖ୍ରୀଷ୍ଟୀୟ ଦ୍ୱାଦଶ ଶତାବ୍ଦୀ ପର୍ଯ୍ୟନ୍ତ 'ରାଧା' ଲୌକିକ ସାହିତ୍ୟର ଜଣେ କୃଷ୍ଣପ୍ରିୟା ନାୟିକା ଥିଲେ । ଖ୍ରୀଷ୍ଟାବ୍ଦ ୧୧୫୦ ପରେ ଜୟଦେବ ଓ ଅନ୍ୟାନ୍ୟ ଦାର୍ଶନିକ ସମ୍ପ୍ରଦାୟ ମାନେ ତାଙ୍କୁ କୃଷ୍ଣାଙ୍କଶ୍ରୀ ଦେବୀର ଗୌରବ ପ୍ରଦାନ କଲେ । ପୁଣି ୧୭୪୦ ଖ୍ରୀଷ୍ଟାବ୍ଦ

ଠାରୁ ସେ ମୂର୍ତ୍ତି ରୂପରେ ମଧ୍ୟ ଭାରତର ମନ୍ଦିରମାନଙ୍କରେ କୃଷ୍ଣଙ୍କ ସହିତ ପୂଜିତା ହେଲେ । ତା ପରଠାରୁ ଧର୍ମ ଓ ସାହିତ୍ୟରେ ରାଧାଙ୍କର ଯେଉଁ କମନୀୟ ରୂପଟି ବହୁଧା ଚର୍ଚ୍ଚିତ ହୋଇଛି ତାହାର ପଟାନ୍ତର ସମଗ୍ର ଭାରତୀୟ ସାହିତ୍ୟରେ ଆଉ ନାହିଁ ।

ଆଜି ସମଗ୍ର ପାଠକ ମହଲରେ 'ରାଧା' ଗୋଟିଏ ଚମତ୍କାର ମଧୁର ମନକଳ୍ପନା, ପ୍ରେମ ମହାକାଶର ବର୍ଣ୍ଣାଢ଼୍ୟ ବୈଚିତ୍ର୍ୟରେ ସେ ଆଜି ଅନନ୍ୟ ସାଧାରଣ କମନୀୟ ଆତ୍ମସ୍ଥିତ ସାଧନାରେ ଜଣେ ସାର୍ଥକ ତଥା ମନୋଜ୍ଞ ଅଭିବ୍ୟକ୍ତି । ଭାବ କଳ୍ପନାର ମର୍ମସ୍ପର୍ଶୀ, ଭାବୁକ ମନର କୁହୁକିନୀ [illegible] ନାରୀ । ମନେହୁଏ ଏହି ଗୋଟିଏ ରାଧାର ଅଭାବରେ କୋଟିଏ ପ୍ରାଣରେ ଉତ୍କଣ୍ଠା ଆର୍ତ୍ତନାଦ ଅବ୍ୟକ୍ତ ରହିଯାଇଥାନ୍ତା । ଦେହ ମଧ୍ୟଦେଇ ବିଦେହର ଅନୁଭୂତ, ରୂପ ମଧ୍ୟ ଦେଇ ଅପରୂପର ଉପଲବ୍ଧି, ଚିନ୍ତା ମଧ୍ୟ ଦେଇ ଅଚିନ୍ତ୍ୟର ସାକ୍ଷାତକାର ଜ୍ଞାପନ କରିବାକୁ ହୁଏ ତାହାର ସମୁଜ୍ଜ୍ୱଳ ନିଦର୍ଶନ ଭାବରେ ଏହି ରାଧା ଯୁଗେ ଯୁଗେ ଜଞ୍ଜାଳ-ଜଟିଳ-ମାନବ ସମାଜକୁ ଅନୁପ୍ରାଣିତ କରୁଥିବ, ଦିଗ୍‌ଦର୍ଶନ ଦେଉଥିବ !

—୦—

# ସୂଚନା

୧ — Dr. R. G. Bhandarkar — Vaisnavism Saivism and Minor Religious Sects,

୨ — N. K. Sanyal — Erotic Principle and unalloyed Devotion.

୩ — Dr. S. B Dasgupta — obscure Religious Cults.

୪ — Dr. B. Rath — Orissa, The Home land of Jayadeva. Proceedings of the first International Sanskrit Conference. VOL. IV. 1981.

୫ — ଗୀତଗୋବିନ୍ଦ ପୂର୍ବରୁ ସାହିତ୍ୟରେ ଓ ଅଭିଲେଖମାନଙ୍କରେ ରାଧାଙ୍କ ଉଲ୍ଲେଖ —

(1) ହାଳଙ୍କ ଗାଥା ସପ୍ତଶତୀ (ଖ୍ରୀଷ୍ଟୀୟ ପ୍ରଥମ ଶତାବ୍ଦୀ) ନିର୍ଣ୍ଣୟ ସାଗର ପ୍ରେସ ପ୍ରକାଶନ ୧୯୩୩ ପୃ ୪୪

" ମୁଖ ମାରୁତେନ ତ୍ୱଂ କୃଷ୍ଣ ଗୋରଜୋ ରାଧିକାୟାଃ ଅପନୟନ୍ ଏତାସାଂ ବଲ୍ଲବୀନାଂ ଅନ୍ୟାସାମପି ଗୌରବଂ ହରସି"

(2) ବିଷ୍ଣୁଶର୍ମାଙ୍କ ପଞ୍ଚତନ୍ତ୍ର (ପଞ୍ଚମ ଶତାବ୍ଦୀ) ନିର୍ଣ୍ଣୟ ସାଗର ପ୍ରେସ ପ୍ରକାଶନ ୧୯୫୦ ପୃ ୫୪.

" କୌଳିକ (ଭଗବାନ) ଆହ- ସୁଭଗେ . ସତ୍ୟମଭିହିତଂ ଭବତ୍ୟା, କିନ୍ତୁ ରାଧା ନାମ ମେ ଭାର୍ଯ୍ୟା ଗୋକୁଲ ପ୍ରସୂତା ପ୍ରଥମଂ ଆସୀତ୍ ତ୍ୱଂ ଅତ୍ରାବତୀର୍ଣ୍ଣା, ତେନାହଂ ଅତ୍ରାଗତଃ" ।

(3) ଭଟ୍ଟନାରାୟଣଙ୍କ ବେଣୀସଂହାର ( ଅଷ୍ଟମ ଶତାବ୍ଦୀ ) ପ୍ରଥମ ଅଙ୍କ, ନମସ୍କ୍ରିୟା ଶ୍ଳୋକ — ୨

" କାଳିନ୍ଦ୍ୟା ପୁଳିନେଷୁ କେଳି କୁପିତା
ମୁତ୍ସୃଜ୍ୟ ରାସେ ରସମ୍

ଗଚ୍ଛନ୍ତୀ ମନ୍ଦଗଚ୍ଛତ୍ତୋଽଶ୍ରୁ କଳୁଷଂ
କଂସ ଦ୍ୱିଷୋ ରାଧିକାମ୍"

(4) ଆନନ୍ଦ ବର୍ଦ୍ଧନଙ୍କ ଧ୍ୱନ୍ୟାଲୋକ ( ଖ୍ରୀଷ୍ଟୀୟ ୮୭୦ — ୮୯୦ )
ନିର୍ଣ୍ଣୟ ସାଗର ପ୍ରେସ ପ୍ରକାଶନ ୧୯୩୫ ପୃ . ୯୩ .

" ତେଷାଂ ଗୋପବଧୂ ବିଳାସ ସୁହୃଦାଂ ରାଧା ରହଃ ସାକ୍ଷୀଣାମ୍ "
କ୍ଷେମଂ ଭଦ୍ର କଳିନ୍ଦ ଶୈଳ ତନୟା ତୀରେ ଲତା ବେଶ୍ମନାମ୍ "
ସେହି ଗ୍ରନ୍ଥର ପୃ ୨୭୮ରେ

" ଦୁରାରାଧ୍ୟା ରାଧା - - - - - ହରଚନ୍ଦନ ସ୍ୱେମ୍ୱେବ ମୁଦିତା"

(5) ରାଜଶେଖରଙ୍କ କାବ୍ୟ ମୀମାଂସା ( ୮୮୦ - ୯୨୦ ଖ୍ରୀଷ୍ଟାବ୍ଦ )

G . O . S . edn 1934. Chapter XIII P. 71

× × ×

" ତେ ରାଧା ସ୍ତନ ତଟପାକ୍ଷିଣଃ କମଳସ୍ୟା ଦାସସ୍ୟ ମାକଣ୍ଡିତା
ନାତାନ୍ତର୍ଦବଣେ ପ୍ରତପ୍ତ ସକଳାଃ ଶ୍ୱସାହରେଃ ପାରୁବଃ " ।

(6) ତ୍ରିବିକ୍ରମ ଭଟ୍ଟଙ୍କ ନଳଚମ୍ପୂ ( ଖ୍ରୀଷ୍ଟାବ୍ଦ ୯୧୫ )

N. S. P. edn 1931 Chapter IV P.108

ଶିକ୍ଷିତ ବୈଦଗ୍ଧ୍ୟ କଳାପ ରାଧାମ୍ବିକା ପଚପୁରୁଷେ ।
ମାଧ୍ୟାହ୍ନ କୃତ କେଶୀ ବଧେ ରାଗଂ ବଧ୍ନାତ ।

(7) ବଲ୍ଲଭ ଦେବଙ୍କ ଦ୍ୱାରା ଲିଖିତ ଶିଶୁପାଳ ବଧର ଟୀକା ( ଖ୍ରୀଷ୍ଟାବ୍ଦ ୯୫୦) ଚତୁର୍ଥ ସର୍ଗ ଶ୍ଲୋକ ୩୫ (କାଶୀ ସଂସ୍କୃତ ଗ୍ରନ୍ଥମାଳା ୭୯ )

“ କୃଷ୍ଣୋଽପି ସୁଦୃଶାଖ୍ୟାମ୍ୟପହ୍ନୁତଃ ସତ୍ୟଂ ଜଗସ୍ୟାପ୍ୟଧ୍ୟମେ ।
କିଂ ରାଧେ ମଧୁସୂଦନୋ ନନୁ ନନୁ ପ୍ରାଣ ପ୍ରିୟେ୍ୟା ଲୋଚନଃ ” ॥

(୪) ସୋମ ଦେବଙ୍କ ଯଶସ୍ତିଲକ ଚମ୍ପୂ ଖ୍ରୀଷ୍ଟାବ୍ଦ ୯୫୦
“ ... ... ... ତଥାପି ପୂର୍ବସି କିଂ ନବରମେ ଗଙ୍ଗା ହର ମହେଶ୍ୱରେଣ ରାଧା ନାରାୟଣେନ ବୃନ୍ଦାବନ ପତନ ଦ୍ୱିଜରାଜେନ ତାର୍ଗତ ବାଲନା ”

(9) କବୀନ୍ଦ୍ର ବଚନ ସମୁଚ୍ଚୟ, ସଂଗ୍ରହ ଗ୍ରନ୍ଥ ଦଶମ ଶତାବ୍ଦୀ କନକ ନିକଷ ସ୍ୱଚ୍ଛେ ରାଧା ପୟୋଧର ମଣ୍ଡଳେ

(10) K. M. Munshi — Gujarat and its literature p. 176. ଧାରାର ରାଜା ଅମୋଘ ବର୍ଷଙ୍କ ତାମ୍ର ଶାସନ (ଖ୍ରୀଷ୍ଟାବ୍ଦ ୯୮୦) ରେ ରାଧା କୃଷ୍ଣଙ୍କ ପ୍ରିୟା ଭାବରେ ଉଲ୍ଲିଖିତ ହୋଇଛନ୍ତି ।

(11) E.I VOL. XXIII P. 108 Gaonri plates No. 13. of the Paramara King Vakpatimunja Lines 24
ଯଲ୍ଲକ୍ଷ୍ମୀ ବଦନେନ୍ଦୁନା ନ ସୁଖିତଂ ଯନ୍ନାବୃତଂ ବାର୍ଣ୍ଣଯୋଃ

× × ×

ତଦ୍ରାଧା ବିରହାତୁରଂ ମୁରରିପୋର୍ବେଲ୍ଲଦ୍ ବପୁଃ ପାତୁ ବଃ ॥

(12) ଅଭିନବ ଗୁପ୍ତଙ୍କ ଧ୍ୱନ୍ୟାଲୋକ ଲୋଚନ (ଖ୍ରୀଷ୍ଟାବ୍ଦ ୯୮୦-୧୦୭୦)
N. S. P. edn 1935 . P. 128

“ ଯାବଦସ୍ୟ ରାଧାରମଣସ୍ୟାଖିଳ ତରୁଣୀଜନ ଛନ୍ନାନୁରାଗ ଗରିମାସ୍ପଦ ଭୂତଂ ବଦନଂ ତାବଦର୍ଥାନ୍ତରଗତ୍ୟା ପ୍ରସ୍ତୁତେ ଶ୍ଲେଷମିଷ୍ଟ ସୋତ୍ରଃ ।

(13) କୁନ୍ତକଙ୍କ ବକ୍ରୋକ୍ତି ଜୀବିତ ଖ୍ରୀଷ୍ଟାବ୍ଦ ୯୫୦ — ୧୦୦୦
" ତଦ୍‌ଗୀତଂ ଗୁରୁଦାଷ୍ପ ଗଦ୍‌ଗଦଗଳତ୍ ତାରସ୍ୱରଂ ରାଧୟା "

(14) ଧନଞ୍ଜୟଙ୍କ ଦଶରୂପକାବଲୋକ (ଖ୍ରୀଷ୍ଟାବ୍ଦ ୧୦୦୦)
ଦଶରୂପକ ୪/୫୯ — ୬୦

" କେନାସ୍ମିକ ମିଦଂ ତଦାଦ୍ୟ କଥିତଂ ରାଧେ ମୁଧା ତାମ୍ୟସି " ॥

(15) ଭୋଜଙ୍କ ସରସ୍ୱତୀ କଣ୍ଠାଭରଣ (ଖ୍ରୀଷ୍ଟାବ୍ଦ ୧୦୦୫ — ୧୦୫୪)
N. S. P. edn 1934 P. 275
"ରାଧା ବକ୍ଷାସ୍ତମଦ୍ୟାମ୍ " ।

ପୃ ୫୧୧ " ନମ୍ରାଂ ରାଧେ ଦୃଶି ନିପତତା ଦେବକୀ ନନ୍ଦନସ୍ୟ "

(16) କ୍ଷେମେନ୍ଦ୍ରଙ୍କ ଦଶାବତାର ଚରିତ ପୃ ୯୧ ଖ୍ରୀଷ୍ଟାବ୍ଦ ୧୦୬୬

(17) ହେମଚନ୍ଦ୍ରଙ୍କ କାବ୍ୟାନୁଶାସନ ପୃ ୧୧୩ ଏବଂ ୧୧୫
(ଖ୍ରୀଷ୍ଟାବ୍ଦ ୧୦୮୮-୧୧୭୨)

(18) ପ୍ରତାପଚନ୍ଦ୍ର ଚକ୍ରବର୍ତ୍ତୀ ଜଗଦେକ ମଲ୍ଲଙ୍କ ସଙ୍ଗୀତଚୂଡ଼ାମଣି

(19) ଶ୍ରୀହର୍ଷଙ୍କ ନୈଷଧୀୟ ଚରିତ ୨୧/୮୦

(20) ରାମଚନ୍ଦ୍ର ଓ ଗୁଣଚନ୍ଦ୍ରଙ୍କ ନାଟ୍ୟଦର୍ପଣ ପୃ . ୨୧୬

(21) ଗୋବର୍ଦ୍ଧନଙ୍କ ଆର୍ଯ୍ୟା ସପ୍ତଶତୀ ପୃ ୧୬୯

(୬) ଡାଃ ମିଥିଲେଶ କାନ୍ତ ଭକ୍ତି ଶୃଙ୍ଗାର କାସ୍ୱରୂପ

(୭) Cultuaal Heritage of India VOL. II & IV
R. K. Mission Calcutta.

(୮) ଶ୍ରୀମଦ୍ ଭାଗବତ—

" ଗୋପ୍ୟଃ କାମାତ୍ ଭୟାତ୍ କଂସୋ
ଦ୍ୱେଷା ଚୈଦ୍ୟା ଦଧ୍ୟୋନୃପାଃ ।
ଗଚ୍ଛନ୍ତି ପରମାଂ ଗତିମ୍ "

(୯) Dr. S. B. Dasgupta —
Obscure Religious Cults.

(୧୦) Dr' B. Rath — Gitagovind and its Imitations.
Prof. K. V. Sharma Commemoration
Volume V, V. Indological Research
institute Hosiarpun 1981.

(୧୧) Dr. B. Rath — Jayadeva.
The Journal of the Oriental
Research Institute, Mysore University
VOL. IX 1976 & VOL X 1977

(୧୨) ଶ୍ରୀ କେଦାର ନାଥ ମହାପାତ୍ର — ଶ୍ରୀ ଜୟଦେବ ଓ ଶ୍ରୀ
ଗୀତଗୋବିନ୍ଦ ।

—o—

# ମଧୁର ରସଚେତନା

କବି ସଦାନନ୍ଦ ତାଙ୍କର ବ୍ରଜଲୀଳାତ୍ମକ ବହୁ କାବ୍ୟର ବିଭିନ୍ନ ସ୍ଥାନରେ ମଧୁର ରସର (1) ନାମୋଲ୍ଲେଖ କରି କୃଷ୍ଣଚନ୍ଦ୍ରଙ୍କର ମାଧୁର୍ଯ୍ୟ ଲୀଳା (2) ହିଁ ବୈଷ୍ଣବ ଭକ୍ତମାନଙ୍କର ଏକମାତ୍ର ଧ୍ୟେୟ ବସ୍ତୁ ବୋଲି ଘୋଷଣା କରିବା ସଙ୍ଗେ ସଙ୍ଗେ ଶୃଙ୍ଗାର ରସଠାରୁ ମଧୁର ରସର ସ୍ୱାତନ୍ତ୍ର୍ୟ ବିଷୟରେ ଯଥେଷ୍ଟ ସୂଚନା ଦେଇଛନ୍ତି, ଯଦ୍ୟପି ବର୍ଣ୍ଣନାର ପରିପାଟୀରୁ ସାହିତ୍ୟଶାସ୍ତ୍ର ସମ୍ମତ ଶୃଙ୍ଗାର ରସଠାରୁ ଏହାର କୌଣସି ବିଶେଷ ସ୍ୱାତନ୍ତ୍ର୍ୟ ସାଧାରଣ ରସିକ ପାଠକ ଦୃଷ୍ଟିରେ ଧରାପଡ଼େ ନାହିଁ, ତଥାପି ଚୈତନ୍ୟ ପନ୍ଥୀ ବୈଷ୍ଣବ ସମ୍ପ୍ରଦାୟର ପ୍ରବକ୍ତା ଗୋସ୍ୱାମୀମାନଙ୍କ ବିଭିନ୍ନ ଗ୍ରନ୍ଥରେ ଏତଦ୍ ବିଷୟକ ବିସ୍ତୃତ ଆଲୋଚନା (3) ଦେଖିବାକୁ ମିଳେ ।

ସଦାନନ୍ଦ କବିସୂର୍ଯ୍ୟ ବ୍ରହ୍ମା ତାଙ୍କ କାବ୍ୟ ସମୂହର ବହୁ ସ୍ଥଳରେ ଅତ୍ୟନ୍ତ ଭକ୍ତିର ସହିତ ଶ୍ରୀରୂପଗୋସ୍ୱାମୀଙ୍କ ନାମୋଲ୍ଲେଖ କରିବା ସଙ୍ଗେ ସଙ୍ଗେ ତାହାଙ୍କ ଦ୍ୱାରା ଲିଖିତ ବହୁ ସଂସ୍କୃତ ଗ୍ରନ୍ଥର ସବୁ ବୈଷ୍ଣବୀୟ ତତ୍ତ୍ୱ ଓ ତଥ୍ୟ ସଂଗ୍ରହ କରି ନିଜର ଓଡ଼ିଆ କାବ୍ୟ ମାନଙ୍କରେ ଉପସ୍ଥାପିତ କରିଥିବା କଥା ମୁକ୍ତ କଣ୍ଠରେ ସ୍ୱୀକାର କରିଛନ୍ତି (4) । ଶ୍ରୀ ରୂପ ଗୋସ୍ୱାମୀ ତାଙ୍କର ଭକ୍ତି ରସାମୃତ ସିନ୍ଧୁ ଗ୍ରନ୍ଥରେ ମଧୁର ରସର ବିଶ୍ଳେଷଣ କରିବାକୁ ଯାଇ ଲେଖିଛନ୍ତି — " ଆତ୍ମୋଚିତ ବିଭାବାଦି ଦ୍ୱାରା ମଧୁରାରତି ଯେତେବେଳେ ସଦାଶୟ ବ୍ୟକ୍ତିମାନଙ୍କ ହୃଦୟରେ ପୁଷ୍ଟ ହୁଏ ସେତେବେଳେ ଏହାକୁ ମଧୁର ନାମକ ଭକ୍ତିରସ କୁହାଯାଏ । ଅତ୍ୟନ୍ତ ଦୁରୂହ ଓ ରହସ୍ୟମୟ ଏହି ରସ ନିବୃତ୍ତ ଚିତ୍ତ ଲୋକମାନଙ୍କ ପାଇଁ ଅନୁପଯୋଗୀ । ଏହା ଅତ୍ୟନ୍ତ ବିଶାଳ ଓ ବିତତାଙ୍ଗ ହେଲେ ମଧ୍ୟ ଏଠାରେ ସଂକ୍ଷିପ୍ତ ଭାବରେ କୁହାଯାଉଛି " ।

" ଆତ୍ମୋଚିତ ବିଭାବାଦ୍ୟୈ ପୁଷ୍ଟିଂ ନୀତା ସତାଂ ହୃଦି
ମଧୁରାଖ୍ୟୋ ଭବେଦ୍ ଭକ୍ତି ରସୋଽସୌ ମଧୁରାରତିଃ
ନିବୃତ୍ତାନୁପଯୋଗିତ୍ୱାଦ୍ ଦୁରୂହତ୍ୱାଦୟଂ ରସଃ
ରହସ୍ୟତ୍ୱାଚ୍ଚ ସଂକ୍ଷିପ୍ୟ ବିତତାଙ୍ଗୋ ପି ଲିଖ୍ୟତେ "

ଯେଉଁ ସାହିତ୍ୟ ସମାଲୋଚକମାନେ ସାହିତ୍ୟ ଶାସ୍ତ୍ରୀୟ ଶୃଙ୍ଗାର ରସ ନିଷ୍ପତ୍ତିର ଧାରା ବିଷୟରେ ପୂର୍ଣ୍ଣ ସଚେତନ, ସେମାନେ ଜାଣି ରଖିବା ଉଚିତ୍ ଯେ, ଏହି ମଧୁର ନାମକ ଭକ୍ତି ରସରେ କେବଳ ଭଗବତ୍ ବିଷୟକ ରତି ହିଁ ସ୍ଥାୟୀ ଭାବ ହୁଏ । ଭକ୍ତମାନଙ୍କର ସ୍ୱଭାବ ଅନୁସାରେ ଏହି ରତି ପାଞ୍ଚ ପ୍ରକାରର ହୋଇଥାଏ । ଶାନ୍ତ, ଦାସ୍ୟ, ସଖ୍ୟ, ବାତ୍ସଲ୍ୟ ଓ ମଧୁର ସ୍ୱଭାବ ଅନୁସାରେ

ଭକ୍ତମାନେ କ୍ରମାନ୍ୱୟରେ ଶାନ୍ତା, ପ୍ରୀତା, ପ୍ରେୟସୀ, ଅନୁକମ୍ପା, ଓ କାନ୍ତା ରତି ଭାବ ଅନୁଭବ କରିଥାନ୍ତି । ଏ ସବୁ ଯଦି ଜଡ଼ ଜଗତର ବିଷୟ ହୁଅନ୍ତି ତେବେ ଏମାନଙ୍କ ମଧ୍ୟରୁ ଶାନ୍ତା ରତି ସବୁଠାରୁ ଶ୍ରେଷ୍ଠ ବୋଲି ବିବେଚିତ ହୁଏ, ଏବଂ ପ୍ରୀତା, ପ୍ରେୟସୀ, ଅନୁକମ୍ପା ଓ କାନ୍ତା କ୍ରମଶଃ ନ୍ୟୂନ ଭାବରେ ଗୃହୀତ ହୁଅନ୍ତି । ଏହିପରି ସବୁଠାରୁ ନ୍ୟୂନ କାନ୍ତା ବିଷୟକ ରତି ଶୃଙ୍ଗାର ନାମ ଗ୍ରହଣ କରେ । ଜଡ ବିଷୟକ ହେଲେ ଏହା ସବୁଠାରୁ ନିକୃଷ୍ଟ ବୋଲି ଗୃହୀତ ହେଉଥିବା ବେଳେ ଭଗବଦ୍ ବିଷୟକ ହେଲେ ତାହା ( କାନ୍ତା ବିଷୟକ ରତି ) ସବୁଠାରୁ ଉତ୍କୃଷ୍ଟ ବୋଲି ବିବେଚିତ ହୁଏ । ପାରକଥା ହେଲା, ଯେଉଁ ଶୃଙ୍ଗାର ରସକୁ ଜଡ଼ ବିଷୟକ ବୋଲି ବୈଷ୍ଣବମାନେ ଅତ୍ୟନ୍ତ ନିକୃଷ୍ଟ ମନେକରନ୍ତି, ସେହି ଶୃଙ୍ଗାର ରସ ଭଗବଦ୍ ବିଷୟକ ହୋଇ ସର୍ବଶ୍ରେଷ୍ଠ ମଧୁର ରସରେ ପରିଣତ ହୁଏ । ଯଦ୍ୟପି ବୈଷ୍ଣବ ରସ ଶାସ୍ତ୍ର ଅନୁସାରେ ଏହାକୁ ଶୃଙ୍ଗାର କହିବା ଅନୁଚିତ ତଥାପି କେବଳ ବ୍ରଜସୁନ୍ଦରୀ ମାନଙ୍କ ପାଇଁ ଶୃଙ୍ଗାର ଓ ମଧୁର ଏକ ଅଭିନ୍ନ ରସ ଭାବରେ ସ୍ୱୀକୃତ । କାରଣ ସେମାନଙ୍କ ପାଇଁ କାମ ଓ ପ୍ରେମ ମଧ୍ୟରେ କୌଣସି ଭେଦଭାବ ନାହିଁ । ଭକ୍ତିରସାମୃତ ସିନ୍ଧୁରେ ରୂପଗୋସ୍ୱାମୀ ସ୍ପଷ୍ଟଭାବେ ଉଲ୍ଲେଖ କରିଛନ୍ତି ଯେ ଗୋପରମଣୀମାନଙ୍କ 'ପ୍ରେମ'ହିଁ 'କାମ' ପଦବାଚ୍ୟ । —

" ପ୍ରେମୈବ ଗୋପରାମାଣାଂ କାମ ଇତ୍ୟଗମତ୍ ପ୍ରଥମ୍ "

ଭକ୍ତି ଶାସ୍ତ୍ରରେ ଜଡ଼ ବିଷୟକ ଅନୁରାଗକୁ 'କାମ' ଓ ଭଗବଦ୍ ବିଷୟକ ଅନୁରାଗକୁ 'ପ୍ରେମ' କୁହାଯାଏ । ଗୋପୀମାନଙ୍କର ସମସ୍ତ କାମନାର ବିଷୟ ଭଗବାନ୍ ଶ୍ରୀକୃଷ୍ଣ ଥିଲେ । ସେଥିପାଇଁ ସେମାନଙ୍କର କାମଭାବନାକୁ କଦାପି 'ଜଡ଼' ବିଷୟକ କୁହାଯାଇ ପାରିବ ନାହିଁ । ଗୀତଗୋବିନ୍ଦରେ କୃଷ୍ଣଙ୍କ ବର୍ଣ୍ଣନା ପ୍ରସଙ୍ଗରେ କୁହାଯାଇଛି "ବ୍ରଜସୁନ୍ଦରୀମାନଙ୍କ ଦ୍ୱାରା ସ୍ୱଚ୍ଛନ୍ଦ ଭାବରେ ଯାହାର ପ୍ରତ୍ୟେକ ଅଙ୍ଗ ଆଲିଙ୍ଗିତ ହେଉଅଛି, ସେହି କୃଷ୍ଣ ମୂର୍ତ୍ତିମାନ୍ ଶୃଙ୍ଗାର ପରି ମୁଗ୍ଧ ହୋଇ ବସନ୍ତ ଋତୁରେ କ୍ରୀଡ଼ା କରୁଛନ୍ତି" ।

"ସ୍ୱଚ୍ଛନ୍ଦ ବ୍ରଜସୁନ୍ଦରୀଭିରଭିତଃ ପ୍ରତ୍ୟଙ୍ଗ ମାଲିଙ୍ଗିତଃ
ଶୃଙ୍ଗାରଃ ସଖି ମୂର୍ତ୍ତିମାନିବ ମଧୌ ମୁଗ୍ଧୋ ହରିଃକ୍ରୀଡ଼ତି"

ସାକ୍ଷାତ୍ ଶୃଙ୍ଗାର ସ୍ୱରୂପ ଭଗବାନ୍ ମଧୁର ରସର ପ୍ରଧାନ ଅବଲମ୍ବନ । କୃଷ୍ଣଙ୍କ ପ୍ରେୟସୀବର୍ଗଙ୍କ ଦ୍ୱାରା ବର୍ଦ୍ଧିତ ଦେହା ବ୍ରଜସୁନ୍ଦରୀମାନେ ନବନବ ପ୍ରଣୟ ମାଧୁର୍ଯ୍ୟର ଆଧାର ସ୍ୱରୂପା । ସେମାନଙ୍କର ମଧ୍ୟରେ ମହାଭାବ ସାକ୍ଷାତ୍ ମଧୁପ୍ରାଣୀ ସ୍ୱରୂପା ରାଧା ସର୍ବଶ୍ରେଷ୍ଠା ।

ଏଠାରେ ବୈଷ୍ଣବ ରସଶାସ୍ତ୍ର ସମ୍ମତ ଦାର୍ଶନିକ ତତ୍ତ୍ୱ ସମ୍ବଳିତ ପ୍ରକାଣ୍ଡ ଆଲୋଚନାର ଅବତାରଣା ଅସମ୍ଭବ । ସେ ସମସ୍ତ ବ୍ୟାଖ୍ୟା ଓ ବିତର୍କର ନିଷ୍କର୍ଷ ହେଉଛି — ଜଡ ବିଷୟକ ଶୃଙ୍ଗାରାଦି ରସ ସହିତ ଅନିର୍ବଚନୀୟ ମଧୁର ରସର କୌଣସି ତୁଳନା କରାଯାଇନପାରେ । ଏମାନଙ୍କ ମଧ୍ୟରେ ଗୋଟିଏ ସୂକ୍ଷ୍ମ ମୌଳିକ ପ୍ରଭେଦ ରହିଛି । ଗୋସ୍ୱାମୀମାନଙ୍କ ମତରେ ଅଳଙ୍କାର ଶାସ୍ତ୍ରମାନଙ୍କରେ ନିର୍ଦ୍ଦେଶିତ ଶୃଙ୍ଗାରାଦି ରସ କେବଳ ଜଡ଼ ବିଷୟକ ହେବା ସଙ୍ଗେ ସଙ୍ଗେ ସେଗୁଡ଼ିକର ସ୍ଥାୟୀ ଭାବର ସ୍ଥିତି ମଧ୍ୟ ଜଡ ଜୀବରେହିଁ ହୋଇଥାଏ । ସାହିତ୍ୟ ଶାସ୍ତ୍ରରେ କୁହାଯାଇଛି ଯେ ଶୃଙ୍ଗାରାଦି ରସର ସ୍ଥାୟୀ ଭାବ ଇତ୍ୟାଦି ସଂସ୍କାର ରୂପରେ ମନ ମଧ୍ୟରେ ରହିଥାଏ । ଏହି ସଂସ୍କାର ପୂର୍ବଜନ୍ମୋପାର୍ଜିତ ଅଥବା ଇହ ଜନ୍ମରେ ଅର୍ଜିତ ଅନୁଭୂତ ମଧ୍ୟ ହୋଇପାରେ । ପୂର୍ବଜନ୍ମଗତ ସଂସ୍କାର ସୂକ୍ଷ୍ମ ବା ଲିଙ୍ଗ ଶରୀରର ଧର୍ମଭାବରେ ପ୍ରତିଷ୍ଠା ଥାଏ । ଏହି ଶରୀର ଜଡ ହୋଇଥିବାରୁ ସେହି ସଂସ୍କାରର ପ୍ରବୃତ୍ତି ଜଡୋନ୍ମୁଖୀ ହୁଏ । କିନ୍ତୁ ମଧୁରରସ ଆତ୍ମାର ଧର୍ମ । ଏହା ସ୍ଥୂଳ ଜଡ ଜଗତର ବସ୍ତୁ ନୁହେଁ । ଏହାର ବିଭାବ, ଅନୁଭାବ ଓ ସଞ୍ଚାରୀଭାବ ମାନଙ୍କର କେବେହେଲେ ବିଲୟ ହୁଏ ନାହିଁ । ଏଣୁ ଏହାର ସ୍ଥିତି ବିଷୟରେ ଆଶଙ୍କାର ଅବକାଶ ନାହିଁ । ଏହି ରସ ଆସ୍ୱାଦ୍ୟ ଭେଦରେ ବିଭିନ୍ନ ପ୍ରକାରର ହୋଇଥାଏ । ସବୁଠାରୁ ସ୍ଥୂଳ ଅନ୍ନମୟ କୋଷର ଆସ୍ୱାଦ ରସ, ରସନାଦି ଇନ୍ଦ୍ରିୟ ମାନଙ୍କ ଦ୍ୱାରା ଉପଭୋଗ୍ୟ । ଏହି ରସ ଅତ୍ୟନ୍ତ ସ୍ଥୂଳ ଓ ବିକାର-ପ୍ରବଣ ହୋଇଥାଏ । ଏହାଠାରୁ ସୂକ୍ଷ୍ମତର ମାନସିକ ରସ । ଅର୍ଥାତ୍ ଯାହା ମନନ ଓ ଚିନ୍ତନ ଦ୍ୱାରା ଆସ୍ୱାଦିତ ହୁଏ । ଏହାଠାରୁ ଆହୁରି ସୂକ୍ଷ୍ମ ହେଉଛି ବିଜ୍ଞାନମୟ ରସ, ଯାହା ବୁଦ୍ଧି ଦ୍ୱାରା ଆସ୍ୱାଦ୍ୟ, କିନ୍ତୁ ସୂକ୍ଷ୍ମତମ ଆନନ୍ଦମୟ ରସ ଆତ୍ମା ଦ୍ୱାରା ଅନୁଭୂତ ହୁଏ । ଏହି ସୂକ୍ଷ୍ମତମ ଆନନ୍ଦମୟ ରସହିଁ ସର୍ବଶ୍ରେଷ୍ଠ ଭକ୍ତି ରସ ଭାବରେ ସ୍ୱୀକୃତ ହୋଇଛି । ବିଭିନ୍ନ ସ୍ୱଭାବସମ୍ପନ୍ନ ଭକ୍ତମାନେ ଏହି ରସକୁ ନାନାଭାବରେ ଆସ୍ୱାଦନ କରନ୍ତି । ରସର ଏହି ସର୍ବଶ୍ରେଷ୍ଠ ସ୍ୱରୂପଟି 'ମଧୁରରସ' ଭାବରେ ଆଖ୍ୟାତ । ଉପର୍ଯ୍ୟୁକ୍ତ ଆଲୋଚନାରୁ ଏହା ସ୍ପଷ୍ଟ ହୋଇ ଉଠୁଛି ଯେ, ଇନ୍ଦ୍ରିୟମାନଙ୍କ ଦ୍ୱାରା ଇନ୍ଦ୍ରିୟାତୀତ ଆନନ୍ଦମୟ ରସର ସ୍ୱରୂପ ଉପଲବ୍ଧି କରିହେବ ନାହିଁ । ମନ ଓ

ବୁଦ୍ଧି ଦ୍ୱାରା ମଧ୍ୟ ଏହା ବୋଧଗମ୍ୟ ନୁହେଁ । ଏଣୁ ଅଲୌକିକ । ଏହି ରସୋପଲବ୍ଧି ବହୁ କଠୋର ସାଧନାର ଅପେକ୍ଷା ରଖେ । ଭକ୍ତି ଶାସ୍ତ୍ରମାନଙ୍କରେ ସେହି ସାଧନାର ମାର୍ଗ ବହୁ ଭାବରେ ପ୍ରଦର୍ଶିତ ହୋଇଛି (5) । ରୂପଗୋସ୍ୱାମୀ ସେଥିପାଇଁ ଏହାକୁ 'ଦୁରୂହ' ବୋଲି କହିଛନ୍ତି । ଇନ୍ଦ୍ରିୟ ମନ ଓ ବୁଦ୍ଧିର ସମ୍ପୂର୍ଣ୍ଣ ନିଗ୍ରହ ଓ ବଶୀକରଣ ହେବା ପରେହିଁ ସୂକ୍ଷ୍ମ ଭକ୍ତି କ୍ଷେତ୍ରରେ ପ୍ରବେଶାଧିକାର ମିଳିଥାଏ । ସେଥିପାଇଁ ଚୈତନ୍ୟ ମହାପ୍ରଭୁ କହିଛନ୍ତି — ତୃଣଠାରୁ ହୀନ ବୃକ୍ଷ ଠାରୁ ଅଧିକ ସହିଷ୍ଣୁ, ସମ୍ପୂର୍ଣ୍ଣ ନିରଭିମାନୀ ଓ ଅନ୍ୟମାନଙ୍କ ପ୍ରତି ସମ୍ମାନଦାତା ହେଲେ ହିଁ ସେ କୌଣସି ଭକ୍ତ ହରିସେବା ପାଇଁ ଯୋଗ୍ୟ ବିବେଚିତ ହୋଇଥାଏ । 'ତୃଣାଦପି ସୁନୀଚେନ ତରୋରପି ସହିଷ୍ଣୁନା, ଅମାନିନା ମାନଦେନ ସେବିତବ୍ୟୋ ସଦା ହରିଃ' ।

ଯେଉଁଦିନ ପର୍ଯ୍ୟନ୍ତ ଭକ୍ତର ହୃଦୟରେ ସଂସାରର ନାନାପ୍ରକାର ଭୋଗସ୍ପୃହା ଥିବ, ଯେତେବେଳ ପର୍ଯ୍ୟନ୍ତ ଭକ୍ତର ଭାବନାରେ ପାରତ୍ରିକ ମୁକ୍ତିକାମନା ବିଦ୍ୟମାନ ଥିବ, ସେତେଦିନ ପର୍ଯ୍ୟନ୍ତ ତା ହୃଦୟରେ ଭଗବଦ୍ ପ୍ରେମ ସୁଖର ସାମାନ୍ୟ ଅଙ୍କୁରୋଦ୍‌ଗମ ମଧ୍ୟ ହେବନାହିଁ ।

"ଭୁକ୍ତି ମୁକ୍ତି ସ୍ପୃହା ଯାବତ୍ ପିଶାଚୀ ହୃଦିବର୍ତ୍ତିତେ
ତାବତ୍ ପ୍ରେମ ସୁଖସ୍ୟାତ୍ର କଥମଭ୍ୟୁଦୟୋ ଭବେତ୍ ?"

ମଧୁର ରସର ଏହି ସ୍ୱରୂପ ବିଶ୍ଳେଷଣ ସଂପୂର୍ଣ୍ଣ ଭାବରେ ଗୋଟିଏ ସାମ୍ପ୍ରଦାୟିକ ସିଦ୍ଧାନ୍ତ । ଚୈତନ୍ୟପନ୍ଥୀ ବୈଷ୍ଣବମାନେ ଏହି ସାମ୍ପ୍ରଦାୟିକ ଚିନ୍ତା ଦ୍ୱାରା ନିୟନ୍ତ୍ରିତ ଓ ଅନୁପ୍ରାଣିତ । ସଦାନନ୍ଦ କବିସୂର୍ଯ୍ୟ ବ୍ରହ୍ମା ଏହି ସମ୍ପ୍ରଦାୟର ଜଣେ ନିଷ୍ଠାପର ପ୍ରବକ୍ତା ଭାବରେ ଏସବୁ ବୈଷ୍ଣବୀୟ ଆଦର୍ଶର ପଦ୍ଧତି ଓ ଚିନ୍ତାଧାରାକୁ ସ୍ୱରଚିତ ତ୍ରିଂଶାଧିକ କାବ୍ୟ କବିତାରେ ସାର୍ଥକ ରୂପ ଦେଇଛନ୍ତି । କୃଷ୍ଣଙ୍କର ମାଧୁର୍ଯ୍ୟଲୀଳାରେ ନିବିଷ୍ଟଚିତ୍ତ ସଦାନନ୍ଦ ଐହିକ ଓ ପାରତ୍ରିକ ଭୁକ୍ତି ମୁକ୍ତି କାମନା ପରିତ୍ୟାଗ କରି ମଧୁର ରସ ଆସ୍ୱାଦନରେ ଉନ୍ମତ୍ତ ହୋଇ ଜୀବନ ନିଃଶେଷ କରି ଦେବାକୁ ଏକମାତ୍ର ଇଚ୍ଛା ପ୍ରକାଶ କରିଛନ୍ତି (6) ।

—o—

1— ମଧୁର ନେର ଅନ୍ତସ୍ଥ ॥
ଐଶ୍ୱର୍ଯ୍ୟ ଦେଖି ପାଇଭୟ ॥
— ପାଟଚକ୍ରାବଳୀ ୩ୟ ଅଧ୍ୟାୟ

2— ଦୃଶ୍ୟାଦୃଶ୍ୟ କାହାକୁ କରୂପେ ନାଚ୍ୟେଛ ।
ପୂର୍ବ ଇଚ୍ଛା ବର୍ଣ୍ଣ କର ମାଧୁର୍ଯ୍ୟକୁ ମୂଳ ॥
ଶା/୬୭

3— ରୂପଗୋସ୍ୱାମୀ — ଭକ୍ତି ରସାମୃତ ସିନ୍ଧୁ, ଉଜ୍ଜ୍ୱଳ ନୀଳମଣି ।

4— "ଶ୍ରୀରୂପ ଗୋସ୍ୱାମୀ ଆଦନର ମତ ଯେହ୍ନ
ବେଦ ବଚନ ଅଧିକ ଆମ୍ଭେ ମାନୁଛି
(ଜଷ୍ଠା ନୀଳମଣି, କୃପାସ୍ୱରୂପ)

× × ×

ଶ୍ରୀରୂପ ଗୋସ୍ୱାମୀ ପାଦ ପଦ୍ମ ରେଣୁ ଗଣ
ଶିରେ ଧରି ଗାଇ ଛନ୍ଦେ କୃଷ୍ଣଲୀଳା ଗୁଣ

5— ନାସଚ୍ଛାସ୍ତ୍ରେଷୁ ସଜ୍ଜେତ ନୋପଜୀବେତ ଜୀବିକାମ୍ ।
ବାଦ ବାଦାଂ ସ୍ତ୍ୟଜେତ୍ତର୍କାନ୍ ପକ୍ଷଂ କଂଚ ନ ସଂଶ୍ରୟେତ୍ ॥

ନ ଶିଷ୍ୟାନନୁବଧ୍ନୀତ ଗ୍ରନ୍ଥାନ୍ନୈବାଭ୍ୟସେଦ୍ ବହୂନ ।
ନ ବ୍ୟାଖ୍ୟାମୁପଯୁଞ୍ଜୀତ ନାରମ୍ଭାନାରଭେତ୍ କ୍ୱଚିତ୍ ॥
ଶ୍ରୀମଦ୍ଭାଗବତ 7।13।6-7

ବହୁଗ୍ରନ୍ଥ କଲାଭ୍ୟାସ ବ୍ୟାଖ୍ୟାବାଦ ବିବର୍ଜିତାଃ
ବଶ୍ରମ୍ମେଣ ଗୁରୋ ସେବା ସାଧୁ ବର୍ତ୍ମାନୁବର୍ତ୍ତିନଂ (ନ , ନ , ।୩)

ବସ୍ତୁତନ୍ତ୍ର ବଳାଭ୍ୟାସ ବ୍ୟାଖ୍ୟାବାଦ ତେଜ
ଶ୍ରୀରୂପ ଗୋସ୍ୱାମୀ ଆଜ୍ଞା ନିଜ ମନେ ହେଜ । ନ , ନ , ।୩

6— ବ୍ରଜ ଲୀଳାମୃତ ସମୁଦ୍ର ଏ ଅବଗାହନରେ କଳୁଷ କ୍ଷୟେ
ବ୍ରଜଲୀଳାମୃତସମୁଦ୍ରାଂଶ

× × ×

ସତେ କେବେ ଦେଖିବ ହୋଇବେ ଯୁଗଳ
ରାଧାକାନ୍ତ ନାମ ଯାହାର ସେହୁ ତ ମୋ ମୂଳ ।
( ଯୁ . ର , ଲ. /୨ )

ପ୍ରେମ ହାର ପୂର୍ତ୍ତିସ୍ୱନ ସଯୋଗ ସନ୍ଧିରେ
ନାହିଁ ନାହିଁ ନାହିଁ ଏ ସ୍ୱଭାବ ବ୍ରହ୍ମାଣ୍ଡରେ ।
ଯେଉଁ ପ୍ରେମେ କୃଷ୍ଣ ବୋଲେ ସୁଝି ନ ପାରିଲି ।
ସେ ସ୍ୱବରେ ଆଜଠାରୁ ବଞ୍ଚିତ ହୋଇଲି ।
( ନ . ନ. । ୩ )

—o—

# ପଞ୍ଚମ ପରିଚ୍ଛେଦ

## ଉପସଂହାର

ସଦାନନ୍ଦ କବିସୂର୍ଯ୍ୟ ବ୍ରହ୍ମା ଦୁଇଟି କାଳ୍ପନିକ କାବ୍ୟ ରଚନା କରିଥିଲେ ମଧ୍ୟ ସେ ମୁଖ୍ୟତଃ ଜଣେ ଚୈତନ୍ୟଧର୍ମୀ ବୈଷ୍ଣବ କବି । ସେ ତାଙ୍କର ଅଂଶାଧିକ କାବ୍ୟ କବିତାରେ ବ୍ରଜଲୀଳାର ବିଭିନ୍ନ ବିଭବ ବର୍ଣ୍ଣନା କରିଛନ୍ତି । ଲୀଳା ଗାନରେ କବି ତନ୍ମୟ । ସେ ରାଧାକୃଷ୍ଣ ଲୀଳା ବର୍ଣ୍ଣନା କଲାବେଳେ ଏପରି ଅନେକ କଥା ଲେଖିଛନ୍ତି, ଯାହା ସାଧାରଣ ସାମାଜିକ ଚଳଣିରେ ଆଦୌ ଗ୍ରହଣ ଯୋଗ୍ୟ ନୁହେଁ । ଏହା ଯେ କେବଳ ସଦାନନ୍ଦ ହିଁ କରିଛନ୍ତି ତାହା ନୁହେଁ, ଆମର ବହୁ ସମ୍ମାନିତ, ପ୍ରାୟ ସମସ୍ତ ବୈଷ୍ଣବ କବି ଦେବଦେବୀ ରୂପେ ଉପାସ୍ୟ ରାଧାକୃଷ୍ଣଙ୍କ ଯୁଗଳ ପ୍ରେମଲୀଳା ବ୍ୟାଖ୍ୟାନରେ ପରମ୍ପରା କ୍ରମେ ପ୍ରଚଳିତ ମୂଲ୍ୟବୋଧ ଗୁଡ଼ିକୁ ଦୋହଲାଇ ଦେବାପରି ଅନେକ କଥା ନିର୍ବିକାର ଚିତ୍ତରେ ଏକାନ୍ତ ଭକ୍ତ ମନର ସହିତ ଗାନ କରି ଯାଇଛନ୍ତି । ସେଗୁଡ଼ିକୁ ଶହଶହ ବର୍ଷ ଧରି ଆମେ ରସିକ ପାଠକ ଭାବରେ ଅଥବା ଭକ୍ତ ଭାବରେ ଅଧ୍ୟୟନ କରି ତାହାର ଭାବ ମାଧୁର୍ଯ୍ୟରେ ମୁଗ୍ଧ ହେଉ । ଏ ସବୁ ସତ୍ତ୍ୱେ ଏଗୁଡ଼ିକୁ ଗର୍ହିତ ପରକୀୟା ପ୍ରେମ ଓ ସାମାଜିକ ଅନାଚାରର ବାର୍ତ୍ତାବହ ବୋଲି କହି ତା ପ୍ରତି ନାସାକୁଞ୍ଚନ ମଧ୍ୟ କରୁ । ମନେ ହୁଏ ଏ ସବୁ ଚିତ୍ତର ବିଭ୍ରାଟର ଫଳ ବ୍ୟତୀତ ଅନ୍ୟ କିଛି ନୁହେଁ ।

କେବଳ ଓଡ଼ିଆ ସାହିତ୍ୟରେ ଯେ, ଏ ସମସ୍ୟାଟି ବିଦ୍ୟମାନ, ତାହା ନୁହେଁ । ସମଗ୍ର ଭାରତ ବର୍ଷର ମଧ୍ୟଯୁଗୀୟ ସାହିତ୍ୟ ଏ ସମସ୍ୟାର ସମ୍ମୁଖୀନ ।

ମଧ୍ୟଯୁଗୀୟ ଭକ୍ତକବିମାନଙ୍କୁ ଠିକ୍ ଭାବରେ ବୁଝିବା ପାଇଁ ଆମର ମାନସିକ ପ୍ରସ୍ତୁତି ଦରକାର । ଏ କଥା ସର୍ବବାଦୀ ସମ୍ମତ ଯେ, ଓଡ଼ିଆ ବୈଷ୍ଣବ କବି ଦୀନକୃଷ୍ଣ, ସଦାନନ୍ଦ, ଅଭିମନ୍ୟୁ ସାମନ୍ତ ସିଂହାର, ଗୋପାଳକୃଷ୍ଣ ଓ କବିସୂର୍ଯ୍ୟ

ବଳଦେବ ସେମାନଙ୍କର ସାରସ୍ୱତ ସାଧନାରେ ଏ ଜାତିକୁ ପ୍ରଚୁର ଆନନ୍ଦ ଦେଇ ଆସିଛନ୍ତି । ତେବେ ସେମାନଙ୍କୁ ଯଥାର୍ଥ ଭାବରେ ବୁଝିବାରେ ଆମର ଅସୁବିଧା କେଉଁଠି ତାହା ଖୋଜିବାକୁ ହେବ ।

ଆମେ ଆଜି ଯେଉଁ ପାଶ୍ଚାତ୍ୟ ଶିକ୍ଷିତ ପରମ୍ପରା ଓ ଆଧୁନିକତାର ମଧ୍ୟ ଦେଇ ଶିକ୍ଷିତ ହେଉଛୁ, ତାହା ଆମକୁ ଆମର ସମସ୍ତ ପ୍ରାଚୀନ ପରମ୍ପରା ସ୍ପଷ୍ଟ ଧାରଣା ଓ ମୂଲ୍ୟବୋଧ ଠାରୁ ପାୟ ବିଚ୍ଛିନ୍ନ କରି ଦେଉଛି । ଯଦି ଆମେ ସେ ସବୁ ଧାରଣାଠାରୁ ସମ୍ପୂର୍ଣ୍ଣ ଭାବରେ ବିଚ୍ଛିନ୍ନ ହୋଇ ଯାଆନ୍ତେ ତେବେ ପ୍ରାଚୀନ କଥା ଗୁଡ଼ିକୁ ସମ୍ପୂର୍ଣ୍ଣ ଆଧୁନିକ ଢଙ୍ଗରେ ବିଚାର ବିମର୍ଷ କରିବା ପାଇଁ ଗୋଟିଏ ଦ୍ୱିଧାହୀନ ଅନାବିଳ ଦୃଷ୍ଟିଭଙ୍ଗୀର ଅଧିକାରୀ ହୋଇ ପାରନ୍ତେ । କିନ୍ତୁ ବଡ଼ ଦୁର୍ଭାଗ୍ୟର କଥା ଯେ, ଆଜି ଆମେ ଆମର ପ୍ରାଚୀନ ଜୀବନଧର୍ମୀ ଚିନ୍ତାଧାରା ଠାରୁ ସମ୍ପୂର୍ଣ୍ଣ ରୂପେ ବିଚ୍ଛିନ୍ନ ହୋଇ ନାହୁଁ, ଏଣେ ସେ ବିଷୟରେ ଆମର କୌଣସି ସ୍ପଷ୍ଟ ଧାରଣା ମଧ୍ୟ ନାହିଁ । ଫଳରେ ଶ୍ରୀକୃଷ୍ଣଙ୍କ ନାମ ଶୁଣିବା ମାତ୍ରେ ଆମ ମନରେ ସର୍ବ ଶକ୍ତିମାନ୍ ପରଂବ୍ରହ୍ମ ସ୍ୱରୂପ, ପରମ ପୁରୁଷ ଶ୍ରୀକୃଷ୍ଣଙ୍କ ମର୍ଯ୍ୟାଦାବନ୍ତ ଗାମ୍ଭୀର୍ଯ୍ୟପୂର୍ଣ୍ଣ ଚରିତ୍ରଟିଏ ଅଙ୍କିତ ହୋଇଯାଏ । କିନ୍ତୁ ପର ମୁହୂର୍ତ୍ତରେ ତାଙ୍କର ଚପଳଚଞ୍ଚଳ ରାସଲୀଳା କଥାଶୁଣି କିଛି ବୁଝି ହୁଏ ନାହିଁ । ଅର୍ଥାତ୍ ଦୁଷ୍ଟଦଳନ ଶିଷ୍ଟ ପାଳନ ରୂପ କର୍ମନିପୁଣ କୃଷ୍ଣଙ୍କ ଅନୁରୂପ କର୍ମ ଭାବରେ ପରନାରୀ ହରଣ ରୂପକ ରାସଲୀଳାକୁ ଗ୍ରହଣ କରିବାକୁ ମନ କୁଣ୍ଠିତ ହୁଏ । ପ୍ରାଚୀନ ଚିନ୍ତାଧାରା ପ୍ରତି ଆମର ଏହି ଆବିଳ ଦୃଷ୍ଟି ଫଳରେ ଆମେ ବୈଷ୍ଣବ କବିଙ୍କ କବିତାକୁ ସମ୍ପୂର୍ଣ୍ଣ ତତ୍ତ୍ୱ ସାପେକ୍ଷ ଭାବରେ ଅଥବା ତତ୍ତ୍ୱବାଦ ନିରପେକ୍ଷ ଭାବରେ ବୁଝି ନପାରି ହଠାତ୍ ପ୍ରତିକ୍ରିୟା ପ୍ରକାଶ କରୁ — ଭଗବାନଙ୍କ ନାମରେ କି ବାଜେ କଥା କୁହା ଯାଇଛି । ରାଧା ଓ କୃଷ୍ଣ ଯଦି ଦୁଷ୍ମନ୍ତ ଓ ଶକୁନ୍ତଳାଙ୍କ ପରି ପ୍ରାକୃତ ନାୟକ ନାୟିକା ହୋଇଥାନ୍ତେ, ତାହା ହେଲେ କିଛି ଚିନ୍ତା ନଥିଲା । କିନ୍ତୁ ରାଧାକୃଷ୍ଣ ପ୍ରାକୃତ ନୁହନ୍ତି କି ସେମାନଙ୍କର ଅପ୍ରାକୃତିକ ସ୍ୱରୂପ ବିଷୟରେ ଆମର କୌଣସି ବାସ୍ତବିକ ନିର୍ମଳ ଧାରଣା ନାହିଁ । ସେଥିପାଇଁ ଆମେ ବୈଷ୍ଣବ କବିତା ଗୁଡ଼ିକୁ ବିଶୁଦ୍ଧ ସାହିତ୍ୟିକ ମାନଦଣ୍ଡରେ ମାପିପାରୁ ନାହୁଁ କି ବିଶୁଦ୍ଧ ଭକ୍ତି ପୂର୍ଣ୍ଣ କବିତା ଭାବରେ ଗ୍ରହଣ ମଧ୍ୟ କରି ପାରୁନାହୁଁ । ଆମେ ଅଭିମନ୍ୟୁ ସାମନ୍ତ ସିଂହାରଙ୍କୁ ଭକ୍ତ ଶିରୋମଣି କହୁଛୁ । କିନ୍ତୁ ପରମୁହୂର୍ତ୍ତରେ ତାଙ୍କର ବିଦଗ୍ଧ ଚିନ୍ତାମଣିରେ ମାନବ ଜୀବନର ବିଭିନ୍ନ ସମସ୍ୟା ଓ ତାର ସମାଧାନ ନଥିବା କଥା ଦର୍ଶାଇ ଦୁଃଖ ପ୍ରକାଶ କରୁଛୁ । ପୁଣି କୃଷ୍ଣଙ୍କ ଚପଳ ଚଞ୍ଚଳ ରୂପର ବର୍ଣ୍ଣନାରେ ମୁଗ୍ଧ ହୋଇ କବିଙ୍କ ସ୍ୱାଭାବିକ ରୂପ ଚିତ୍ରଣରେ ଅସାଧାରଣ ଶକ୍ତିମତ୍ତାର

ଯଥେଷ୍ଟ ପ୍ରଶଂସା ମଧ୍ୟ କରୁଛୁ । ଏଥିରୁ ଆମ ଦୃଷ୍ଟିଭଙ୍ଗୀର ଅନାବିଳତା ସୂଚିତ ହେଉ ନାହିଁ । ଆମେ ବୈଷ୍ଣବ ଭକ୍ତକବି ମାନଙ୍କ ଭୁଲ ରାସ୍ତାରେ ପରିଚାଳିତ ହୋଇ ଦେଖୁ, ଏବଂ ଅଯଥାର୍ଥ ଭାବେ କେତେବେଳେ ତାଙ୍କର କବିତ୍ୱ ପରାକାଷ୍ଠାରେ ମୁଗ୍ଧ ହେଉ ତ କେତେବେଳେ ବିନା କାରଣରେ କବିତାର ଅନୁସରଣ ନକରି ବହୁ ଅସଙ୍ଗତ ପ୍ରତିକ୍ରିୟା ପ୍ରକାଶ କରୁ । ଏ ସବୁ, କବିତାର ଭୁଲ ମୂଲ୍ୟାୟନରୁ ହୁଏ । ରାଧାକୃଷ୍ଣ ଲୀଳାତ୍ମକ କବିତା ବୁଝିବାକୁ ହେଲେ ଭକ୍ତିତତ୍ତ୍ୱ ନିଷ୍ଣାତ ଭକ୍ତ କବିଙ୍କ ମାନସ ସାକ୍ଷାତ୍କାର କରିବାକୁ ହେବ । ସମାଜତ୍ୟାଗୀ ବୈରାଗୀର କବିତା ସଂସାର ଅନୁରାଗୀ ବିଷୟାସକ୍ତ ବୁଦ୍ଧିରେ ବିବେଚ୍ୟ ହେବ କିପରି ? ସ୍ରଷ୍ଟା ଓ ସମୀକ୍ଷକର ଦୃଷ୍ଟିରେ ସାମଞ୍ଜସ୍ୟ ପ୍ରତିଷ୍ଠିତ ହେଲେ ସତ୍ୟର ଅନାବିଳ ସ୍ନିଗ୍ଧ ରୂପ ପ୍ରକାଶିତ ହେବ । ଏ ଦୃଷ୍ଟିରୁ ବୈଷ୍ଣବ ଭକ୍ତକବି ସଦାନନ୍ଦଙ୍କ ଭକ୍ତି କବିତା ଗୁଚ୍ଛର ଏ ସଂକ୍ଷିପ୍ତ ସମୀକ୍ଷା ପ୍ରସ୍ତୁତ କରିବାରେ ଏ ଲେଖକର ସଫଳତା ସୁଧୀ ପାଠକମାନେ ବିଚାର କରିବେ ।

———

# ସହାୟକ ଗ୍ରନ୍ଥସୂଚୀ


| | | | | |
|---|---|---|---|---|
| ୧ | ଲଳିତ ଲୋଚନା | ପୋଥି ବିଭାଗ, | ବାଣୀବିହାର | Mss. No. OL/52 |
| ୨ | ପ୍ରେମ ତରଙ୍ଗିଣୀ | ,, | ,, | ,, CY./221 |
| ୩ | ଚଷ୍ଟାଭ ଚନ୍ଦ୍ରୋଦୟ | ,, | ,, | ,, CY./182 |
| ୪ | ନାମଚିନ୍ତାମଣି | ,, | ,, | ,, OL./339 |
| ୫ | ତତ୍ତ୍ୱ ତରଙ୍ଗିଣୀ | ,, | ,, | ,, OL./80 |
| ୬ | ପାଠ ରତ୍ନାବଳୀ | ,, | ,, | ,, OL./151 |
| ୭ | ବ୍ରଜଲୀଳାମୃତ ସମୁଦ୍ର | ,, | ,, | ,, OL./166 |
| ୮ | ସଙ୍ଗୀତ ସଦାନନ୍ଦ | ,, | ,, | ,, OL./60 |
| ୯ | ମୋହନ କଳ୍ପଲତା | ,, | ,, | ,, OL./240 |
| ୧୦ | ଭଗବଦ୍ ଗୀତାନୁବାଦ | ,, | ,, | ,, CY./1006 |
| ୧୧ | ଯୁଗଳରସାମୃତ ଭଙ୍ଗିଁ ସ୍ୱ | ,, | ଓଡ଼ିଶା ରାଜ୍ୟ ସଂଗ୍ରହାଳୟ | ,, OI./529(C) |
| ୧୨ | ପ୍ରେମ କଳ୍ପଲତା | ,, | ,, | ,, OI./544. |
| ୧୩ | ନଷ୍ଟା ନୀଳମଣି | ,, | ,, | ,, OI./1081(A) |
| ୧୪ | ପ୍ରେମ ଚିନ୍ତାମଣି | ,, | ,, | OI.H/15 |
| ୧୫ | ବିଶ୍ୱମ୍ଭର ବିହାର | ,, | ,, | ,, OI./94 |
| ୧୬ | ପ୍ରୀତ ଚିନ୍ତାମଣି | ,, | ,, | ,, OL./862 |
| ୧୭ | ସ୍ୱରଶାସ୍ତ୍ର ବା ସ୍ୱରଦୀପିକା | ,, | ,, | ,, OI./208(E) |

୧୮ - ବାଲବୋଧିନୀ ,, ,, CY./436

୧୯ - ଉତ୍କଳ ମଳମଣି ,, ,, ,, OL./172

୨୦ - କର୍ତ୍ତିନ ଉତ୍କଳ ,, ,, ,,

୨୧ - ଯୁଗଳ ରସାମୃତ ଲହରୀ ,, ,, ,,

୨୨ - ଓଡ଼ିଆ ସାହିତ୍ୟର ଇତିହାସ (ଭୂମିକା ଭାଗ) ପଣ୍ଡିତ ସୂର୍ଯ୍ୟନାରାୟଣ ଦାସ

୨୩ - ମଧ୍ୟକାଳୀନ ଧର୍ମ ସାଧନା — ପଣ୍ଡିତ ହଜାରୀ ପ୍ରସାଦ ଦ୍ୱିବେଦୀ

୨୪ - Ancient Indian Erotics — Dr. S. K. De.

୨୫ - Obscure Religious Cults — Dr. S. B. Dasgupta

—o—